# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**December- 2014**

୭୧ ଭାଗ ୪ର୍ଥ ସଂଖ୍ୟା ମାର୍ଗଶିର– ପୌଷ ଡିସେମ୍ବର – ୨୦୧୪



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦



ଡିସେମ୍ବର– ୨୦୧୪





# ଜନ୍ମମାସରେ ଶ୍ରଦ୍ଧାଞ୍ଜଳି



କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର




ଜଗତର ନାଥ ଜଗନ୍ନାଥଙ୍କ ଅପାର କରୁଣାରୁ ବିଗତ ୨୦୧୪ ବର୍ଷଟି ସଫଳତାର ବର୍ଷଭାବେ ସାବ୍ୟସ୍ତ ହୋଇପାରିଛି । ଆମ ରାଜ୍ୟ ଓଡ଼ିଶା ଇତିମଧ୍ୟରେ ପ୍ରଗତିର ଏକ ନୂତନ ପରିଭାଷା ସୃଷ୍ଟି କରିଛି । ଉତ୍କଳ ପ୍ରସଙ୍ଗରେ ଏ ବିଷୟରେ ସୂଚନା ପ୍ରଦାନ କରିବାରେ ଅନନ୍ୟ ଆନନ୍ଦ ଅନୁଭବ କରୁ । ୪କୋଟି ଓଡ଼ିଆଙ୍କ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନିକଟରେ ଆମେ କୃତଜ୍ଞତା ପ୍ରକାଶ କରୁଛୁ ।

ଆମେ ମଧ୍ୟ ମାନ୍ୟବର ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକ, ଶାସନ ସଚିବ ଶ୍ରୀ ମଧୁସୂଦନ ପାଢୀ, ନିର୍ଦ୍ଦେଶକ ଶ୍ରୀ ରଞ୍ଜିତ କୁମାର ମହାନ୍ତି ଏବଂ ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ନିରଞ୍ଜନ ସେଠୀଙ୍କ ନିରବଚ୍ଛିନ୍ନ ସହଯୋଗ ନିମନ୍ତେ ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛନ୍ତି ।

ମୁଁ ଉତ୍କଳ ପ୍ରସଙ୍ଗରେ ଥିବା ମୋର ସହଯୋଗୀ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମଲ୍ଲିକ, ଶ୍ରୀ ସଚ୍ଚିଦାନନ୍ଦ ବାରିକ, ଶ୍ରୀମତୀ ସୁମିତ୍ରା କର, ଶ୍ରୀ ଅମୂଲ୍ୟ ଚନ୍ଦ୍ର ସେଠୀଙ୍କ ଅଯାଚିତ ସାହାଯ୍ୟ ନମନ୍ତେ ସେମାନଙ୍କ ନିକଟରେ ମୋର କୃତଜ୍ଞତା ପ୍ରକାଶ କରୁଛି ।

ଏଥିସହିତ ଉକ୍ତ ପତ୍ରିକା ପ୍ରକାଶନରେ ଅକୁଣ୍ଠିତ ଭାବେ ସହାୟତାର ହସ୍ତ ପ୍ରସାର କରିଥିବା ଫଟୋ ଶାଖା, ପ୍ରକାଶନ ପରିଚାଳକଙ୍କ ସହ କଟକସ୍ଥିତ ଓଡ଼ିଶା ସରକାରୀ ମୁଦ୍ରଣାଳୟର ନିର୍ଦ୍ଦେଶକ ଏବଂ ସମସ୍ତ ସହଯୋଗୀଙ୍କ ସହାୟତା ନିମନ୍ତେ ସେମାନଙ୍କ ନିକଟରେ ମୁଁ ଚିର ଋଣୀ ।

**ଓଡ଼ିଶା ସରକାରଙ୍କ**
**ମାସିକ ପତ୍ରିକା ଉତ୍କଳ ପ୍ରସଙ୍ଗ ତରଫରୁ ଏହାର ସମ୍ମାନନୀୟ**
**ଲେଖକ/ଲେଖିକା, ପାଠକ/ପାଠିକା ଓ ପୃଷ୍ଠପୋଷକମାନଙ୍କୁ**
**ନବବର୍ଷ ୨୦୧୫ ଉପଲକ୍ଷେ ଶୁଭେଚ୍ଛା ଜଣାଉଛି ।**
**ନବବର୍ଷ ସେମାନଙ୍କ ନିମନ୍ତେ ସୁଖ ଓ ସମୃଦ୍ଧିର ବର୍ଷ ହେଉ,**
**ଏତିକି କାମନା ।**




# ସମ୍ପାଦକୀୟ



ସାରାବିଶ୍ୱକୁ ମର୍ମାହତ କରିଥିବା ପାକିସ୍ତାନର ପେଶାଓ୍ୱାରଠାରେ ନିରୀହ ସ୍କୁଲ ପିଲାଙ୍କୁ ବର୍ବୋରଚିତ ଗଣହତ୍ୟା ଯୋଗୁଁ ଆଜି ଓଡ଼ିଶାର ଜନସାଧାରଣଙ୍କ ସହ ରାଜ୍ୟସରକାର ମଧ୍ୟ ନିସ୍ତବ୍ଧ । ଆମେ ଏହାକୁ ନିନ୍ଦା କରିବା ସହ ନୀରବ ନିରୀହ ସ୍କୁଲ ପିଲାଙ୍କୁ ଅମାନୁଷିକ ହତ୍ୟାର ଦୃଢ ପ୍ରତିବାଦ ସ୍ୱରୂପ ସମ୍ପାଦକୀୟ ପୃଷ୍ଠାକୁ ସେମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛୁ ।

ଲେନିନ୍ ମହାନ୍ତି

ସମ୍ପାଦକ

# ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା ୨୦୧୪ରେ ଓଡ଼ିଶା ମଣ୍ଡପ

ତାପସ କୁମାର ସାହା

ଭାରତର ପ୍ରଗତିର ପ୍ରତିଛବିକୁ ବିଶ୍ୱଦରବାରରେ ତୋଳିଧରିବାର ପ୍ରୟାସ ୯୦ ଦଶକ ପ୍ରାରମ୍ଭରେ ଆରମ୍ଭ ହୋଇଥିଲା । ଯାହାର ଫଳସ୍ୱରୂପ ଜନ୍ମ ନେଇଥିଲା ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା । ନୂଆଦିଲ୍ଲୀର ପ୍ରଗତି ମଇଦାନରେ ଏହି ବିଶାଳ ବାଣିଜ୍ୟ ମେଳା ପ୍ରତିବର୍ଷ ନଭେମ୍ବର ୧୪ ତାରିଖଠାରୁ ନଭେମ୍ବର ୨୭ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଭାରତର ସମସ୍ତ ରାଜ୍ୟ, କେନ୍ଦ୍ରଶାସିତ ଅଞ୍ଚଳ, କେନ୍ଦ୍ର ସରକାରଙ୍କ ବିଭିନ୍ନ ବିଭାଗ, କେନ୍ଦ୍ର ସରକାରଙ୍କ ଦ୍ୱାରା ପରିଚାଳିତ ବିଭିନ୍ନ ଉଦ୍ୟୋଗ, ବେସରକାରୀ ଉଦ୍ୟୋଗ ସମେତ ବହୁ ବିଦେଶୀ ରାଷ୍ଟ୍ର ଏହି ବାଣିଜ୍ୟ ମେଳାରେ ଅଂଶ ଗ୍ରହଣ କରିଥାଆନ୍ତି । ଏହି ଅବସରରେ ପ୍ରଗତି ମଇଦାନ ପାଲଟିଯାଏ ଏକ ମିନି ଭାରତ । କେରଳଠାରୁ ତ୍ରିପୁରା, ଓଡ଼ିଶାଠାରୁ ଜାମ୍ମୁ ଏବଂ କାଶ୍ମୀର ଆଦି ସମସ୍ତ ରାଜ୍ୟର ମଣ୍ଡପ ଶୋଭାପାଏ ପ୍ରଗତି ମଇଦାନରେ । ମେଳାକୁ ବୁଲି ଆସୁଥିବା ଦର୍ଶକମାନେ ଗୋଟିଏ ପରିସରରେ ଭାରତର ବିଭିନ୍ନ ରାଜ୍ୟ ସହିତ ପରିଚିତ ହେବାର ଅପୂର୍ବ ସୁଯୋଗ ପାଇବା ସହିତ ଭାରତର କୋଣ ଅନୁକୋଣରେ ହେଉଥିବା ପ୍ରଗତିର ଝଲକ୍ ଅତି ସହଜରେ ପାଇ ଥାଆନ୍ତି । ଅନ୍ତର୍ଜାତୀୟ ବାଣିଜ୍ୟ ମେଳା ଆୟୋଜନ ଦ୍ୱାରା ରାଜ୍ୟଗୁଡ଼ିକ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟର ବିକ୍ରୀବଟା ନିମନ୍ତେ ଏକ ବୃହତ ବଜାରର ଉପଲବ୍ଧ ହୋଇଥାଏ । ଏଥି ସହିତ ଉତ୍ପାଦିତ ନୂତନ ଦ୍ରବ୍ୟ ସହିତ ପରିଚିତ ହେବାର ଏକ ନୂତନ ସୁଯୋଗ ସହିତ ଭବିଷ୍ୟତ ବାଣିଜ୍ୟ କାରବାରର ସମ୍ଭାବନା ସୃଷ୍ଟି ହୋଇଥାଏ । ମେଳାରେ ଅତ୍ୟଧିକ ଭିଡ଼ ହେଉଥିବା ଦୃଷ୍ଟିରୁ ବାଣିଜ୍ୟ କାରବାର ଓ ତତ୍ ସଂକ୍ରାନ୍ତୀୟ ଅନୁସଂଧାନ ନିମନ୍ତେ ମେଳାର ପ୍ରଥମ ୫ଦିନ ନଭେମ୍ବର ୧୪ ତାରିଖଠାରୁ ୧୮ ତାରିଖ ପର୍ଯ୍ୟନ୍ତ ବ୍ୟବସାୟୀ ଦର୍ଶକମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ରଖାଯାଏ, ଯଦ୍ଦ୍ୱାରା ସେମାନେ ସହଜରେ ବାଣିଜ୍ୟ କାରବାର କରି ପାରିବେ । ନଭେମ୍ବର ୧୯ ତାରିଖ ଠାରୁ ୨୭ ତାରିଖ ପର୍ଯ୍ୟନ୍ତ ଏହି ମେଳା ସାଧାରଣ ଦର୍ଶକମାନଙ୍କ ନିମନ୍ତେ ଖୋଲା ରହିଥାଏ । ଏଥି ସହିତ ବିଦେଶୀ ରାଷ୍ଟ୍ରଗୁଡ଼ିକ ବହୁ ସଂଖ୍ୟାରେ ଏହି ବାଣିଜ୍ୟ ମେଳାରେ ଭାଗ ନେଉଥିବା ଦୃଷ୍ଟିରୁ ଏହି ମେଳା ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ମାନ୍ୟତା ଲାଭ କରିବା ସହିତ ଲୋକମାନଙ୍କୁ ବିଦେଶଜାତ ଦ୍ରବ୍ୟ କିଣିବା ପାଇଁ ମଧ୍ୟ ସୁଯୋଗ ମିଳିଥାଏ ।

ବିଗତ ୩୪ବର୍ଷ ଧରି ଓଡ଼ିଶା ଅନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ଅଂଶ ଗ୍ରହଣ କରିଆସୁଅଛି । ପୂର୍ବରୁ ଓଡ଼ିଶା ମଣ୍ଡପ ନିମନ୍ତେ ପ୍ରଗତି ମଇଦାନରେ କୌଣସି ସ୍ଥାୟୀ ଓ ପକ୍କାଗୃହ ନଥିଲା ।୧୯୮୩ ମସିହାରେ ସ୍ଥାୟୀ ଗୃହ ବା ପାଭିଲିୟନ ନିର୍ମାଣ ପରଠାରୁ ଓଡ଼ିଶା ଏହାର ନିଜସ୍ୱ ମଣ୍ଡପରେ ବାଣିଜ୍ୟ ମେଳାର ଆୟୋଜନ କରି ଆସୁଅଛି । ରାଜ୍ୟ ସରକାରଙ୍କ ବିଭିନ୍ନ ସରକାରୀ ବିଭାଗ ସମେତ ସରକାରୀ ଓ ବେସରକାରୀ ଉଦ୍ୟୋଗ ଏହି ମେଳାରେ ଅଂଶ ଗ୍ରହଣ କରି ଆସୁଥିବାବେଳେ ସୂଚନା ଓ ଲୋକ ସଂପର୍କ ବିଭାଗ ଏଥି ନିମନ୍ତେ ନୋଡ଼ାଲ ବିଭାଗ ରୂପେ କାର୍ଯ୍ୟ କରି ମେଳାର ସମସ୍ତ ଆୟୋଜନ କରିଥାନ୍ତି । ପ୍ରତିବର୍ଷ ପରି ଚଳିତ ବର୍ଷ ନଭେମ୍ବର ୧୪ ତାରିଖଠାରୁ ୨୭ ତାରିଖ ପର୍ଯ୍ୟନ୍ତ ନୂଆଦିଲ୍ଲୀଠାରେ ବାଣିଜ୍ୟ ମେଳା ଅନୁଷ୍ଠିତ ହୋଇଥିଲା । ଏହାକୁ ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀ ପ୍ରଣବ ମୁଖାର୍ଜୀ ନଭେମ୍ବର ୧୪ ତାରିଖ ପୂର୍ବାହ୍ନ ୧୧ ଘଟିକାରେ ପ୍ରଗତି ମଇଦାନସ୍ଥିତ ହଂସଧ୍ୱନି ଥିଏଟରଠାରେ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଚଳିତବର୍ଷ ଓଡ଼ିଶା ମଣ୍ଡପରେ ପର୍ଯ୍ୟଟନ କୃଷି, ଶିଳ୍ପ, ପଞ୍ଚାୟତିରାଜ, ଶକ୍ତି, ମହିଳା ଓ ଶିଶୁ ବିକାଶ ଏବଂ ସୂଚନା ଓ ଲୋକ ସଂପର୍କ ବିଭାଗ ସମେତ ଭାରତ ସରକାରଙ୍କ ଦ୍ୱାରା

ପରିଚାଳିତ ଆଲୁମିନିୟମ୍ ଉଦ୍ୟୋଗ ନାଲ୍‌କୋ ଏବଂ ବେସରକାରୀ ଉଦ୍ୟୋଗ ଟାଟାଷ୍ଟିଲ ଆଦି ଭାଗ ନେଇଥିଲେ । ହସ୍ତଶିଳ୍ପ ଓ କୁଟୀର ଶିଳ୍ପ ବିଭାଗ ଦ୍ୱାରା ପ୍ରାୟୋଜିତ ୨୨ଟି ଏବଂ ବୟନଶିଳ୍ପ ବିଭାଗର ୧୦ଟି ଷ୍ଟଲ ଖୋଲାଯାଇ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ସାମଗ୍ରୀ ପ୍ରଦର୍ଶିତ ହେବା ସହିତ ବିକ୍ରୟର ବ୍ୟବସ୍ଥା କରାଯାଇଥିଲା । ଏତଦ୍‌ବ୍ୟତୀତ କାଠ ଖୋଦେଇ କାମ, ସବାଇ ଘାସରୁ ପ୍ରସ୍ତୁତ ସାମଗ୍ରୀ ଡ଼ାଲା ଓ ଟୋପି ଏବଂ ନଡିଆ କତାରୁ ପ୍ରସ୍ତୁତ ବିଭିନ୍ନ ସାମଗ୍ରୀ ପ୍ରସ୍ତୁତିର କଳାକୌଶଳର ଲାଇଭ୍ ଡେମୋନ୍‌ଷ୍ଟ୍ରେସନର ବ୍ୟବସ୍ଥା କରାଯାଇଥିଲା । ଚଳିତବର୍ଷ ମଧ୍ୟ ଓଡ଼ିଶା ମଣ୍ଡପର ସମ୍ମୁଖ ଭାଗରେ ଓଡ଼ିଶାର ସ୍ୱତନ୍ତ୍ର ବାଲୁକାକଳା ମଧ୍ୟ ପ୍ରଦର୍ଶିତ ହୋଇଥିଲା । ଏଥିରେ ଅନ୍ତର୍ଜାତୀୟ ବାଲୁକାକଳା ଶିଳ୍ପୀ ଶ୍ରୀ ଶ୍ରୀଧର ଦାଶ ଭାଗ ନେଇ ନାରୀ ସଶକ୍ତିକରଣ ଓ ଓଡ଼ିଶାର କଳା ଭାସ୍କର୍ଯ୍ୟ ସମ୍ପର୍କରେ ଆକର୍ଷଣୀୟ ବାଲୁକା କଳା ପ୍ରଦର୍ଶନ କରିଥିଲେ ।

ସବୁ ବର୍ଷ ପରି ଚଳିତ ବର୍ଷ ମଧ୍ୟ ବାଣିଜ୍ୟ ମେଳା ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଆଧାରିତ ହୋଇଥିଲା । ଭାରତରେ ମହିଳା ଉଦ୍ୟୋଗୀମାନଙ୍କୁ ଉତ୍ସାହିତ କରିବା ଏବଂ ଆବଶ୍ୟକ ପ୍ରୋତ୍ସାହନ ଦେବା ଲକ୍ଷ୍ୟ ନେଇ ଚଳିତ ବର୍ଷର ବିଷୟ ବସ୍ତୁ 'ମହିଳା ଉଦ୍ୟୋଗୀ' ରଖାଯାଇଥିଲା । ଚଳିତ ବର୍ଷର ବିଷୟବସ୍ତୁ ଅନୁଯାୟୀ ବିଭିନ୍ନ ରାଜ୍ୟର ମଣ୍ଡପଗୁଡ଼ିକୁ ସଜ୍ଜିତ କରିବା ସହିତ ସଂପୃକ୍ତ ସରକାରଙ୍କ ଦ୍ୱାରା ମହିଳା ଉଦ୍ୟୋଗୀମାନଙ୍କୁ ଦିଆଯାଇଥିବା ବିଭିନ୍ନ ପ୍ରୋତ୍ସାହନ ସଂପର୍କରେ ସୂଚନା ଦିଆଯାଇଥିଲା । ଚଳିତବର୍ଷ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଓଡ଼ିଶା ମଣ୍ଡପ ଖୁବ୍ ଆକର୍ଷଣୀୟ ଢଙ୍ଗରେ ପ୍ରସ୍ତୁତ କରାଯାଇଥିଲା । ଅତୀତର ଗୌରବଗାଥା ବହନ କରୁଥିବା ଓଡ଼ିଶାର ନୌବାଣିଜ୍ୟ ଓ ମହିଳା ଉଦ୍ୟୋଗ ଉପରେ ପର୍ଯ୍ୟବସିତ ଏହି ମଣ୍ଡପକୁ ବୋଇତ ବନ୍ଦାଣର ରୂପ ଦିଆଯାଇ ଥିଲା । ନୌବାଣିଜ୍ୟ ପରମ୍ପରା ଉପରେ ଆଧାରିତ ମଣ୍ଡପ ତତ୍‌କାଳୀନ ଓଡ଼ିଶାର ଦକ୍ଷିଣ-ପୂର୍ବ ଏସିଆ ମହାଦେଶ ସହ ବାଣିଜ୍ୟିକ ସଂପର୍କକୁ ଦର୍ଶାଇବା ସଂଗେ ସଂଗେ ଓଡ଼ିଶାର କାରୁକାର୍ଯ୍ୟ, ବିଶେଷ କରି ପଟ୍ଟଚିତ୍ର ଓ ଚାନ୍ଦୁଆରେ ସୁସଜ୍ଜିତ ଏହି ମଣ୍ଡପ ଓଡ଼ିଶାର କଳା, ସଂସ୍କୃତି ଓ ଐତିହ୍ୟ ସଂପର୍କରେ ସୂଚନା ପ୍ରଦାନ କରିବା ସହିତ ସମ୍ମୁଖରେ ଶୋଭା ପାଉଥିବା ହଂସ ସମୃଦ୍ଧି ଓ ପ୍ରଗତିକୁ ସୂଚାଉ ଥିଲା । ନ୍ୟାସନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫ୍ୟାସନ ଟେକ୍ନୋଲୋଜି, ଭୁବନେଶ୍ୱର ଦ୍ୱାରା ପ୍ରସ୍ତୁତ ଡିଜାଇନ୍ ଅନୁଯାୟୀ ଓଡ଼ିଶା ମଣ୍ଡପକୁ ସଜ୍ଜିତ କରାଯାଇଥିଲା । ଧନ, ଜନ, ଗୋପ, ଲକ୍ଷ୍ମୀ ଓ ସମୃଦ୍ଧିର ପ୍ରତୀକ ହଂସ ମଣ୍ଡପ ସମ୍ମୁଖରେ ଶୋଭା ପାଉଥିଲା, ଯାହାକି ଆମ ରାଜ୍ୟର ପ୍ରଗତିର ତରୀକୁ ଆଗକୁ ଆଗକୁ ନେଇ ଯାଉଥିବା ପରି ମନେ ହେଉଥିଲା । ଓଡ଼ିଶାର ଐତିହ୍ୟ, କଳା, ସଂସ୍କୃତି ଏବଂ ଦୀର୍ଘ ଦିନର ପରମ୍ପରାକୁ ସାଥୀରେ ଧରି ଏକ ଆଧୁନିକ ଓ ସମୃଦ୍ଧ ଓଡ଼ିଶା ନିର୍ମାଣର ବାର୍ତ୍ତା ବହନ କରୁଥିବା ଏହି ହଂସ ଅଚିରେ ଦର୍ଶକମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲା । ଓଡ଼ିଶାର ସ୍ଥାୟୀ ମଣ୍ଡପ ଆୟତନ ଓ ଆକାର ଦୃଷ୍ଟିରୁ ଉତ୍ତର ପ୍ରଦେଶ, କେରଳ, ଦିଲ୍ଲୀ, ପଶ୍ଚିମବଙ୍ଗ, ମହାରାଷ୍ଟ୍ର, ଗୁଜରାଟ ଆଦି ରାଜ୍ୟ ତୁଳନାରେ ଅନେକ ଛୋଟ ହୋଇଥିଲେ ହେଁ ବାଣିଜ୍ୟ ମେଳାର ବିଷୟବସ୍ତୁ ଅନୁଯାୟୀ ଓଡ଼ିଶା ମଣ୍ଡପର ବାହ୍ୟ ଓ ଆଭ୍ୟନ୍ତରୀଣ ସାଜସଜ୍ଜା ବେଶ ଆକର୍ଷଣୀୟ ହେବା ସହିତ ଓଡ଼ିଶାର ପ୍ରଗତିକୁ ସ୍ପଷ୍ଟ ରୂପେ ସୂଚାଉ ଥିଲା ।

ଓଡ଼ିଶା ପ୍ୟାଭିଲିଅନ୍ ତଳ ମହଲାରେ ଥିବା ଥିମ୍ ସେକ୍ଟର ସମେତ ସମସ୍ତ ବିଭାଗ ଦ୍ୱାରା ଓଡ଼ିଶା ସରକାରଙ୍କ ପକ୍ଷରୁ ମହିଳା ଉଦ୍ୟୋଗ ଏବଂ ମହିଳା ସଶକ୍ତିକରଣ ନିମନ୍ତେ ନିଆଯାଉଥିବା ପଦକ୍ଷେପ ଓ ଯୋଜନା ସଂପର୍କରେ ଆକର୍ଷଣୀୟ ଫଟୋଚିତ୍ର ସମ୍ବଳିତ ସୂଚନା ପ୍ରଦାନ କରାଯାଇଥିଲା । ସାଂପ୍ରତିକ ସମୟରେ ସଂଗଠିତ କ୍ଷେତ୍ରରେ ମହିଳାମାନଙ୍କର ନିୟୋଜନ କ୍ରମଶଃ ବୃଦ୍ଧି ପାଇଛି । ମହିଳାମାନଙ୍କୁ ସ୍ୱାବଲମ୍ବୀ ଓ ରୋଜଗାରକ୍ଷମ କରିବା ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ମିଶନ ଶକ୍ତି ଜରିଆରେ ଅଦ୍ୟାବଧି ୫.୩୦ ଲକ୍ଷରୁ ଊର୍ଦ୍ଧ୍ୱ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ ୭୦ ଲକ୍ଷ ମହିଳା ସଦସ୍ୟାମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇ ସେମାନଙ୍କୁ ସ୍ୱାବଲମ୍ବୀ କରାଯାଇଛି । ମମତା ଯୋଜନା ଜରିଆରେ ଗର୍ଭବତୀ ମହିଳା ଓ ନବଜାତ ଶିଶୁ ନିମନ୍ତେ ଆବଶ୍ୟକୀୟ ଆର୍ଥିକ ପ୍ରୋତ୍ସାହନର ବ୍ୟବସ୍ଥା କରାଯାଇଛି । ଏତଦ୍‌ବ୍ୟତୀତ ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ମହିଳା ବିକାଶ ସମବାୟ ନିଗମ ଏବଂ ପଞ୍ଚାୟତିରାଜ ବିଭାଗ ଆନୁକୂଲ୍ୟରେ ଓଡ଼ିଶା ଜୀବିକା ମିଶନ ଜରିଆରେ ମହିଳାମାନଙ୍କୁ ରୋଜଗାରକ୍ଷମ କରାଯିବା ସହିତ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟ ଓରମାସ୍ ଜରିଆରେ ବିକ୍ରୀର ବ୍ୟବସ୍ଥା କରାଯାଇଛି ।

ସେହିପରି ରାଜ୍ୟ ସରକାରଙ୍କ ନୂତନ ଶିଳ୍ପ ନୀତି ଅନୁଯାୟୀ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗୀ, ଅନୁସୂଚିତ ଜନଜାତି ଓ ଜାତି, ଭିନ୍ନକ୍ଷମ ତଥା ମହିଳା ଉଦ୍ୟୋଗୀମାନଙ୍କୁ ପୁଞ୍ଜି ନିବେଶ ଉପରେ ସବ୍‌ସିଡି ପ୍ରଦାନର ବ୍ୟବସ୍ଥା କରାଯାଇଛି । ଏତଦ୍‌ବ୍ୟତୀତ ଶକ୍ତି,

ପର୍ଯ୍ୟଟନ, ନାଲ୍‌କୋ, ଟାଟା ଷ୍ଟିଲ୍ ଏବଂ କୃଷି ବିଭାଗ ଦ୍ୱାରା ମହିଳା ଉଦ୍ୟୋଗୀମାନଙ୍କୁ ଦିଆଯାଉଥିବା ବିଶେଷ ପ୍ରୋତ୍ସାହନ ସଂପର୍କରେ ପ୍ରଦର୍ଶନୀରେ ସ୍ୱତନ୍ତ୍ର ରୂପେ ସ୍ଥାନ ପାଇଥିଲା । ରାଜ୍ୟ ସରକାରଙ୍କ ନୂତନ କୃଷି ନୀତି ଅନୁଯାୟୀ ବହୁ ମହିଳା ସଫଳତାର ସହ କୃଷି କାର୍ଯ୍ୟ ନିମନ୍ତେ ଅତ୍ୟାଧୁନିକ କୃଷି ଉପକରଣ ବ୍ୟବହାର ଏବଂ ଜୈବିକ କୃଷି ପ୍ରତି ଆଗ୍ରହର ସୂଚନା ପ୍ରଦର୍ଶନୀରେ ସ୍ଥାନିତ ହୋଇଥିଲା ।

ମଣ୍ଡପର ଦ୍ୱିତୀୟ ମହଲାରେ ବୟନ ଓ ହସ୍ତତନ୍ତ ନିର୍ଦ୍ଦେଶାଳୟ ଏବଂ ହସ୍ତଶିଳ୍ପ ଓ କୁଟୀରଶିଳ୍ପ ନିର୍ଦ୍ଦେଶାଳୟ ଦ୍ୱାରା ଉତ୍ପାଦିତ ବିଭିନ୍ନ ଦ୍ରବ୍ୟର ପ୍ରଦର୍ଶନୀ ଓ ବିକ୍ରି ନିମନ୍ତେ ମୋଟ ୩୨ଟି ଷ୍ଟଲ ଖୋଲାଯାଇଥିଲା । ଯେଉଁଥିରେ ବୟନିକା, ସେରିଫେଡ୍ ଏବଂ ଉତ୍କଳିକା ସମେତ ବହୁ ସଂସ୍ଥା ଭାଗ ନେଇଥିଲେ । ଏଥିରେ ବହୁ ଉନ୍ନତ ମାନ ଓ ଦାମୀ ହ୍ୟାଣ୍ଡଲୁମ୍ ଶାଢ଼ୀ ସମେତ ରୂପା ତାରକସୀ, ପଥର ମୂର୍ତ୍ତି, କାଠ ମୂର୍ତ୍ତି, ଖେଳନା, ଆଦିବାସୀ ଅଳଙ୍କାର, କତାରୁ ପ୍ରସ୍ତୁତ ଦ୍ରବ୍ୟ, ପଟ୍ଟଚିତ୍ର, ପେପର ମାଚି, ଡୋକ୍ରା କାଷ୍ଟିଂ, ଚାନ୍ଦୁଆ ଓ ଆକର୍ଷଣୀୟ ଗହଣା ଆଦି ବିକ୍ରୀ ନିମନ୍ତେ ସ୍ଥାନ ପାଇଥିଲା । ଏଥିମଧ୍ୟରୁ ସମ୍ବଲପୁରୀ ଶାଢୀ ଓ ପାଟଶାଢୀର ଅଧିକ ଚାହିଦା ପରିଲକ୍ଷିତ ହୋଇଥିବା ବେଳେ ହସ୍ତଶିଳ୍ପ ସାମଗ୍ରୀ ମଧ୍ୟରେ ରୂପା ତାରକସୀ ଓ ଡୋକ୍ରା କାଷ୍ଟିଂର ସାମଗ୍ରୀ ପ୍ରତି ଲୋକମାନେ ଅଧିକ ଆକର୍ଷିତ ହେବା ସହିତ ଅଧିକ ବିକ୍ରୀ ହୋଇଥିଲା । ଆନ୍ତର୍ଜାତିକ ବାଣିଜ୍ୟ ମେଳା ପୁନର୍ବାର ପ୍ରମାଣିତ କରିଦେଇଛି ଯେ ଓଡ଼ିଶାର କାରିଗରୀଙ୍କ ଦ୍ୱାରା ପ୍ରସ୍ତୁତ ହସ୍ତତନ୍ତ ଦ୍ରବ୍ୟ ଏବଂ ହସ୍ତଶିଳ୍ପ ନିଶ୍ଚିତ ରୂପେ ଉନ୍ନତ ମାନର ଓ ଏହାର ଚାହିଦା ଯୁଗେ ଯୁଗେ ରହିଆସିଛି ।

ପ୍ରତିବର୍ଷ ପରି ଚଳିତବର୍ଷ ବାଣିଜ୍ୟ ମେଳାର ମୁଖ୍ୟ ଆକର୍ଷଣ ଥିଲା ନଭେମ୍ବର ୨୦ ତାରିଖ ଅପରାହ୍ନ । ଏହି ଦିନ ପ୍ରଗତି ମଇଦାନସ୍ଥିତ ଲାଲଚୌକ ଥିଏଟରରେ ପାଳିତ ହୋଇଥିଲା ଓଡ଼ିଶା ଦିବସ । ଓଡ଼ିଶାର ପାରମ୍ପରିକ ଶାସ୍ତ୍ରୀୟ ନୃତ୍ୟ, ଓଡ଼ିଶୀ ନୃତ୍ୟ ସମେତ ଗୋଟିପୁଅ, ସମ୍ବଲପୁରୀ, ଘୁମୁରା ଓ ଘୋଡ଼ାନାଚ ଦିଲ୍ଲୀର ଦର୍ଶକ ମଣ୍ଡଳୀକୁ ବିମୋହିତ କରିବା ସହିତ ମନ୍ତ୍ରମୁଗ୍ଧ କରି ଦେଇଥିଲା । ଏହି ଉତ୍ସବକୁ ମାନ୍ୟବର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଏବଂ ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରଦୀପ ପ୍ରଜ୍ୱଳନ ପୂର୍ବକ ଉଦ୍‌ଘାଟନ କରିବା ସହ ମେଳାର ବିଷୟବସ୍ତୁ ସମ୍ବଳିତ ଓଡ଼ିଶା ସରକାରଙ୍କ ମାସିକ ପତ୍ରିକା ଉତ୍କଳ ପ୍ରସଙ୍ଗ ଏବଂ ଓଡ଼ିଶା ରିଭ୍ୟୁର ସ୍ୱତନ୍ତ୍ର ସଂଖ୍ୟା ଉନ୍ମୋଚନ ମଧ୍ୟ କରିଥିଲେ । ପ୍ରତିଦିନ ସଂଧ୍ୟାରେ ବିଭିନ୍ନ ରାଜ୍ୟର ରାଜ୍ୟ ଦିବସ ପାଳନ ଅବସରରେ ଚିତ୍ତାକର୍ଷକ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଉଥିବା ପରିପ୍ରେକ୍ଷୀରେ ଦର୍ଶକମାନଙ୍କୁ ଗୋଟିଏ ମଞ୍ଚରେ ସାରା ଭାରତର ସାଂସ୍କୃତିକ ବୈଭବ ଓ କଳାନୈପୁଣ୍ୟ ଜାଣିବାର ଓ ଦେଖିବାର ଏକ ଅପୂର୍ବ ସୁଯୋଗ ମିଳିଥାଏ, ଯାହାକି କ୍ୱଚିତ୍ ଅନ୍ୟ କେଉଁ ଉତ୍ସବରେ ଉପଲବ୍ଧ ହୋଇଥାଏ । ଏଥିସହିତ ବାଣିଜ୍ୟ ମେଳା ପରିସରରେ ବିଭିନ୍ନ ରାଜ୍ୟର ଫୁଡ୍ ଷ୍ଟଲ୍ ଖୋଲାଯାଇଥାଏ, ଯାହାଦ୍ୱାରା ବିଭିନ୍ନ ପ୍ରଦେଶର ଓ ପ୍ରାନ୍ତରର ଖାଦ୍ୟ ଓ ବ୍ୟଞ୍ଜନର ସ୍ୱାଦ ଲାଭ କରିବା ନିମନ୍ତେ ଅପୂର୍ବ ସୁଯୋଗ ମିଳିଥାଏ । ତେଣୁ ଏହି ଅନ୍ତର୍ଜାତୀୟ ବାଣିଜ୍ୟ ମେଳା କେବଳ ବ୍ୟବସାୟ ଓ ବାଣିଜ୍ୟ ନିମନ୍ତେ ଉଦ୍ଦିଷ୍ଟ ନହୋଇ ସାଂସ୍କୃତିକ ଭାବ ବିନିମୟର ଏକ ଉତ୍କୃଷ୍ଟ ମାଧ୍ୟମ ପାଲଟିଯାଇଛି । ଯେଉଥି ପାଇଁ ପ୍ରତିବର୍ଷ ଅଧିକରୁ ଅଧିକ ଦର୍ଶକ ଏହାକୁ ଦେଖିବା ପାଇଁ ପ୍ରଗତି ମଇଦାନରେ ଭିଡ଼ ଜମାଇଥାନ୍ତି ।

ଅନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପ ଓ ପ୍ରଦର୍ଶନୀ ସାମଗ୍ରୀ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଅଧିକ ଆକର୍ଷଣୀୟ ହୋଇଥିବାବେଳେ ଭାରତ ସରକାରଙ୍କ ଆଇଟିପିଓ ସଂସ୍ଥା ଦ୍ୱାରା ନିୟୋଜିତ ଜୁରୀ ମଣ୍ଡଳୀ ଓଡ଼ିଶା ମଣ୍ଡପକୁ ରାଜ୍ୟ ଓ କେନ୍ଦ୍ର ଶାସିତ ବର୍ଗରେ ରୌପ୍ୟ ପଦକ ପାଇବା ପାଇଁ ଯୋଗ୍ୟ ବିବେଚିତ କରିଥିଲେ । ଅନେକ ବର୍ଷ ପରେ ଓଡିଶା ମଣ୍ଡପ ରୌପ୍ୟ ପଦକ ହାସଲ କରିବା ରାଜ୍ୟ ନିମନ୍ତେ ଏକ ଗର୍ବ ଓ ଗୌରବର ବିଷୟ । ରାଜ୍ୟର ଦ୍ରୁତ ଉନ୍ନତି ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱାଧୀନ ସରକାର ଯେପରି ଭାବରେ ଅଭିନବ ଓ କଲ୍ୟାଣକାରୀ ଯୋଜନା ପ୍ରଣୟନ କରୁଛନ୍ତି, ତାହାର ଏକ ନିଚ୍ଛକ ଛବି ଅତି ନିଖୁଣ ଭାବରେ ଏହି ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଉପସ୍ଥାପିତ ହୋଇପାରିଛି । ରଜତ ପଦକ ହାସଲ ତାହାର ସ୍ୱୀକୃତି ବହନ କରେ । ଓଡ଼ିଶାର ପ୍ରଗତିର ଗାଥା ବହନ କରୁଥିବା ଓଡ଼ିଶା ମଣ୍ଡପ ଦେଶ ଓ ବିଦେଶର ବହୁ ଦର୍ଶକମାନଙ୍କୁ ଆକର୍ଷିତ କରି ପାରିଥିଲା । ନଭେମ୍ବର ୨୭ ତାରିଖ ଉଦ୍‌ଯାପନୀ ଉତ୍ସବରେ ଓଡ଼ିଶା ମଣ୍ଡପକୁ ରଜତ ପଦକ ଓ ମାନପତ୍ର ପ୍ରଦାନ କରାଯାଇଥିଲା, ଯାହାକି ଓଡ଼ିଶାର ମହିଳା ଉଦ୍ୟୋଗୀମାନଙ୍କୁ ଉତ୍ସାହିତ କରିବା ସଂଗେ ସଂଗେ ମହିଳା ସଶକ୍ତିକରଣ ଦିଗରେ ଆଉ କେଇପାଦ ଆଗେଇ ନେବାରେ ସହାୟକ ହୋଇପାରିବ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

# ଜୀବନାନୁଭୂତିର ମନ୍ମୟ ଆଲେଖ୍ୟ କୁଞ୍ଜବିହାରୀଙ୍କ ଭ୍ରମଣ ବୃତ୍ତାନ୍ତ

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଭ୍ରମଣ ସାହିତ୍ୟ ସଂପର୍କରେ ସମ୍ୟକ୍ ଆଲୋଚନା ଅବକାଶରେ ପ୍ରଥମେ ଭ୍ରମଣ ସାହିତ୍ୟ ବିଷୟରେ ଏହି ସ୍ରଷ୍ଟାଙ୍କ ଦୃଷ୍ଟିକୋଣକୁ ବିଚାର କରିବା। ପ୍ରଫେସର ଦାଶଙ୍କ ଭାଷାରେ, ଭ୍ରମଣ କାହାଣୀ ମାନେ ବାଟଘାଟର କାହାଣୀ। ସେଥିରେ ମୋ କଥା ନ କହିବି ବୋଇଲେ କହେ। କାରଣ ନିଜକୁ ଅଲଗା ରଖି ହୁଏନାହିଁ, ବହୁ କାହାଣୀ ସଙ୍ଗେ ନିଜ କାହାଣୀ ମିଶି ଏକାକାର ହୋଇଯାଏ। ଯେଉଁଠି ତାହା ନ ହୋଇପାରେ, ସେଠି କଥାକାରର ଅହଂତା ବଡ଼ ହୋଇ ଦିଶେ, ଭ୍ରମଣ କାହାଣୀ ନହୋଇ ତା' ହୁଏ ଆତ୍ମକାହାଣୀ।(କିଛି କହିବାର ଥିଲେ– କୁଞ୍ଜବିହାରୀ ଗ୍ରନ୍ଥାବଳୀ– ୨ୟ ଭାଗ)

ସମୟର ଆହ୍ୱାନ ପ୍ରତି ସ୍ରଷ୍ଟା ବେଶ୍ ସଚେତନ। କବି ହେବାର ଉଚ୍ଚାକାଂକ୍ଷା ରହିଥିବା ଏହି ସାରସ୍ୱତ ସାଧକ ଜୀବନର ଅପରାହ୍ଣରେ ଲେଖିଛନ୍ତି ଭ୍ରମଣ କାହାଣୀ। ତାଙ୍କର ଉପଲବ୍ଧି ହେଉଛି, ଲେଖକ ଜୀବନର ଆଦ୍ୟ ଅର୍ଦ୍ଧାଧିକ ଭାଗ କାବ୍ୟ କବିତା ଲେଖି କାଟିଥିଲା। ଜଣେ କବି ହେବାର ଉଚ୍ଚାକାଂକ୍ଷା ତା'ର ଥିଲା, କାହାଣୀକାର ନୁହେଁ।

ଜୀବନର ଅପରାହ୍ଣରେ ସେ ଦେଖୁଛି – 'ଏ ଯୁଗ କବିତାର ଯୁଗ ନୁହେଁ, କାହାଣୀର ଯୁଗ। ପୁଣି ଲେଖକ ସ୍ୱଭାବତଃ ଯାଯାବର।'' କବି ଶ୍ରୀ ଦାଶଙ୍କ କବିତା ମଧ୍ୟ ଏହି ଯାଯାବର ଦୃଷ୍ଟିରେ ବେଶ୍ ସମୃଦ୍ଧ। ଡୁଡୁମା, ବାଗ୍ରା, ନର୍ମଦା ଆଦି ଅନେକ କବିତା ପଢ଼ିଲେ ଜଣାଯାଏ, ଯେପରି ଭ୍ରମଣକାରୀ ଜଣେ ସଂଗୀତ ଗାଇ ଗାଇ ଚାଲିଛି। କବିଙ୍କ ଯାଯାବର ଦୃଷ୍ଟି ଭ୍ରମଣ ସାହିତ୍ୟରେ ଅଧିକ ମୁଖରିତ ହୋଇଛି। ରାମାୟଣ ଓ ମହାଭାରତରେ ଯେପରି ଅନେକ ଚରିତ୍ର, ସେ ଶ୍ରୀରାମ ହୁଅନ୍ତୁ କି ଅର୍ଜୁନ, ଏମାନଙ୍କ ତୀର୍ଥାଟନ ବା ପରିଭ୍ରମଣ ପ୍ରସଙ୍ଗ ଭିତରେ ଭ୍ରମଣ କାହାଣୀର ବୀଜଟି ସଂଗୁପ୍ତ ରହି ଏହି ଭାରତୀୟ ମହାକାବ୍ୟକୁ ମନଗ୍ରାହୀ କରି ପାରିଛି। ଓଡ଼ିଆ ସାହିତ୍ୟରେ ମଧ୍ୟ ସନ୍ଥ ଅରକ୍ଷିତ ଦାସଙ୍କ 'ମହୀମଣ୍ଡଳ ଗୀତା'ଠାରୁ ଫକୀର ମୋହନ ସେନାପତିଙ୍କ 'ଉତ୍କଳ ଭ୍ରମଣଂ' ପର୍ଯ୍ୟନ୍ତ ଭ୍ରମଣ ସାହିତ୍ୟର ଆଦି ରୂପ ହିଁ କାବ୍ୟ କବିତା।

ଆଦିମ ଜୀବନରେ କୃଷି ସିନା ସ୍ଥାୟୀ ବସତି ପାଇଁ ଅବକାଶ ସୃଷ୍ଟି କରିଥିଲା, ତାହା ପୂର୍ବରୁ ତ ଜୀବନ ଥିଲା ଯାଯାବରର ଜୀବନ, ଭ୍ରମଣକାରୀର ଜୀବନ । ଭ୍ରମଣ ପ୍ରତି ଆଗ୍ରହ ମଣିଷ ମନରେ ଯୁଗଯୁଗ ଧରି ରହି ଆସିଛି। ସ୍ରଷ୍ଟା କୁଞ୍ଜବିହାରୀ ଛାତ୍ର ଜୀବନରୁ ଭ୍ରମଣ କାହାଣୀ ରଚନାରେ ବ୍ରତୀ ହୋଇଥିଲେ। କଲିକତା ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ ଅଧୟନ କାଳରେ ଡାଏରୀରେ ଲିଖିତ 'ଉତ୍ତର ପଥେ' ମଧ୍ୟରେ ଭ୍ରମଣ କାହାଣୀ ପ୍ରତି ଯେଉଁ ଅନୁରାଗ ଦେଖିବାକୁ ମିଳିଥିଲା, ତାହା ପରବର୍ତ୍ତୀ ସମୟରେ 'ଲଙ୍କାଯାତ୍ରୀ' ଭ୍ରମଣ କହାଣୀ ରଚନା କରି ସ୍ରଷ୍ଟା ଯେଉଁ ସାରସ୍ୱତ ଯାତ୍ରା ଆରମ୍ଭ କରିଥିଲେ, ସେଥିରେ ଏହି ଅନୁରାଗର ସଫଳ ରୂପାୟନ ପର୍ବର ଆରମ୍ଭ ହୋଇଥିଲା।

ଡକ୍ଟର ମାୟାଧର ମାନସିଂହ ତାଙ୍କ ଓଡ଼ିଆ ସାହିତ୍ୟ ଇତିହାସରେ 'ପ୍ରକୃତ ସ୍ରଷ୍ଟାବର୍ଗ' ଶୀର୍ଷକରେ ଯେଉଁ କେତେଜଣ ସ୍ରଷ୍ଟାଙ୍କୁ ଗ୍ରହଣ କରିଛନ୍ତି, ସେଥିମଧ୍ୟରେ ଅଛନ୍ତି ଶ୍ରୀ ଦାଶ। ତାଙ୍କ ରଚନାରେ ଉତ୍କଳ ଚେତନା ଓ ସାମାଜିକ ଚେତନାକୁ ସେ ଲକ୍ଷ୍ୟ କରିଛନ୍ତି ଓ ଲକ୍ଷ୍ୟ କରିଛନ୍ତି ସ୍ରଷ୍ଟାଙ୍କ ସୌନ୍ଦର୍ଯ୍ୟ ଚେତନାକୁ। ସତ୍ୟ ଓ ସୌନ୍ଦର୍ଯ୍ୟର ଯୁଗଳବନ୍ଦୀ ହିଁ କୁଞ୍ଜବିହାରୀଙ୍କ ଭ୍ରମଣ କାହାଣୀ। ଭ୍ରମଣର ସ୍ୱାଭାବିକତାକୁ ପ୍ରଥମ ଭ୍ରମଣ କାହାଣୀ ପୁସ୍ତକ 'ଲଙ୍କାଯାତ୍ରୀ'ର ପ୍ରାରମ୍ଭରେ ହିଁ ଦର୍ଶାଇଛନ୍ତି ଶ୍ରୀ ଦାଶ।

ସେ କହିଛନ୍ତି, ମଣିଷ ଚାଲିଛି, ଚାଲିବା ତା'ର ପ୍ରକୃତି, ଯୁଗ ଯୁଗ ଧରି ଅଗଣିତ ଢେଉ ଦୁନିଆର ବେଳାଭୂମିରେ ଭାଙ୍ଗି

ଚୁପ୍‌ଚାପ୍ ହୋଇଯାଉଛି। ଫେର୍ ଧାଇଁଛି ଲହରୀ, ତା'ପଛକୁ ତା'ପଛ, କେଉଁ ରହସ୍ୟାଛନ୍ନ ଦିଗ୍‌ବଳୟରୁ – ଫେନିଳ ଅଞ୍ଚଳ, ଗଭୀର ପ୍ରଶାନ୍ତ, ଉନ୍ନତ ଉଦ୍ଧତ। ପ୍ରତ୍ୟେକ ପ୍ରତ୍ୟେକଠାରୁ ପୃଥକ୍, ଅଥଚ କି ନିବିଡ଼ ଐକ୍ୟର ବନ୍ଧନ ! କୋଟି କୋଟି ତରଙ୍ଗ–ଆରଣ୍ୟ ମଧ୍ୟରେ ଆମର ଗତି ଏଇ ଗତି ହିଁ ସତ୍ୟ, ଗତିରେ ହିଁ ଶକ୍ତିର ପ୍ରକାଶ – ଦ୍ରୁତରୁ ଦ୍ରୁତତମ।

'ବାସ୍ତବିକ ଜୀବନ ଏକ ଭ୍ରମଣ– ଅସରନ୍ତି ଭ୍ରମଣ– ଅଜଣା ଅଶୁଣା ଅସୀମ ରାଜ୍ୟକୁ ତା'ର ଗତି – ମୃତ୍ୟୁ ଜୀବନର ପୂର୍ଣ୍ଣଚ୍ଛେଦ ନୁହେଁ, ଅନନ୍ତ ଅଖଣ୍ଡ ଜୀବନର ଏକ କମା ମାତ୍ର।''

ଭ୍ରମଣ କାହାଣୀ ସଂପର୍କରେ ଏ ଭାବନା ଯେପରି ହୃଦୟସ୍ପର୍ଶୀ, ବର୍ଣ୍ଣନାର ପାଟବତା ସେହିପରି ମନୋଜ୍ଞ। ପଣ୍ଡିତ ନୀଳକଣ୍ଠଙ୍କ ଏହି 'ଲଙ୍କାଯାତ୍ରୀ'ର ଭାଷାଶୈଳୀ ସଂପର୍କରେ ସ୍ୱୀକାରୋକ୍ତି କରିଛନ୍ତି, ଏପରି ସରସତା ଫୁଟାଇବାର କଳା ସାରା ଜୀବନ ଚେଷ୍ଟାରେ ମୁଁ ଆୟତ୍ତ କରି ପାରିଲି ନାହିଁ । ଗଦ୍ୟ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ପଣ୍ଡିତ ନୀଳକଣ୍ଠ ଗଦ୍ୟ ସାହିତ୍ୟରେ ପ୍ରାଥମିକ ଗଦ୍ୟ ରଚନାରେ ବ୍ରତୀଥିବା ଶ୍ରୀ ଦାଶଙ୍କୁ ଯେଉଁ ପ୍ରଶଂସା କଲେ, ତାହା ପ୍ରକୃତରେ ଥିଲା ତାଙ୍କର ସମୀକ୍ଷାତ୍ମକ ଦୃଷ୍ଟିକୋଣ। 'ଲଙ୍କାଯାତ୍ରୀ'ର ଉଲ୍ଲେଖ ମଧ୍ୟ ଏହାକୁ ସ୍ପଷ୍ଟ କରୁଛି। ଭ୍ରମଣ କାହାଣୀ ରଚନାରେ ଶ୍ରୀ ଦାଶ ପାଇଥିବା ସିଦ୍ଧି ତାଙ୍କ ଗ୍ରନ୍ଥାବଳୀ ସଂକଳନରୁ ବି ସ୍ପଷ୍ଟ ହୋଇଛି। ସାରସ୍ୱତ କର୍ମର ପ୍ରାରମ୍ଭିକ ପର୍ଯ୍ୟାୟ କବିତା ପାଇଁ ଉତ୍ସର୍ଗ ରହିଥିବା ବେଳେ 'ଗ୍ରନ୍ଥାବଳୀ'ର ପ୍ରଥମ ଓ ଦ୍ୱିତୀୟ ଭାଗ ହେଉଛି ଶ୍ରୀ ଦାଶଙ୍କ ଭ୍ରମଣ କାହାଣୀର ସଂକଳନ । ଭ୍ରମଣ କାହାଣୀ ପ୍ରତି ରହିଥିବା ସମ୍ମୋହନ ଏଥିରୁ ସ୍ପଷ୍ଟ ହୋଇଯାଏ। ସାହିତ୍ୟ ସମୀକ୍ଷକ ପ୍ରଫେସର ନରେନ୍ଦ୍ର ନାଥ ମିଶ୍ରଙ୍କ ଦୃଷ୍ଟିରେ, 'ପ୍ରକୃତରେ ତାଙ୍କ ସୃଷ୍ଟି ପରିଧିର ବ୍ୟାପ୍ତି, ଗଭୀରତା, ବିଶ୍ୱଜନୀନତା ଓ ରସପ୍ରାଣତାରେ ଯଥାର୍ଥ ଅବଗାହନ ଲାଗି ଭ୍ରମଣସାହିତ୍ୟ ତୋରଣ ସଦୃଶ୍ୟ।''(କୁଞ୍ଜବିହାରୀ ଗ୍ରନ୍ଥାବଳୀ– ୨ୟ ଭାଗ– ଭୂମିକା)

ଓଡ଼ିଆ ଭ୍ରମଣ ସାହିତ୍ୟ ଯେତେବେଳେ କ୍ଷୀଣ ଧାରଟି ହୋଇ ବହି ଚାଲିଛି, ସେତେବେଳେ ଏହାକୁ ସମୃଦ୍ଧ କରିବାରେ କୁଞ୍ଜବିହାରୀ ଦାଶ ଗ୍ରହଣ କରିଛନ୍ତି ଉଲ୍ଲେଖନୀୟ ଭୂମିକା। ତାଙ୍କ ବୈଶିଷ୍ଟ୍ୟମଣ୍ଡିତ ଭ୍ରମଣ କାହାଣୀରେ ଓଡ଼ିଆ ସାହିତ୍ୟ ହୋଇଛି ସମୃଦ୍ଧ। ବୈଚିତ୍ର୍ୟ ଓ ବିବିଧତାରେ ଏହି ଭ୍ରମଣ କାହାଣୀ ବେଶ୍ ମନନଧର୍ମୀ।

ଶ୍ରୀ ଦାଶଙ୍କ ପ୍ରଥମ ଭ୍ରମଣ କାହାଣୀ 'ଲଙ୍କାଯାତ୍ରୀ'ରେ ସିଂହଳ ଯାତ୍ରା କାଳରେ ଯେଉଁ ଅନନ୍ୟ ଅନୁଭୂତି ଲାଭ କରିଛନ୍ତି, ତାହା ପ୍ରକାଶ କରିଛନ୍ତି । ଏଥିରେ କେବଳ ଲଙ୍କାର ଇତିହାସ, ସାହିତ୍ୟ, କଳା ଆଦି ଆଲୋଚିତ ହୋଇନାହିଁ, ଏଥିରେ ମଧ୍ୟ ଲଙ୍କା ଯାତ୍ରା ସମୟରେ ଦକ୍ଷିଣ ଭାରତରେ ଲେଖକଙ୍କ ଅନୁଭୂତିର ଦୀର୍ଘ ବର୍ଣ୍ଣନା ବି ରହିଛି। ଚାରି ଦିନର ରହଣି ସିନା ଲେଖକଙ୍କ ମନରେ ଘୋର ଅତୃପ୍ତି ଓ ଅସନ୍ତୋଷ ଆଣିଥିଲା, ମାତ୍ର ଏହି ସ୍ୱଳ୍ପ କାଳର ରହଣି ଭିତରେ ଯେଉଁ ଜୀବନାନୁଭୂତି 'ଲଙ୍କାଯାତ୍ରୀ'ରେ ଫୁଟିଉଠିଛି, ତାହା ତୃପ୍ତିପ୍ରଦ ଓ ସନ୍ତୋଷଦାୟକ । ଗଦ୍ୟରେ କବିତ୍ୱର ଛଟା, ବର୍ଣ୍ଣନାର ସ୍ଥାନେ ସ୍ଥାନେ କବିତା ଓ ଶ୍ଳୋକର ସଂଯୋଜନା ଏହି ଭ୍ରମଣ କାହାଣୀକୁ 'ଯାହା ଦେଖିଲି, ତାହା ଲେଖିଲି' ଏହି ପର୍ଯ୍ୟାୟରେ ନରଖି ରସୋତ୍ତୀର୍ଣ୍ଣ କରି ପାରିଛି। ଲଙ୍କାରେ 'ଆଦିମ ଶୃଙ୍ଗ'(ଆଦମସ୍ ପିକ୍) ଦେଖି ତନ୍ମୟ ହୋଇଉଠିଛନ୍ତି ସ୍ରଷ୍ଟା। ଶୃଙ୍ଗ– ତରଙ୍ଗ ରାଶି ମଧ୍ୟରୁ ଭାସି ଉଠୁଥିବା ସୂର୍ଯ୍ୟ, ତରଳ ଲୋହିତ କୁଜ୍‌ଝଟୀ ଉପରେ ପ୍ରତିଫଳିତ ହେଉଥିବା ଆଦିମ ଶୃଙ୍ଗର ନୀଳାଭ ଛାୟା, ଦୂରସ୍ଥ ନୀଳସମୁଦ୍ର ଓ ବନମଣ୍ଡିତ ପର୍ବତ ମାଳେ ମାଳେ ଆସି ସୂର୍ଯ୍ୟ ନୀଳାକାଶକୁ ରଥ ଉଠାଇ ନେବାର ଚମତ୍କାର ଭିତରେ କବି ଉଡ଼ିଯାଉଥିବା ଭାବକୁ ଗୁନ୍ଥିଛନ୍ତି –

ଜୀବନର ଏଇ ନୂଆ ଅନୁଭବ
ପାରିବୁ କି ଲେଖି କବିତା ?
ନିଜ ଅନୁଭବେ ନିଜେ ଡୁବି ମୁହିଁ
କିରଣେ ଯେସନ କବିତା
ବହିଯାଏ କ୍ଷଣେ ମଳୟେ
ସଉରଭ ସମ ଭାବନା ମୋହର
ମେଘ ଲୋଳ ଦିଗ୍‌ବଳୟେ।

ଏହି ଶୃଙ୍ଗକୁ ପୁରାଣ ବୃଦ୍ଧ ଓ ବିଶ୍ୱ ମୁକତିର ନିଶାଣ ଭାବେ ଉଲ୍ଲେଖ କରିଛନ୍ତି ସେ। ଜଣେ କବି ଭ୍ରମଣ କାହାଣୀ ଲେଖକ ହେଲେ ଭ୍ରମଣ କାହାଣୀ କେତେ କବିତ୍ୱରେ ମଣ୍ଡି ହୁଏ, କୁଞ୍ଜ ବିହାରୀଙ୍କ ଭ୍ରମଣ କାହାଣୀ ଏହାର ପ୍ରକୃଷ୍ଟ ଦୃଷ୍ଟାନ୍ତ।

ପ୍ରଥମ ପୁରୁଷ ଓ ଅତୀତ କାଳରେ ତଥ୍ୟ, ବର୍ଣ୍ଣନା ଓ ପର୍ଯ୍ୟବେକ୍ଷଣକୁ ଉପସ୍ଥାପନ କରିବା ଭ୍ରମଣ କାହାଣୀର ସାଧାରଣ ଶୈଳୀ। ମାତ୍ର କେବଳ 'ଲଙ୍କାଯାତ୍ରୀ'ରେ ନୁହେଁ, ଶ୍ରୀ ଦାଶଙ୍କ 'ମୋ ସ୍ୱପ୍ନର କାଶ୍ମୀର', 'ପଥ ଓ ପଥିକ', 'ଦୂର ଦିଗନ୍ତର ଆକାଶ', 'ଆମେରିକାରୁ ଇଉରୋପ ଆଫ୍ରିକା'ରେ 'ମୁଁ'ର ପୀଡ଼ାଦାୟକ ବାରମ୍ବାର ଉଚ୍ଚାରଣ, 'ଥିଲି', 'ଥିଲା'ର କାଳଗତ ମୋହରକୁ

ଏଡ଼ାଇ ଦେଇ କାବିକତ୍ୱର ଛଟା, ପ୍ରାଣସ୍ପର୍ଶୀ ବର୍ଣ୍ଣନାବିଳାସ ଭିତରେ ସମ୍ମୋହିତ କରିବାର ଆବେଗ ହିଁ ଛଳ ଛଳ । ଅବଶ୍ୟ ଲଙ୍କାର ସମସ୍ୟା ଉପରେ ଉପସ୍ଥାପନ ହେଉ ବା ଶ୍ରୀଲଙ୍କା ଇତିହାସର ଅବତାରଣାରେ ସୃଜନଶୀଳ ଦିଗ ଊଣା ପଡ଼ିଛି। ତଥାପି ଏହା ହେଉଛି ଉପଲବ୍ଧି ଓ ବାସ୍ତବତାର କଷଟିରେ ପରୀକ୍ଷିତ।

'ମୋ ସ୍ୱପ୍ନର କାଶ୍ମୀର'(୧୯୫୬)ରେ ଯାତ୍ରାପଥର ଦୀର୍ଘ ବର୍ଣ୍ଣନାକୁ ପରିହାର କରି ସ୍ରଷ୍ଟା ପ୍ରତ୍ୟକ୍ଷ ଓ ନାଟକୀୟ ଶୈଳୀକୁ ଆପଣାଇଛନ୍ତି। 'ମୋ ସହଯାତ୍ରୀ', 'ପଠାଣକୋଟରୁ ଶ୍ରୀନଗର', 'ବନିହାଲ', 'ଶ୍ରୀନଗର' ଆଦି ଶୀର୍ଷକରେ ଭ୍ରମଣ କାହାଣୀ ହୋଇଛି କ୍ରମବିକଶିତ। ବାସ୍ତବତାର ଚିତ୍ର, ଐତିହାସିକ ଅବତାରଣା ଭିତରେ ବି ଉପସ୍ଥାପନ ଶୈଳୀ ଏହାକୁ ସୁଖପାଠ୍ୟ କରିଛି। ସ୍ଥାନେ ସ୍ଥାନେ ବର୍ଣ୍ଣନା ବି ମନମୁଗ୍ଧକର। ଚିନାର ଗଛ ମୂଳରେ 'କାଶ୍ମୀର ସ୍ୱପ୍ନର ନୁହେଁ, ମାଟିର' କବିତା ଲେଖିବା ସେହି କବିପ୍ରାଣର ଅଭିବ୍ୟକ୍ତି ଭିନ୍ନ ଆଉ କ'ଣ ? ସ୍ୱପ୍ନର କାଶ୍ମୀରର ବାସ୍ତବ ରୂପ ଦେଖିଛନ୍ତି ସ୍ରଷ୍ଟା। ଦେଶପ୍ରେମର ଉଚ୍ଛ୍ୱାସକୁ ମଧ୍ୟ ଏଥିରେ ପ୍ରତ୍ୟକ୍ଷ କରାଯାଏ। ତେବେ ଏହି ଭ୍ରମଣ କାହାଣୀରେ ମଧ କବି ମଣିଷକୁ ଭେଟିବାକୁ ହୁଏ। କେଉଁଠି ଯାଆଁଳା ଭାଇ ପରି ମେଘ ଆଉ ବରଫ – ପ୍ରଭେଦ ବାରି ହେଉନାହିଁ, କେଉଁଠି ଛିଣ୍ଡା ମେଘ ଫାଙ୍କରୁ ସୂର୍ଯ୍ୟକିରଣ ଗୋଟିଏ ମାତ୍ର ପର୍ବତକୁ ଅଭିଷିକ୍ତ କରୁଛି – ଅନ୍ୟ ସମସ୍ତ ଶୃଙ୍ଗ ଛାୟାମୟ, ଆହା ମେଘର ଜୁଆରରେ ସେ ନିଭିଗଲା ନିଭିଗଲା...(ମୋ ସ୍ୱପ୍ନର କାଶ୍ମୀର) ପ୍ରକୃତିର ଅପରୂପ ଶୋଭାରେ ବିମୁଗ୍ଧ କବି ମାନସ !

ଆଉ ଏକ ଶୈଳୀକୁ ସ୍ରଷ୍ଟା ଗ୍ରହଣ କରିଛନ୍ତି 'ପଥ ଓ ପଥିକ'ରେ। ଏଥିରେ ସ୍ଥାନିତ ହୋଇଛି 'ମୋର କାଶ୍ମୀର ଯାତ୍ରା', 'ଅଜନ୍ତା, ଏଲୋରା ଓ ଧୂଆଁଧାର', 'ରାଜଗିରି ଓ ନାଳନ୍ଦା', 'ବାଦାମପାହାଡ଼', 'ଖଣ୍ଡାଧାର ପଥେ', 'ଗୋପବନ୍ଧୁଙ୍କ ଜନ୍ମସ୍ଥାନ', 'କୁଲ୍‌ଟିରେ ଦୁଇଦିନ' ଓ 'ମେଘାସନ' ଶୀର୍ଷକ ଲେଖା । ବିଭିନ୍ନ ସମୟରେ ସ୍ରଷ୍ଟା ଯାଇଥିବା ଅଞ୍ଚଳ ଓ ସେଠାରେ ତାଙ୍କ ଅନୁଭୂତିକୁ ଏଥିରେ ଏକାଠି କରାଯାଇଛି। 'ପଥ ଓ ପଥିକ'ରେ ଦର୍ଶନୀୟ ସ୍ଥାନର ମହତ୍ତ୍ୱ ବର୍ଣ୍ଣନା ସହ ପ୍ରକୃତି ସୌନ୍ଦର୍ଯ୍ୟର ବର୍ଣ୍ଣନା ଉଲ୍ଲେଖନୀୟ। ବ୍ୟକ୍ତିଗତ ଅନୁଭବର ବର୍ଣ୍ଣନା ଏତେ ସ୍ୱଚ୍ଛ, ଯାହା ଏହାକୁ ଗୀତିଗଦ୍ୟର ସ୍ତରକୁ ନେଇପାରିଛି।

'ଦୁଇ ଦିଗନ୍ତର ଦେଶ' ମଧ୍ୟ 'ପଥ ଓ ପଥିକ' ପରି। ଏଥିରେ 'ହିମାଦ୍ରିର ଶୃଙ୍ଗେ ଶୃଙ୍ଗେ' ଓ 'ମଳୟ ଯେଉଁ ଦିଗରୁ ବହେ' ଭ୍ରମଣ ଆଲେଖ୍ୟରେ ହିମାଦ୍ରି ଶୃଙ୍ଗର ଅନୁଭୂତି ଓ ଦକ୍ଷିଣ ଭାରତର ପର୍ଯ୍ୟଟନ ସ୍ଥଳୀ ସଂପର୍କରେ ଉଲ୍ଲେଖ କରାଯାଇଛି। 'ହିମାଦ୍ରିର ଶୃଙ୍ଗେ ଶୃଙ୍ଗେ'ରେ ଭ୍ରମଣର ବିଶେଷତ୍ୱ ସଂପର୍କରେ ଚମତ୍କାର ଉକ୍ତିଟି ରଖିଛନ୍ତି– ଭ୍ରମଣରେ ଜୀବନର ସବୁ ସ୍ତରର ଅନୁଭବ ଆସେ –କେତେବେଳେ ଯୋଗୀର, କେତେବେଳେ ଭୋଗୀର ଆଜି ମହାନ ଭୋଗୀ ମୁଁ, ହିମାଦ୍ରିର ଶୃଙ୍ଗେ ଶୃଙ୍ଗେ ବ୍ୟାପ୍ତ ଏକ ଭେଲଭେଟ୍ ଗୋଧୂଳିର – ଏ ଗୋଧୂଳି ମୋର ଏକାନ୍ତ ନିଜର ଅସୀମକୁ ଆତ୍ମୀୟ କରିବାର ଅନୁଭବ ଆସିଚି ମୋର।'' ଏପରି ବର୍ଣ୍ଣିଳ ଜୀବନାନୁଭୂତି ଓଡ଼ିଆ ସାହିତ୍ୟରେ ଖୁବ୍ କମ୍ ଦେଖିବାକୁ ମିଳେ। ସୁନ୍ଦର ବର୍ଣ୍ଣନା ଭିତରେ କାହାଣୀର ସମ୍ମୋହନ ବାରି ହୋଇଯାଏ।

'ଲଙ୍କାଯାତ୍ରୀ'ରୁ ଭ୍ରମଣ କାହାଣୀ ରଚନା ଆରମ୍ଭ କରିଥିବା ପ୍ରଫେସର ଦାଶଙ୍କ ସଂପ୍ରସାରିତ ଦୃଷ୍ଟି ଦିଗ୍‌ବଳୟକୁ 'ଆମେରିକାରୁ ଇଉରୋପ, ଆଫ୍ରିକା'ରେ ପ୍ରତ୍ୟକ୍ଷ କରିବାକୁ ହୁଏ। ଏହି ବୃହତ୍ ଭ୍ରମଣ କାହାଣୀ ପାଠ କଲେ ମନେ ହୁଏ ସ୍ରଷ୍ଟା ଏକ ବିସ୍ତୃତ କାନ୍‌ଭାସ ଉପରେ ଆଙ୍କି ଚାଲିଛନ୍ତି ମନଗ୍ରାହୀ ଚିତ୍ର ଆଉ ଚିତ୍ର। ପାଶ୍ଚାତ୍ୟ ସମାଜ, ତା'ର ସଂସ୍କୃତି, ଜୀବନଧାରାର ପ୍ରତ୍ୟକ୍ଷ ବର୍ଣ୍ଣନା ଚିରନ୍ତନୀ ଆଭାରେ ରଞ୍ଜିତ ହୋଇଛି। ସମାଲୋଚକଙ୍କ ଭାଷାରେ ଏହା ଓଡ଼ିଆ ସାହିତ୍ୟରେ କେବଳ ବୃହତ୍ତମ ନୁହେଁ, ଶ୍ରେଷ୍ଠ ଭ୍ରମଣ ଗ୍ରନ୍ଥ। ଦୂର ଦେଶ ଭ୍ରମଣ କାଳରେ ଏକ ଉଦାର ବିଶ୍ୱଜନୀନତାର ଆଲୋକରେ ସ୍ୱଦେଶର ଯଥାର୍ଥ ସ୍ୱରୂପ ଆବିଷ୍କାର କରିଛନ୍ତି ଓ ଦେଖିଛନ୍ତି ଏହି ସୁପ୍ରାଚୀନ ଐତିହାସିକ ଦେଶର ଭବିଷ୍ୟତ ବିକାଶର ସ୍ୱପ୍ନ।''

ବିଦେଶ ମାଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ପ୍ରିୟ ଜନ୍ମଭୂମି ଓଡ଼ିଶା ଚିତ୍ର ଦେଖିଛନ୍ତି ସ୍ରଷ୍ଟା ପ୍ରଫେସର ଦାଶ– ରକି, ଚେରୋକି, ଆଲ୍‌ପସ୍‌ରେ ଭୁଲି ପାରି ନଥିଲି ମୋ ପ୍ରଦେଶର ପ୍ରିୟ ପର୍ବତମାଳା ମହେନ୍ଦ୍ର, ମେଘାସନ, ମାଲ୍ୟଗିରି, ସାଲୁର, କଳିଙ୍ଗା ଘାଟି ନାଏଗ୍ରା ଓ ରାଇନ୍ ନଦୀର ପ୍ରପାତ ଦେଖି ସ୍ମରଣ କରିଥିଲି ଡୁଡୁମା, ବାଗ୍ରା, ପ୍ରଧାନପାଟ, ଖଣ୍ଡାଧାର ଏଲୋଷ୍ଟୋନ୍, ଲେକ୍ ଜେନେଭା ଦେଖି ମନେ ପଡ଼ିଥିଲା ଚିଲିକା, ଅଂଶୁପା 'ଓଲଡ଼୍ ଫେଥ୍ ଫୁଲ୍' ସ୍ମରଣ କରାଇ ଥିଲା ହଟକେଶ୍ୱରକୁ ଲୋହିତ ଭାରତୀୟ ଦେଖି ଆଖି ଆଗରେ ନାଚି ଉଠିଥିଲେ ସାନ୍ତାଳ, କୋହ୍ଲ ଆଦି ଆଦିବାସୀ ଚର୍ଚ୍ଚମୟ ରୋମ୍ ଦେଖି ମନେ ପଡ଼ିଥିଲା ମନ୍ଦିର ନଗର ଭୁବନେଶ୍ୱର । ପାଇନ୍ ବନର ମର୍ମର ଶୁଣୁ ଶୁଣୁ ଭାସି ଯାଇଥିଲି ପୁରୀରୁ କୋଣାର୍କ ପର୍ଯ୍ୟନ୍ତ ବିସ୍ତୃତ ଝାଉଁ ଆରଣ୍ୟକୁ ସକ୍, ସିକାମୋର୍ ଦେଖି ଶାଳ ପିଆଶାଳ ଜଙ୍ଗଲକୁ। ସତେ ମୋ

ଓଡ଼ିଶାଟି ଗୋଟିଏ ସଂକ୍ଷିପ୍ତ ପୃଥିବୀ–'। ନିଜ ମାଟିକୁ, ନିଜ ପ୍ରକୃତି ସହ ଆତ୍ମିକ ଭାବେ ଭଲ ପାଇଥିବା ସୃଜନଶୀଳ ସତ୍ତାଟି ଏହି ତୁଳନା ହିଁ କରିପାରେ, ଯାହା ପ୍ରଫେସର ଦାଶଙ୍କ କ୍ଷେତ୍ରରେ ଘଟିଛି। ଅନ୍ତର୍ଜଗତ–ବହିର୍ଜଗତ, ଦୃଶ୍ୟମାନ– ଅଦୃଶ୍ୟମାନ, ଚେତନ–ଅଚେତନର କଥା କହେ ଯଥାର୍ଥ ସାହିତ୍ୟ। କୁଞ୍ଜବିହାରୀ ବାହ୍ୟ ଦୃଶ୍ୟରେ ଆତ୍ମବିଭୋର ହୋଇଥିବା ବେଳେ ଅନ୍ତର୍ଜଗତ ପ୍ରତି ଦୃଷ୍ଟି ଦେଇଛନ୍ତି। ମୁହୂର୍ତ୍ତେ ଧରା ଦେଇ ଅପସରି ଯାଉଥିବା ସେହି ପଳାତକ ଭାବ ରାଶିକୁ ସାହିତ୍ୟର ରୂପ ଦେଇବାରେ ସମର୍ଥ ହୋଇଛନ୍ତି। 'ଲୋକସ୍ମୃତି ପାଠାଗାର', 'ଏସିଆନ୍ ଫୋକ୍‌ଲୋର ସୋସାଇଟି', 'ସେଣ୍ଟ ଲୁଇସ୍ ପୋଷ୍ଟ ଡେସ୍‌ପାଚ', 'ହଟନ୍ ୱାଟ୍‌କନସ ହାଇସ୍କୁଲ' ଏମିତି ଅନେକ ପ୍ରସଙ୍ଗ ଲେଖକ ଉଲ୍ଲେଖ କରିଛନ୍ତି, ଯେଉଁଥିରୁ ବାହ୍ୟ ଜଗତର ବାସ୍ତବ ଚିତ୍ରଟି ଆମ ନିକଟରେ ସ୍ପଷ୍ଟ ହୋଇଯାଏ। ଯେଉଁ ପ୍ରସଙ୍ଗରେ ଲେଖକ କହୁଛନ୍ତି, ତାହାକୁ ଉପରଠାଉରିଆ ଭାବେ ଦେଖି ନାହାନ୍ତି, ସେ ସଂପର୍କରେ ସବିଶେଷ ତଥ୍ୟ ସଂଗ୍ରହ କରିଛନ୍ତି ଓ ସେ ସଂପର୍କରେ ସ୍ପଷ୍ଟ ଧାରଣାଟି ମଧ ଉପସ୍ଥାପନ କରିଛନ୍ତି। 'ଆମେରିକାରୁ ଇଉରୋପ ଆଫ୍ରିକା'ରେ ଅନନ୍ୟ ଅନୁଭୂତିର ପ୍ରକାଶ ଘଟିଛି। ଏହି ଭ୍ରମଣ କାହାଣୀରେ ଅଧିକ ତଥ୍ୟନିଷ୍ଠ ହୋଇଛନ୍ତି ଲେଖକ। ଭ୍ରମଣର ଅନ୍ତରଙ୍ଗ ଆଲେଖ୍ୟ ମଧରେ ସ୍ରଷ୍ଟା ନିଜକୁ ଖୋଲି ଦେଇଛନ୍ତି, ଯେପରି ନାଏଗ୍ରା ପ୍ରପାତ ସଂପର୍କରେ ବର୍ଣ୍ଣନା କରୁ କରୁ ପ୍ରଫେସର ଦାଶ କହିଛନ୍ତି, ଶ୍ରୀ ଯେତିକି ପ୍ରୀତି ଆଣେ, ପ୍ରପାତ ସେତିକି ସୃଷ୍ଟି କରେ ଭୀତି। ଏକ ଆଣେ ଆତ୍ମ ବିସ୍ମୃତି, ଅନ୍ୟଟି ଆଣେ ଆତ୍ମ ସଚେତନତା, ଗୋଟିଏ ସୃଷ୍ଟିର କାବ୍ୟ, ଅନ୍ୟଟି ପ୍ରଳୟର ଦୁଃଖାନ୍ତ ନାଟକ। ପ୍ରୀତି ଆଉ ଭୀତିର ଏତେ ମଧୁର ସମନ୍ୱୟ ଆଉ କେଉଁଠି ହୋଇଛି ? ରୁଦ୍ର ସହିତ ସୁନ୍ଦର ଆଉ କେଉଁଠି ଏପରି ହାତ ମିଳାଇଛି ? ସୁନ୍ଦର ଯେପରି ମୋର ଧ୍ୟେୟ ରୁଦ୍ର ସେପରି ମୋର ପୂଜ୍ୟ। ପ୍ରକୃତି ସହ ନିଜକୁ ନିବିଡ଼ ଭାବେ ଯୋଡ଼ିଲେ ହିଁ ଜୀବନ ସଂପର୍କୀୟ ସତ୍ୟ ସ୍ୱତସ୍ଫୂର୍ତ୍ତ ଭାବେ ଝରି ଆସିବ।

ବିଦେଶ ଯାତ୍ରା ସମୟରେ ଜନ ବୋଲ୍‌ଟନ୍‌ଙ୍କ ସହ ସାକ୍ଷାତ୍ ଓ ଓଡ଼ିଆ ଭାଷା–ସାହିତ୍ୟ ପ୍ରତି ରହିଥିବା ତାଙ୍କର ଶ୍ରଦ୍ଧାକୁ କିପରି ସେ ବିବେଚନା କରିଛନ୍ତି, ତାହା ଉଲ୍ଲେଖଯୋଗ୍ୟ, ସେ ବୋଧେ ପୂର୍ବ ଜନ୍ମରେ ଓଡ଼ିଆ ଥିଲେ। ... ମନେ ହେଲା – ସେ ମୋର ଆତ୍ମୀୟ, ବିଦେଶୀ ମୁଖରେ ଓଡ଼ିଆ ଭାଷା ବଡ଼ ମଧୁର ଶୁଣାଗଲା। ଦେହ ମୋର ଶୀତେଇ ଉଠିଲା, ଏଇ ସ୍ୱତନ୍ତ୍ର ମାଧୁର୍ଯ୍ୟର ଆସ୍ୱାଦ ପାଇ।

ଏହ ଭ୍ରମଣ ବୃତ୍ତାନ୍ତ ଶେଷରେ ଲେଖକ 'ଆମେରିକା–ଅତୀତ ଓ ବର୍ତ୍ତମାନ' ଶୀର୍ଷକ ପରିଶିଷ୍ଟ ଯୋଡ଼ିଛନ୍ତି ସେ ରାଷ୍ଟ୍ରକୁ ଅଧିକ ପରିଚିତ କରିଦେବା ପାଇଁ। ସଂକ୍ଷିପ୍ତ ଇତିହାସ ସହ ବର୍ତ୍ତମାନର ସାମାଜିକ ସ୍ଥିତିର ଆକଳନ ଏଥିରେ ରହିଛି।

ଓଡ଼ିଆ ଭ୍ରମଣ କାହାଣୀ ଇତିହାସରେ ସ୍ୱତନ୍ତ୍ର ସ୍ଥାନର ଅଧିକାର ଡକ୍ଟର ଦାଶ। 'ଆମେରିକାରୁ ଇଉରୋପ ଆଫ୍ରିକାର ଉତ୍ସର୍ଗ ପତ୍ରରେ ସେ ଉଲ୍ଲେଖ କରିଛନ୍ତି, ମନରେ ମୋର ଯାହା କିଛି ଐଶ୍ୱର୍ଯ୍ୟ ଥିଲା, ତାକୁ ଗୋଟେଇପୋଟେଇ ଠୁଳ କରିଛି ଏହି କାହାଣୀରେ। ପ୍ରକୃତ ପକ୍ଷେ ମନର ଐଶ୍ୱର୍ଯ୍ୟ ହିଁ ଡକ୍ଟର ଦାଶଙ୍କ ଭ୍ରମଣ କାହାଣୀକୁ ବିଭାମଣ୍ଡିତ କରିଛି। ଓଡ଼ିଆ ଭାଷାରେ ଅନେକ ଭ୍ରମଣ କାହାଣୀ ଲେଖା ସରିଛି, ଏବେ ବି ଲେଖା ଚାଲିଛି ହେଲେ 'କେତୋଟି ମନ ଗଢ଼ିବା ଓ ଦେଶକୁ ସୁନ୍ଦରତର କରିବାର ମହାନ୍ ଲକ୍ଷ୍ୟ ଯେଉଁ ଭ୍ରମଣ କାହାଣୀ ରଚନା ପଛରେ ରହିଥିଲା, ତାହା ନିଜ ସାର୍ବଜନୀନତାର ସ୍ୱରରେ ମୁଗ୍ଧ କରିଆସିଛି। ସେଥିପାଇଁ ନିର୍ଦ୍ଦିଷ୍ଟ କାଳଖଣ୍ଡ ସଂପର୍କରେ ଏହି ଭ୍ରମଣ କାହାଣୀରୁ ଆଭାସ ମିଳୁଥିଲେ ହେଁ ଏହାର ଆବେଦନ କାଳାତୀତ। ଭ୍ରମଣ କାହାଣୀ ସଂପର୍କରେ କୁହାଯାଇଛି "Various travel texts help us to understand our history as well as the personality of the individual travel writers, their attitude towards the life of the people they traveled among, the way of governace in those periods among various other things." ନିଜ ଭ୍ରମଣ କାହାଣୀ ସମଗ୍ରରେ ଏହିପରି ମହାନ୍ ଉଦ୍ଦେଶ୍ୟ ପରିପୂର୍ତ୍ତିର ଲକ୍ଷ୍ୟ ରଖିଥିବା ମୋ ଜାତିର ପ୍ରଣମ୍ୟ ସାରସ୍ୱତ ପୁରୁଷ ଡକ୍ଟର କୁଞ୍ଜବିହାରୀ ଦାଶଙ୍କୁ ପ୍ରଣାମ ଜଣାଇ ରହୁଛି।

ବିଡ଼ଲା ଭବନ, ଆଦିତ୍ୟ ନଗର,
ନୂଆବଜାର, କଟକ–୪



# ଚାମ୍ପିଅନ୍ସ ଟ୍ରଫି ହକି –ଏକ ଇତିବୃତ୍ତ

**ଭାରତୀ ଭୂଷଣ ମିଶ୍ର**

କଳା ସଂସ୍କୃତି ଓ ଭାସ୍କର୍ଯ୍ୟ ପାଇଁ ବିଶ୍ୱ ମାନଚିତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ବହନ କରୁଥିବା ଓଡ଼ିଶା ବିଶ୍ୱ ଶାନ୍ତି ଓ ସଦ୍‌ଭାବନା କ୍ଷେତ୍ରରେ ଗୌରବମୟ ଐତିହ୍ୟ ପାଇଁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ସ୍ଥାନର ଅଧିକାରୀ । ଏବେ ଏହି ସଫଳତାରେ ଆଉ ଏକ ଫର୍ଦ୍ଦ ଯୋଡି ହୋଇଯାଇଛି କ୍ରୀଡ଼ା କ୍ଷେତ୍ରରେ ଆମର ଉଲ୍ଲେଖନୀୟ ସଫଳତା ପାଇଁ । ଆମର କ୍ରୀଡ଼ାବିତ୍‌ମାନେ ବିଭିନ୍ନ କ୍ରୀଡ଼ାରେ ସଫଳତା ହାସଲ କରିବା ସହିତ କ୍ରୀଡ଼ାର ଅନ୍ତର୍ଜାତୀୟ ପ୍ରତିଯୋଗିତାର ସଫଳ ଆୟୋଜନ କରି ଆମେ ସମଗ୍ର ଭାରତବର୍ଷର ଦୃଷ୍ଟି ଆକର୍ଷଣ କରିପାରିଛୁ । ଏହାର ସଦ୍ୟତମ ଉଦାହରଣ ହେଲା ଗତ ୬ ଡ଼ିସେମ୍ବର ୨୦୧୪ରୁ ୧୪ ଡ଼ିସେମ୍ବର ୨୦୧୪ ପର୍ଯ୍ୟନ୍ତ କଳିଙ୍ଗ ଷ୍ଟାଡ଼ିୟମ, ଭୁବନେଶ୍ୱରର ହକି କମ୍ପ୍ଲେକ୍ସରେ ଆୟୋଜିତ ୩୫ ତମ ଅନ୍ତର୍ଜାତୀୟ ହକି ଚାମ୍ପିଅନ୍ସ ଟ୍ରଫି । କିଛିଦିନ ପୂର୍ବେ ହକି ଇଣ୍ଡିଆ ଲିଗ୍‌ର କେତୋଟି ମ୍ୟାଚ୍‌କୁ ଅତ୍ୟନ୍ତ ସୁନ୍ଦର ଭାବେ ଆୟୋଜନ କରି ଆମେ ପ୍ରମାଣିତ କରି ଦେଇଥିଲୁ ଯେ ଆମେ ଯେକୌଣସି ଆନ୍ତର୍ଜାତିକ ସ୍ତରୀୟ ହକି ପ୍ରତିଯୋଗିତା ଆୟୋଜନ କରି ପାରିବୁ । ହକି ଇଣ୍ଡିଆ ଲିଗ୍‌ର ପ୍ରାଞ୍ଚାଇଜ୍ କଳିଙ୍ଗ ଲାନ୍ସର୍ସର ଏହା ହେଉଛି ନିଜର ଅଭ୍ୟାସ ପଡ଼ିଆ ।

ଭାରତରେ ଏହା ପୂର୍ବରୁ ଚାମ୍ପିଅନ୍ସ ଟ୍ରଫି ୧୯୯୬ ମସିହାରେ ମାଡ୍ରାସଠାରେ ଓ ସେହିଠାରେ ପୁନର୍ବାର ୨୦୦୫ ମସିହାରେ ଏଭଳି ମାତ୍ର ୨ଥର ଆୟୋଜିତ ହୋଇଛି । ଭାରତର ଦ୍ୱିତୀୟ ସହର ଭାବେ ଭୁବନେଶ୍ୱର ଏବେ ତୃତୀୟ ଥର ପାଇଁ ଏହି ମର୍ଯ୍ୟାଦାଜନକ ପ୍ରତିଯୋଗିତା ଆୟୋଜନର ଅଧିକାର ପାଇଛି ଓ ଅତ୍ୟନ୍ତ ସଫଳତାର ସହିତ ଆୟୋଜନ କରି ପାରିଛି ।

ଏହି ପରିପ୍ରେକ୍ଷୀରେ ଯଦି ଚାମ୍ପିଅନ୍ସ ଟ୍ରଫିର ଇତିହାସକୁ ଆମେ ପର୍ଯ୍ୟାଲୋଚନା କରିବା ତେବେ ଜାଣିବା ଯେ ବିଶ୍ୱକପ୍ ଓ ଅଲମ୍ପିକ୍ସ ପରେ ଏହା ହେଉଛି ହକିର ତୃତୀୟ ମହାକୁମ୍ଭ । ଅନ୍ତର୍ଜାତୀୟ ହକି ଫେଡେରେସନ ଦ୍ୱାରା ଏହା ୧୯୭୮ ମସିହାରୁ ଆୟୋଜିତ ହୋଇ ଆସୁଛି ।

ପଛକୁ ଫେରି ଚାହିଁଲେ ଜଣାଯାଏ ଯେ ତତ୍‌କାଳୀନ ପାକିସ୍ତାନ ହକି ଫେଡ଼େରେସନ୍‌ର ସଭାପତି ଏୟାର ମାର୍ଶାଲ (ସେବା ନିବୃତ୍ତ) ନୁର ଖାନ୍‌ଙ୍କର ଏହା ହେଉଛି ମାନସ ସନ୍ତାନ । ୧୯୭୮ ମସିହାରେ ଆର୍ଜେଣ୍ଟିନାର ବୁଏନ୍ସ ଏରିସ୍‌ଠାରେ ବିଶ୍ୱକପ୍ ହକି ପ୍ରତିଯୋଗିତାର ଆୟୋଜନ ସମୟରେ ସେ ଅନ୍ତର୍ଜାତୀୟ ହକି ଫେଡ଼େରେସନ୍ ସମ୍ମୁଖରେ ଗୋଟିଏ ପ୍ରସ୍ତାବ ରଖିଲେ ଯେ ପାକିସ୍ତାନରେ ବିଶ୍ୱର ୬ଟି ଶ୍ରେଷ୍ଠ ହକି ଦଳଙ୍କୁ ନେଇ ଗୋଟିଏ 'ସୁପର୍ ବିଶ୍ୱକପ୍ ହକି' ପ୍ରତିଯୋଗିତା ଆୟୋଜନ କରିବା ପାଇଁ । ଅଲମ୍ପିକ୍ ଏବଂ ବିଶ୍ୱକପ୍‌ର ଶ୍ରେଷ୍ଠ ମାନ୍ୟତାପ୍ରାପ୍ତ ଦଳଙ୍କୁ ନେଇ ଏହା ଆୟୋଜିତ ହେବ । ରେଣେ ଫ୍ରାଙ୍କ୍ (ବେଲ୍‌ଜିୟମ୍) ଯେ କି ଅନ୍ତର୍ଜାତୀୟ ହକି ଫେଡ଼େରେସନ୍‌ର ତତ୍‌କାଳୀନ ଅଧକ୍ଷ ଥିଲେ । ତାଙ୍କ ମନକୁ ଏହି ପ୍ରସ୍ତାବଟି ପାଇଲା ଓ ସେ ଅନ୍ତର୍ଜାତୀୟ ହକି ଫେଡ଼େରେସନ୍ ଆଗରେ ଏହି ପ୍ରସ୍ତାବ ପେଶ୍ କଲେ ଯାହାକି ଗୃହୀତ ହେଲା ଓ ଏହା ସ୍ଥିର କରାଗଲା ଯେ ବିଶ୍ୱକପ୍ ପରେ ୧୯୭୮ରେ ଏହା ଆୟୋଜିତ ହେବ ।

ତେଣୁ ପାକିସ୍ତାନ ହକି ଫେଡ଼େରେସନ ୧୯୭୮ ନଭେମ୍ବର ମାସରେ ଲାହୋରଠାରେ ଏହି 'ସୁପର ବିଶ୍ୱକପ୍ ହକି'ର ଆୟୋଜନ କଲା । ବିଶ୍ୱର ଶ୍ରେଷ୍ଠ ୫ ଗୋଟି ଦଳ ଏଥିରେ ଅଂଶ ଗ୍ରହଣ କଲେ ଏବଂ ଅଷ୍ଟ୍ରେଲିଆକୁ ଫାଇନାଲ୍‌ରେ ପରାସ୍ତ କରି ପାକିସ୍ତାନ ପ୍ରଥମ ଥର ପାଇଁ ଏହି ଟ୍ରଫି ହାସଲ କଲା । ଖାଣ୍ଟି ରୂପାରେ ପ୍ରାୟ ୫ କିଲୋଗ୍ରାମ୍ ଓଜନର ଏହି ଟ୍ରଫିଟିକୁ ନୁର୍‌ଖାନ୍ ନିଜେ ଦାନ କରିଥିଲେ । ସଫଳତାରେ ଉଲ୍ଲସିତ ପାକିସ୍ତାନର ତତ୍‌କାଳୀନ ରାଷ୍ଟ୍ରମୁଖ୍ୟ ଜେନେରାଲ୍ ମହମ୍ମଦ ଜିଆଉଲ୍ ହକ୍ ଫାଇନାଲ ମ୍ୟାଚ୍‌ର ପର ଦିନଟିକୁ ଜାତୀୟ ଛୁଟି ଭାବେ ଘୋଷଣା କରିଥିଲେ ।

ପରେ ଏହି ପ୍ରତିଯୋଗିତାର ନାମ ବଦଳାଇ 'ଚାମ୍ପିଅନ୍ସ ଟ୍ରଫି' ହେଲା । ଏହା ଆୟୋଜନର ମୂଳ ଉଦ୍ଦେଶ୍ୟ ହେଲା ଯେ ବିଶ୍ୱର ଶ୍ରେଷ୍ଠ ହକି ଖେଳୁଥିବା ଦେଶମାନଙ୍କ ମଧ୍ୟରେ ସମ୍ପର୍କ ଦୃଢ

ରଖିବା ଓ ହକିର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା । ପାକିସ୍ତାନ ହକି ଫେଡ଼େରେସନ୍ ଏହାର ୨ ବର୍ଷ ଅନ୍ତରରେ ୧୯୮୦ରେ ଦ୍ୱିତୀୟ ଥର ପାଇଁ ଏହି ସମ୍ମାନଜନକ ଚାମ୍ପିଅନ୍ସ ଟ୍ରଫି ଆୟୋଜନ କଲା ଓ ତା'ପରଠାରୁ ୨୦୧୨ମସିହା ପର୍ଯ୍ୟନ୍ତ ଏହା ପ୍ରତିବର୍ଷ ଆୟୋଜିତ ହୋଇ ଆସୁଥିଲା । ଯେହେତୁ ବିଶ୍ୱ ହକି ଲିଗ୍‌ର ଆୟୋଜନ କରାଯିବା ପାଇଁ ସ୍ଥିରୀକୃତ ହେଲା ତେଣୁ ୨୦୧୨ ପରେ ଏହା ଦୁଇ ବର୍ଷରେ ଥରେ ଆୟୋଜିତ ହେବ । ସେହି କ୍ରମରେ ୨୦୧୪ର ୩୫ତମ ସଂସ୍କରଣ ମନ୍ଦିର ମାଳିନୀ ନଗରୀ ଭୁବନେଶ୍ୱରରେ ଆୟୋଜିତ ହେଲା ଅତ୍ୟନ୍ତ ସଫଳତାର ସହିତ । ଏକ ହିସାବରୁ ଜଣାଯାଏ ଯେ ପ୍ରଥମ ସଂସ୍କରଣରେ ୫ଟି ଦଳ, ଦ୍ୱିତୀୟରେ ୭ଟି ଦଳ ଏବଂ ୨୦୦୭ରେ ୮ଟି ଦଳ ଏହି ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲେ । ୨୦୧୦ ପର୍ଯ୍ୟନ୍ତ ଅନ୍ୟ ସମସ୍ତ ପ୍ରତିଯୋଗିତାମାନଙ୍କରେ ୬ଟି ଲେଖାଏଁ ଦଳ ଅଂଶ ଗ୍ରହଣ କରୁଥିଲେ । ତେଣୁ ମାତ୍ର ୨୦୦୭, ୨୦୧୧, ୨୦୧୨ ଓ ଚତୁର୍ଥ ଥର ପାଇଁ ୨୦୧୪ରେ ୮ଟି ଦଳ ଅଂଶ ଗ୍ରହଣ କରିଛନ୍ତି । ପ୍ରତ୍ୟେକ ଟୁର୍ଣ୍ଣାମେଣ୍ଟରେ ଆୟୋଜକ ଦେଶ ସହିତ ତା' ପୂର୍ବରୁ ଅନୁଷ୍ଠିତ ବିଶ୍ୱକପ୍ ହକି ଓ ଅଲିମ୍ପିକ୍ସର ଶ୍ରେଷ୍ଠ ସ୍ଥାନ ଅଧିକାର କରୁଥିବା ଦେଶମାନଙ୍କୁ ଏହି ମର୍ଯ୍ୟାଦାଜନକ ପ୍ରତିଯୋଗିତାରେ ଅଂଶ ଗ୍ରହଣ ପାଇଁ ମନୋନୀତ କରାଯାଏ । ଅଦ୍ୟାବଧି ପାକିସ୍ତାନ୧୧ଥର ନେଦରଲ୍ୟାଣ୍ଡ ୬ଥର, ଅଷ୍ଟ୍ରେଲିଆ ୬ ଥର, ଜର୍ମାନୀ ୫ଥର, ଭାରତ ୩ଥର, ମାଲେସିଆ ୨ଥର ଏବଂ ସ୍ପେନ୍ ଓ ନିୟୁଜିଲାଣ୍ଡ ଥରେ ଲେଖାଏଁ ଏହି ପ୍ରତିଯୋଗିତା ଆୟୋଜନ କରିଛନ୍ତି ।

ଦେଶର ସଫଳତାର ହାରକୁ ଯଦି ଆମେ ପର୍ଯ୍ୟାଲୋଚନା କରିବା ତେବେ ଜାଣି ପାରିବା ଯେ ଏହି ୩୫ତମ ସଂସ୍କରଣକୁ ମିଶାଇ ଅଷ୍ଟ୍ରେଲିଆ ସର୍ବାଧିକ ୧୩ ଥର ଏହାମଧ୍ୟରୁ ୨୦୦୮ରୁ ୨୦୧୨ କ୍ରମାଗତ ୫ଥର, ଜର୍ମାନୀ ୧୦ ଥର, ନେଦରଲ୍ୟାଣ୍ଡ ୮ଥର, ପାକିସ୍ତାନ ୩ ଥର ଓ ସ୍ପେନ୍ ମାତ୍ର ଥରେ ଚମ୍ପିୟାନ୍ ଆଖ୍ୟା ଅର୍ଜନ କରିଛନ୍ତି । ଅଷ୍ଟ୍ରେଲିଆ ହେଉଛି ଏହି ପ୍ରତିଯୋଗିତାର ସବୁଠାରୁ ସଫଳ ଦେଶ କାରଣ ଏହା ମୋଟ ୧୩ଥର ଚାମ୍ପିଆନ ୧୦ଥର ରନର୍ସ ଅପ୍ , ୫ଥର ତୃତୀୟ ସ୍ଥାନ ଓ ୩ଥର ଚତୁର୍ଥ ସ୍ଥାନ ହାସଲ କରିବାକୁ ସକ୍ଷମ ହୋଇଛି ।

ଆମ ଦେଶ ଭାରତର ସବୁଠାରୁ ବଡ଼ ସଫଳତା ହେଲା କେବଳ ୧୯୮୨ରେ ଥରେ ତୃତୀୟ ସ୍ଥାନ ଓ ଏଥରକୁ ମିଶାଇ ସପ୍ତମ ଥର ପାଇଁ ଚତୁର୍ଥ ସ୍ଥାନ ହାସଲ ।

ଚାମ୍ପିଅନ୍ସ ଟ୍ରଫିର ୩୫ ତମ ସଂସ୍କରଣ ଆମ ରାଜଧାନୀ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡ଼ିୟମ୍‌ରେ ଥିବା ହକି କଂପ୍ଲେକ୍ସରେ ଡ଼ିସେମ୍ବର ୬ରୁ ୧୪ ତାରିଖ ପର୍ଯ୍ୟନ୍ତ ଆୟୋଜିତ ହୋଇଥିଲା । ଗୋଟିଏ ମୁଖ୍ୟ ଷ୍ଟାଡ଼ିୟମ ଓ ଗୋଟିଏ ଅଭ୍ୟାସ ପଡ଼ିଆ ଏଥିପାଇଁ ଅତ୍ୟନ୍ତ ସୁନ୍ଦର ଭାବେ ପ୍ରସ୍ତୁତ କରାଯାଇଥିଲା । ସମସ୍ତ ଆୟୋଜନ ଅନ୍ତର୍ଜାତୀୟ ମାନର ଥିଲା । ପ୍ରତିଯୋଗିତାର ସଫଳ ଆୟୋଜନ ପାଇଁ ଗୋଟିଏ ପରିଚାଳନା ପରିଷଦ ଗଠିତ ହୋଇଥିଲା । ସଂପୃକ୍ତ ସମସ୍ତ କ୍ରୀଡ଼ା ସଂଘ, ପ୍ରଶାସନ, ପ୍ରାୟୋଜକ, କର୍ମକର୍ତ୍ତା ଓ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର ବିଭିନ୍ନ ବିଭାଗ ଓ ଗଣମାଧ୍ୟମ ସମସ୍ତଙ୍କର ଅକ୍ଳାନ୍ତ ପରିଶ୍ରମରେ ଅତ୍ୟନ୍ତ ସଫଳତାର ସହିତ ଏହି ପ୍ରତିଯୋଗିତାର ପରିସମାପ୍ତି ଘଟିଲା । ଦର୍ଶକମାନଙ୍କ ମଧ୍ୟରେ ଥିଲା ନାହିଁ ନଥିବା ଉତ୍ସୁକତା । ଅଂଶ ଗ୍ରହଣ କରିଥିବା ସମସ୍ତ ଦେଶ ଆୟୋଜକ ଓ ଦର୍ଶକମାନଙ୍କୁ କରିଛନ୍ତି ଭୂରି ଭୂରି ପ୍ରଶଂସା । ଫାଇନାଲ ମ୍ୟାଚ୍‌ରେ ଜର୍ମାନୀ ଦଳ ପାକିସ୍ତାନକୁ ୨–୦ ଗୋଲରେ ହରାଇ ସ୍ୱର୍ଣ୍ଣପଦକ ହାସଲ କରିଥିବା ବେଳେ ଅଷ୍ଟ୍ରେଲିଆଠାରୁ ୧–୨ ଗୋଲରେ ହାରି ଭାରତ ୪ର୍ଥ ସ୍ଥାନ ହାସଲ କରିଛି । ବିଭିନ୍ନ ଦଳର ସ୍ଥିତି ନିମ୍ନରେ ପ୍ରଦତ୍ତ ହେଲା ।

ସ୍ୱର୍ଣ୍ଣପଦକ–ଜର୍ମାନୀ
ରୌପ୍ୟପଦକ– ପାକିସ୍ତାନ
କାଂସ୍ୟପଦକ– ଅଷ୍ଟ୍ରେଲିଆ
୪ର୍ଥ ସ୍ଥାନ– ଭାରତ
୫ମ ସ୍ଥାନ– ନେଦରଲ୍ୟାଣ୍ଡ
୬ଷ୍ଠ ସ୍ଥାନ– ଆର୍ଜେଣ୍ଟିନା
୭ମ ସ୍ଥାନ– ଇଂଲଣ୍ଡ
୮ମ ସ୍ଥାନ– ବେଲ୍‌ଜିୟମ୍

ଏହାବ୍ୟତୀତ ବିଭିନ୍ନ ପୁରସ୍କାର ହାସଲ କରିଥିବା ଖେଳାଳୀମାନେ ହେଲେ–

୧) ମ୍ୟାନ୍ ଅଫ ଦି ଫାଇନାଲ – ମାର୍ଟିନ୍ କ୍ୱିକର (ଜର୍ମାନୀ)
୨) ଶ୍ରେଷ୍ଠ ଖେଳାଳୀ– ମୋରିଜ୍ ଫୁର୍ଷ୍ଟ (ଜର୍ମାନୀ)
୩) ଶ୍ରେଷ୍ଠ ସ୍କୋରର – ଜେରୋନ୍ ହର୍ଜବର୍ଜର (ନେଦରଲ୍ୟାଣ୍ଡ)
୪) ଶ୍ରେଷ୍ଠ ଗୋଲ କିପର୍– ପି.ଆର. ଶ୍ରୀଜେଶ(ଭାରତ)
୫) ଶ୍ରେଷ୍ଠ ଉଦୀୟମାନ ଖେଳାଳୀ– ଆକାଶଦୀପ ସିଂହ (ଭାରତ)
୬) ପିପୁଲ୍ସ ଚଏସ୍ – ସର୍ଦ୍ଦାରସିଂହ (ଭାରତ)
୭) ମୋଷ୍ଟ ଏନର୍ଜେଟିକ୍ ଇଣ୍ଡିଆନ ପ୍ଲେୟର–ଏସ୍ ଭି. ସୁନିଲ ।

ଏହି ପ୍ରତିଯୋଗିତାର ସଫଳ ଆୟୋଜନ ନିଶ୍ଚୟ ଆମ ସମସ୍ତଙ୍କ ପାଇଁ ଏକ ଗୌରବର କଥା ଏଥିରେ ସନ୍ଦେହ ନାହିଁ ।

କ୍ରୀଡ଼ା ଓ ଯୁବସେବା ବିଭାଗ
ନୟାପଲ୍ଲୀ, ଭୁବନେଶ୍ୱର–୧୨

# ପ୍ରାଧ୍ୟାପକ ଡକ୍ଟର ରବି ନାରାୟଣ ମହାନ୍ତି : ଏକ ଅମ୍ଳାନ ପ୍ରତିଭା

**ରବୀନ୍ଦ୍ର କୁମାର ବେହୁରିଆ**

'ସ୍ମୃତିକୁ ଖୋଜିଲି ମୁହିଁ –
ସହରର ଗଳିକନ୍ଦି ରେସ୍ତୋରାଁ କାନ୍ଥରେ
ସ୍ମୃତିକୁ ଖୋଜିଲି ପୁଣି କଟକର ବଡ଼ଦାଣ୍ଡ ଚଣ୍ଡୀ ମନ୍ଦିରରେ
ସ୍ମୃତି ମୋର କେଣେ ଗଲା ମୁଁ ନିରୀହ ଲୋକ
ହେ ପ୍ରଭୁ ଫେରାଇ ଦିଅ ମୋ ସ୍ମୃତିର ପାଉତି ଖଣ୍ଡିକ ।'

ସ୍ମୃତିର ପାଉତି ନ ମିଳିଲେ ବି ଦିବଂଗତ ପ୍ରାଧ୍ୟାପକ ଡକ୍ଟର ରବିନାରାୟଣ ମହାନ୍ତିଙ୍କୁ ଖୋଜିବାକୁ ଭଲ ଲାଗେ ।

ଭାରତୀୟ ପରମ୍ପରାରେ ବାଲ୍ମୀକି, ଦ୍ରୋଣାଚାର୍ଯ୍ୟ, ପର୍ଶୁରାମ, ସନ୍ଦିପନୀ, ବିଷ୍ଣୁ ଶର୍ମାଙ୍କଠାରୁ ଆରମ୍ଭ କରି ଶଙ୍କରାଚାର୍ଯ୍ୟ, ନାନକ, କବୀର, ରାମାନୁଜ, ଶ୍ରୀଚୈତନ୍ୟଙ୍କ ପର୍ଯ୍ୟନ୍ତ ବହୁ ଗୁରୁ ସେମାନଙ୍କର ଆଦର୍ଶ ପାଇଁ ତଥା ଗୁରୁତ୍ୱ ପାଇଁ ଅମର ହୋଇଯାଇଛନ୍ତି । ଏକଲବ୍ୟ–ଉପମନ୍ୟୁଙ୍କ ପରି ବହୁ ଶିଷ୍ୟ ସେମାନଙ୍କର ଶିଷ୍ୟତ୍ୱ ପାଇଁ ଅମର ହୋଇଛନ୍ତି । ଗୁରୁ ଯେତିକି ଜ୍ଞାନବାନ– ନୀତିବାନ– ଶ୍ରଦ୍ଧାବାନ ହେବେ, ଶିଷ୍ୟ ସେତିକି କର୍ତ୍ତବ୍ୟପରାୟଣ, ଶୃଙ୍ଖଳିତ ହେବ ଓ ଗୁରୁଙ୍କ ପ୍ରତି ଶ୍ରଦ୍ଧାବାନ ତଥା ଭକ୍ତିବାନ ହେବ । ବେଦ ଓ ଉପନିଷଦଠାରୁ ଆରମ୍ଭ କରି ବହୁ ପୋଥି ପୁରାଣରେ ଏହାର ଦୃଷ୍ଟାନ୍ତ ଲକ୍ଷ୍ୟ କରାଯାଇପାରେ । ସେହି ଦୃଷ୍ଟିରୁ ବିଚାର କରାଗଲେ, ପ୍ରାଧ୍ୟାପକ ଡକ୍ଟର ରବି ନାରାୟଣ ମହାନ୍ତି ଥିଲେ ଆଚାର୍ଯ୍ୟ ଓ ଦେବ ପ୍ରତିମ । ଶ୍ରେଣୀ ଗୃହରେ ଶିକ୍ଷାଦାନ ସହିତ ବିଭିନ୍ନ ଉଦାହରଣ ମାଧ୍ୟମରେ ଛାତ୍ରଚାତ୍ରୀମାନଙ୍କ ମନରେ ସାହସ ଓ ଶକ୍ତିର ସାର ପ୍ରୟୋଗ କରିଛନ୍ତି । ଛାତ୍ରଛାତ୍ରୀମାନଙ୍କ ମନରେ ସମାଜ ଗଠନ ପରିକଳ୍ପନା ସୃଷ୍ଟି କରାଇବା ସହିତ ସମାଜ ସଚେତନ ସୃଷ୍ଟି କରାଇ ପାରିଛନ୍ତି । ତାଙ୍କର ଶିକ୍ଷାଦାନର ଉଦ୍ଦେଶ୍ୟ – ଶିକ୍ଷାର ବିକାଶ, ମଣିଷ ତିଆରି କାରଖାନା – ଅନନ୍ତ ମହିମା ସଂପନ୍ନ ନେତି ନେତି ବ୍ରହ୍ମକୁ ଇତି ଇତି କରିବା । ତାଙ୍କ ମତରେ 'ଚରିତ୍ର ନ ଥିଲେ ସବୁ ଅସାର ।' ଶିକ୍ଷା ଏପରି ଏକ ମାଧ୍ୟମ ଯାହା ଚରିତ୍ର ଗଠନ କରିବାରେ ସହାୟକ ହୋଇଥାଏ । ଯାହାକି ଅଜ୍ଞାନ ଅନ୍ଧକାରରୁ ଆଲୋକକୁ ଟାଣି ଆଣି ପାରିବ । ଜି.ବି.ଜେଫେରି ଜଣେ ଶିକ୍ଷକଙ୍କର କର୍ମ, ଧର୍ମ, ସମ୍ମାନ ଓ କୃତି ଉପରେ ଟିପ୍ପଣୀ ଦେଇ କହିଥିଲେ –



The work of a teacher will be judged by his colleagues and the learned world, crudly on the examination results of his students, more deeply, on the vitality work for which he is responsible and by the most discerning, the quality of the men and the women who will carry through life the mark of having been his students.

ପ୍ରାଧ୍ୟାପକ ଡକ୍ଟର ରବିନାରାୟଣ ମହାନ୍ତି ଜଣେ ଅଧ୍ୟାପକ ଭାବରେ ଅଗଣିତ ଛାତ୍ରଛାତ୍ରୀଙ୍କ ପାଇଁ ପ୍ରାତଃ ସ୍ମରଣୀୟ ହୋଇ ରହିବେ । ତାଙ୍କ ପରି ଜଣେ ଉତ୍କଳ ମାତାର ଯୋଗ୍ୟ ସନ୍ତାନ, ଯଶସ୍ୱୀ ଅଧ୍ୟାପକ ତାଙ୍କ ଅଧ୍ୟାପନା କାଳରେ ଶିକ୍ଷକର ପ୍ରତିଟି କର୍ମ, ଧର୍ମ, ସେବା, ସାଧନା କରିଯାଇଛନ୍ତି । ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ, ଦୃଢ଼ ମନୋବଳ, ଗଭୀର ଇଚ୍ଛାଶକ୍ତି, ଆନ୍ତରିକ ପ୍ରୟାସ, ନିରହଂକାର ଜୀବନ ଶୈଳୀ, ଆଚାର ଓ ଆଚରଣ ତାଙ୍କୁ ପ୍ରଗତିର ଏକ ଶୀର୍ଷ ସ୍ଥାନରେ ପହଞ୍ଚାଇ ପାରିଛି । ତଥାପି ସ୍ୱପ୍ନ ଅଧୁରା ରହିଯାଇଛି ।

ରବର୍ଟ ଫ୍ରଷ୍ଟଙ୍କ ଭାଷାରେ –

'ଆଗରେ ପଡ଼ିଛି ପଥ ବହୁଦୂର
ଆହୁରି କେତେ ଯେ ବାକି

ଚାଲ ଚାଲ ବନ୍ଧୁ ପଡ଼ନାହିଁ ଥକି
ଅନେକ କାମ ଯେ ବାକି ।'

ଡକ୍ଟର ରବି ମହାନ୍ତିଙ୍କର ସୁଗୁଣ ସବୁ ଏବେ ବି ଓଡ଼ିଶାର ବିଶେଷକରି ସମାଜ ବିଜ୍ଞାନ ବିଭାଗର ଛାତ୍ରଛାତ୍ରୀଙ୍କ ମହଲର ଚତୁଃପାର୍ଶ୍ୱରେ ଘୂରି ବୁଲୁଛି । ସେ ମହକ ଦୀର୍ଘ ଦିନ ଧରି ରହିବ । ତାଙ୍କର ସୃଷ୍ଟି ସମ୍ଭାର ମଧ୍ୟରେ understanding elementary sociology, 2. social change 3, Indian society 4.Indian society and culture ଓ ଏତଦ୍‌ବ୍ୟତୀତ ଶତାଧିକ ଗବେଷଣା ନିବନ୍ଧ ତାଙ୍କୁ ଅମର କରି ରଖିବ । ୨୦ରୁ ଉର୍ଦ୍ଧ୍ୱ ଗବେଷକ ସମାଜ ବିଜ୍ଞାନ ବିଷୟରେ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗବେଷଣା କରି ପିଏଚ୍‌ଡି ଡିଗ୍ରୀ ଲାଭ କରିଛନ୍ତି । ଆଉ କେତେକ ଗବେଷକ ତାଙ୍କ ତତ୍ତ୍ୱାବଧାନରେ ଫକୀର ମୋହନ ବିଶ୍ୱବିଦ୍ୟାଳୟରେ ଗବେଷଣା ଆରମ୍ଭ କରିଥିଲେ, ତାହା ଅଧୁରା ରହିଗଲା । କବିଙ୍କ ଭାଷାରେ–

'ତୋଳା ସରିନାହିଁ ଜାତି କୋଣାରକ
ପଳାଇଲ କେଉଁ ରାଇଜେ
ସଂକଳପ ଥିଲା କଳପ କଳପ
ଅଳପତ ସରିନାହିଁ ଯେ
ଆଉ କେ...
ଟାଣରେ ନିହାଣ ଧରିବ
ରାଣ ଦେଇ କିଏ ସମର ପ୍ରାଙ୍ଗଣେ
ଧନୁରେ ଗୁଣ ବଢ଼ାଇବ ।
ଦାରଭୂତ ହୋଇ କାହିଁକି ବସିଛ
ଜଗତର ନାଥ ଜଗନ୍ନାଥ
ତୁମ ଭଳି ନାଥ ଥାନ୍ତେ ଜଗତେ
ଆମେ ସବୁ ହେଉ ଅନାଥ ।
ନୀଳାଦ୍ରି ମୋହନ ହେ...
ଚକାନୟନକୁ ଦିଅ ମେଲି
ଉତ୍କଳ ମାଟିରେ ରବି କୀର୍ତ୍ତିରଟୁ
ବାଜୁ ଉତ୍କଳର ମୂରଲୀ ।
ସଂସ୍କୃତରେ ଏକ ଶ୍ଳୋକ ଅଛି –
'ଚଳତ୍ ଚିତ୍ତଂ, ଚଳତ୍ ଚିତ୍ତଂ, ଚଳତ୍ ଜୀବନ ଯୌବନମ୍
ଚଳାଚଳ ମିଦଂ ସର୍ବ କୀର୍ତ୍ତି ଯସ୍ୟଃ ସଃ ଜୀବତି ।'

ଧନ, ଜୀବନ, ଯୌବନ କ୍ଷଣସ୍ଥାୟୀ କିନ୍ତୁ କୀର୍ତ୍ତି ଅମର । କୀର୍ତ୍ତି ଏପରି ଏକ କୌସ୍ତୁଭ ମଣି ଅଟେ ଯାହା ମାନବ ବ୍ୟଷ୍ଟିର ସୀମା ଲଂଘନ କରି ସମଷ୍ଟିରେ ନିଜର ସ୍ଥାନ ନିରୂପଣ କରିଥାଏ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ –

'ମଣିଷ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଯିଏଁ ନର, କର୍ମ ଏକାତାର
ଜୀବନର ମାନଦଣ୍ଡ ।'

ସ୍ୱାମୀ ଶୁଦ୍ଧାନନ୍ଦଙ୍କ ଭାଷାରେ – 'ସୂର୍ଯ୍ୟ ଉର୍ଦ୍ଧ୍ୱରୁ ପୃଥିବୀକୁ ଆଲୋକ ଓ ଉତ୍ତାପ ପ୍ରଦାନ କରି ଚେତନାର ଉନ୍ମେଷ ଘଟାଇଥାଏ । ସନ୍ଥ ପୃଥିବୀରେ ରହି ନିଜର ଆଚାର, ବିଚାର, ବ୍ୟବହାର ଓ ସୁକର୍ମ ରୂପକ ଈଶ୍ୱରୀୟ ପ୍ରକାଶକୁ ସମାଜକୁ ପ୍ରଦାନ କରିଥାଏ ।' ଏଇଭଳି ଜଣେ ସନ୍ଥ, ଜ୍ଞାନୀ, ଗୁଣୀ, ଶିଷ୍ଟାଚାର ତଥା ଭଦ୍ରତାର ମୂର୍ତ୍ତିମନ୍ତ ପ୍ରତୀକ ଭଦ୍ରକ ସ୍ୱୟଂଶାସିତ ମହାବିଦ୍ୟାଳୟର ସମାଜ ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ ପ୍ରାଧ୍ୟାପକ ଡକ୍ଟର ରବିନାରାୟଣ ମହାନ୍ତି ଯେ କି ନିଜର ମର୍ଯ୍ୟାଦା, ସମ୍ମାନ, ସ୍ୱାଭିମାନ ବଜାୟ ରଖି ରିସର୍ଚ୍ଚ କାର୍ଯ୍ୟରେ କଟକରୁ ଏଫଏମ୍ ୟୁନିଭରସିଟି, ବାଲେଶ୍ୱରକୁ ଗୋଟିଏ କାର୍‌ରେ ଜଣେ ଗବେଷକଙ୍କ ସହିତ ଯାଉଥିବା ସମୟରେ ଭଣ୍ଡାରୀପୋଖରୀଠାରେ ସଡ଼କ ଦୁର୍ଘଟଣାରେ ୦୭.୦୫.୨୦୧୩ରେ ପ୍ରାଣ ହରାଇଥିଲେ ।

ଜନ୍ମ ସମ୍ଭ୍ରାନ୍ତକରଣ ପରିବାରରେ । ଜନ୍ମ ସ୍ଥାନ ମାହାଙ୍ଗା ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ଓସଙ୍ଗ ଗ୍ରାମରେ ୧୯୫୩ ମସିହା ମେ ମାସ ୨୩ ତାରିଖରେ । ପିତା ନବକିଶୋର ମହାନ୍ତି ଓ ମାତା ହେମଲତା ଦେବୀ । ନିମ୍ନ ମଧ୍ୟବିତ୍ତ ପରିବାରର । ମାମୁଁ ଘର ସାଲେପୁର ନିକଟସ୍ଥ ଶୁକରପଡ଼ା । ଶିକ୍ଷାଗତ ଯୋଗ୍ୟତା ଏମ୍ଏ ପିଏଚ୍‌ଡି, ଡିଲିଟ୍ । ବାଲ୍ୟକାଳରେ ମାମୁଁ ଘର ସହିତ ନିବିଡ଼ ସମ୍ପର୍କ ଥିଲା । ଭଗବତୀ ବିଦ୍ୟାପୀଠ ଶୁକ୍ଳେଶ୍ୱରରୁ ମାଟ୍ରିକ କୃତିତ୍ୱର ସହ ପାସ କଲାପରେ ରେଭେନ୍‌ସା କଲେଜରୁ ଶିକ୍ଷାରେ ଅନର୍ସ ପାସ୍ କରିଥିଲେ । ତା'ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାରରୁ ଏମ୍ଏ (ସୋସିଓଲୋଜି) ପାସ୍ କରିଥିଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ସୁନାମଧନ୍ୟ ପ୍ରଫେସର (ସମାଜ ବିଜ୍ଞାନ ବିଭାଗ) ଡକ୍ଟର ସମରେନ୍ଦ୍ର ମହାନ୍ତିଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ପିଏଚ୍‌ଡି ଓ ଡିଲିଟ୍ ଲାଭ କରିଥିଲେ ବୋଲି ତାଙ୍କ ସାନଭାଇ ତଥା ଚାନ୍ଦବାଲି ମହାବିଦ୍ୟାଳୟର ସମାଜ ବିଜ୍ଞାନ ବିଭାଗର ବରିଷ୍ଠ ଅଧ୍ୟାପକ ସୁଧାଂଶୁ ଶେଖର ମହାନ୍ତିଙ୍କଠାରୁ ପ୍ରକାଶ ।

ପ୍ରଥମେ କେନ୍ଦ୍ରାପଡ଼ା କଲେଜରେ ସମାଜ ବିଜ୍ଞାନ ବିଭାଗରେ ଅଧ୍ୟାପକ ଭାବେ ଏନ.ପି.ବାହାଲିଆଙ୍କ ସହକର୍ମୀ ଭାବରେ କାର୍ଯ୍ୟ କଲେ । ତା'ପରେ ଭଦ୍ରକ କଲେଜ, ରେଭେନ୍ସା କଲେଜ, କଟକ, ଫକୀର ମୋହନ କଲେଜ, ବାଲେଶ୍ୱର ଓ ଶେଷରେ ଭଦ୍ରକ ସ୍ୱୟଂଶାସିତ ମହାବିଦ୍ୟାଳୟରେ ଅଧ୍ୟାପନା କରିଥିଲେ । ଜଣେ ଉତ୍ତମ ଅଧ୍ୟାପକ ଦକ୍ଷ ଗବେଷକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ସେ ଜ୍ଞାନରେ ଯେପରି ପରିପୂର୍ଣ୍ଣ ଅନେକ ସଦ୍‌ଗୁଣରେ ସେହିପରି ଆଦର୍ଶନୀୟ ଜଣେ ନିଆରା ମଣିଷ । ଆତ୍ମୀୟତାରେ ଭରପୂର, ଉଦାର, ସହୃଦୟ ଶ୍ରଦ୍ଧାଶୀଳ ବ୍ୟକ୍ତି । ସରଳ, ସହଜ, ଅଥଚ ସ୍ୱାଭିମାନୀ । ଶାଳପ୍ରାଂଶୁ ସୁଦୀର୍ଘ ଶରୀର, ଅଜାତ ଲମ୍ବିତ ବାହୁ, ସମୁଦ୍ର ଭଳି ବିଶାଳ ହୃଦୟ । ଭାଷା ସୁମଧୁର ଓ ଆକର୍ଷଣୀୟ । ସେ ଯେପରି ଛାତ୍ରବତ୍ସଳ ସେହିପରି ମଧ୍ୟ ସହକର୍ମୀମାନଙ୍କ ପ୍ରତି ସମ୍ବେଦନଶୀଳ । ତାଙ୍କ ମନରେ ଗର୍ବ ଅହଙ୍କାର ନଥିଲା । ସମସ୍ତଙ୍କ ନିକଟରେ ସେ ନମ୍ରତା ପ୍ରଦର୍ଶନ କରୁଥିଲେ । ସେ ଅଜାତଶତ୍ରୁ । କବୀରଙ୍କ ଭାଷାରେ –

'କବୀର ଖଡ଼ା ବଜାର ମେ
ମାଗେଁ ସବ୍‌କା ଖୈର
ନା କହୁଁ ସେ ଦୋସତି
ନା କହୁଁ ସେ ବୈର ।'

ସେ ଥିଲେ ଜଣେ ପ୍ରଜ୍ଞାପୁରୁଷ ତଥା ବହୁମୁଖୀ ପ୍ରତିଭା । ମାନବ ଜୀବନର ସାର୍ଥକତା ପାଇଁ ଓ ସମାଜର ଆଗାମୀ ପିଢ଼ିର ଭବିଷ୍ୟତ ପାଇଁ ନିଜର ଜୀବନ କାଳ ମଧ୍ୟରେ ସୃଷ୍ଟି କରି ଯାଇଛନ୍ତି ଅନେକ ଅନେକ ସଫଳ କୃତି । ସମାଜ ବିଜ୍ଞାନ ସମ୍ପର୍କିତ ଶତାଧିକ ଗବେଷଣା ମୂଳକ ନିବନ୍ଧ ଓ କିଛି ଉପାଦେୟ ପୁସ୍ତକ ଯାହା ତାଙ୍କ ସଫଳ ସୃଷ୍ଟିର ସମାହାର ଓ ସାଫଲ୍ୟତାର ଗୋଟିଏ ଗୋଟିଏ ମାଇଲଖୁଣ୍ଟ । କବୀରଙ୍କ ଭାଷାରେ

'ସାତ ସମୁନ୍ଦର ମସି କରେ
ଲିଖନୀ ନବନରାୟ
ସାରି ଧରତୀ କାଗଜ କରେ
ତୋ ଭି ହରିଗୁଣ ଲିଖା ନ ଯାୟ ।'

ଡକ୍ଟର ରବି ନାରାୟଣ ମହାନ୍ତି ଓଡ଼ିଶାର ଶିକ୍ଷା ଜଗତର ଜନ ମାନସରେ ଏକ ସ୍ମରଣୀୟ ବ୍ୟକ୍ତିତ୍ୱ । ବାଲ୍ୟ ଜୀବନ ଫୁଲ ଶେଜରେ ପ୍ରତିପାଳିତ ହୋଇ ନଥିଲା । ସାମାଜିକ ନାନା ବାଧା ପ୍ରତିବନ୍ଧକକୁ ଅତିକ୍ରମ କରି ଜଣେ ଯଶସ୍ୱୀ ଅଧ୍ୟାପକର ମର୍ଯ୍ୟାଦା ଲାଭ କରିବା ପାଇଁ ତାଙ୍କୁ କଠୋର ସାଧନା କରିବାକୁ ପଡ଼ିଥିଲା । ସାମାଜିକ ଓ ପାରିବାରିକ ଦୁର୍ବିପାକକୁ ଭ୍ରୂକ୍ଷେପ ନ କରି ସେ ଜୀବନର ଲକ୍ଷ୍ୟ ପଥରେ ପହଞ୍ଚି ଥିଲେ ବୋଲି ସେ ବ୍ୟକ୍ତିଗତ ଭାବେ ତାଙ୍କ ସହକର୍ମୀମାନଙ୍କ ପାଖରେ ପ୍ରକାଶ କରିଛନ୍ତି । ଅତ୍ୟନ୍ତ ସାଧାରଣ ଜୀବନରୁ ଆସି ଅବିରତ ସାଧନା ଓ ସୃଷ୍ଟି ମାଧ୍ୟମରେ ସେ ଅଣୁରୁ ମହୀୟାନ ହୋଇପାରି ଥିଲେ ।

"He started his life just as a nucleus and goes on gathering more and more electrons."

ଦାରିଦ୍ର୍ୟ ସତ୍ତ୍ୱେ ବି ସେ ସମାଜ ବିଜ୍ଞାନ ବିଭାଗରେ ଜଣେ ଶକ୍ତିଶାଳୀ ଲେଖକ ଭାବେ ଓଡ଼ିଶାରେ ପରିଗଣିତ ହେଲେ । ନଜରୁଲ୍‌ଙ୍କ ଭାଷାରେ–

'ହେ ଦାରିଦ୍ର୍ୟ ତୁମେ ମୋତେ କରିଛ ମହାନ
ତୁମେ ମୋତେ କରିଅଛ ଖ୍ରୀଷ୍ଟର ସମାନ ।'

ମହନୀୟତା ହେଉଛି – ରବିବାବୁ ଏକାଧାରରେ ଜଣେ ସୁଲେଖକ, ଗବେଷକ, ସୁବକ୍ତା, ଅନେକ ମଧ୍ୟରେ ଏକ ଓ ଏକକ ମଧ୍ୟରେ ଅନେକ ।

"He is first among equals and second to none."

ଈଶ୍ୱରଙ୍କ ସୃଜନୀ ତୂଳୀର ସ୍ପର୍ଶରେ ଏ ସୃଷ୍ଟି ପାଲଟିଯାଏ ମଧୁମୟ । ସୁଧାମୟ ଓ ସୌନ୍ଦର୍ଯ୍ୟର ରଂଗଶାଳା । ପୁଣି କେତେବେଳେ ବେଦନାବିଧୂର ବଂଶୀ ସ୍ୱନର ତାଳେ ତାଳେ ସୃଷ୍ଟିହୁଏ ଦୁଃଖ, ଶୋକ ଓ ବିଚ୍ଛେଦର ଛାୟା ଯାହା ମଣିଷ ଜୀବନକୁ କରିଦିଏ ରଂଗହୀନ, ରସହୀନ ଓ ସଂଗହୀନ । ସମସ୍ତେ ତାଙ୍କରି ହାତରେ ଗୋଟିଏ ଗୋଟିଏ ଖେଳନା । ଶ୍ରୀକୃଷ୍ଣଙ୍କ ଗୀତାବାଣୀ ପରି ମଣିଷ ଏ ସଂସାରକୁ ଯାତାୟାତ କରୁଛି । ନିଜର କର୍ମମୟ ଜୀବନ ପରିସମାପ୍ତି ପରେ ସମସ୍ତଙ୍କଠାରୁ ବିଦାୟ ନେଉଛି ।

'କର୍ମଣ୍ୟେ ବାଧିକାରସ୍ତେ
ମା ଫଳେଷୁ କଦାଚନ ।'

ଫଳକୁ ଆଶା ନରଖି କର୍ତ୍ତବ୍ୟ ସଂପାଦନ କରିବା ମନୁଷ୍ୟର ଧର୍ମ । ସେମିତି ଏକ ଉଦାହରଣ ଥିଲେ ପ୍ରାଧ୍ୟାପକ ଡକ୍ଟର ରବିନାରାୟଣ ମହାନ୍ତି । ଲେଖନୀ ଚାଳନା କଲାବେଳେ ସେ ସର୍ବଦା ସଂଯତ ଓ ମାର୍ଜିତ । ଡକ୍ଟର ମହାନ୍ତି ଏକ ବିବର୍ତ୍ତନଶୀଳ ମାନବାତ୍ମାର ମୁକ୍ତ ଅଭିଯାତ୍ରୀ । ଧର୍ମ, ସଂସ୍କୃତି, ଐତିହ୍ୟ ଓ ମୂଲ୍ୟବୋଧ ଇତ୍ୟାଦି ମହନୀୟ କାର୍ଯ୍ୟରେ ତାଙ୍କର ସକ୍ରିୟ ସହଯୋଗ ପରିଲକ୍ଷିତ ହୋଇଥାଏ । ଅବକ୍ଷୟମୟ ମରୁବାଲିରେ

ଝଟକୁଥିବା ସେ ଏକ ମୁକ୍ତା ଗର୍ଭା ଶାମୁକା । ସେ ନିଜର ମାଟି, ମା, ମାତୃଭୂମି ଓ ପରମ୍ପରାକୁ ଭଲ ପାଇବା ସଂଗେ ସଂଗେ ଏକ ନୂତନ ସତ୍ୟ, ନୂତନ ଚେତନା ଓ ନୂତନ ଅଭିବ୍ୟକ୍ତିର ସ୍ୱର ଓ ସ୍ୱାକ୍ଷରକୁ ନିଜ ଜୀବନରେ ବହନ କରି ତାଙ୍କର ବଳିଷ୍ଠ ଲେଖନୀ ମାଧ୍ୟମରେ ଆମ୍ଭମାନଙ୍କୁ ଦିଗ୍‌ଦର୍ଶନ ଦେଇ ଇହଲୀଳା ସମ୍ବରଣ କରିଛନ୍ତି । ତାଙ୍କର ଛାତ୍ରଛାତ୍ରୀ ସମ୍ପ୍ରତି ଭଦ୍ରକ ସ୍ୱୟଂଶାସିତ ମହାବିଦ୍ୟାଳୟର ସମାଜ ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ ଡକ୍ଟର ଅରୁନ୍ଧତୀ ମହାନ୍ତି, ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁର ସୁଯୋଗ୍ୟ ସଂପାଦକ ଡକ୍ଟର ଲେନିନ ମହାନ୍ତି, ଚାନ୍ଦବାଲି ମହାବିଦ୍ୟାଳୟର ସମାଜ ବିଜ୍ଞାନ ବିଭାଗର ବିଭାଗୀୟ ମୁଖ୍ୟ ଅଧ୍ୟାପକ ସୁଧାଂଶୁ ଶେଖର ମହାନ୍ତି, ସିମୁଳିଆ ମହାବିଦ୍ୟାଳୟର ସମାଜ ବିଜ୍ଞାନ ବିଭାଗର ଅଧ୍ୟାପକ ଅଶୋକ କବି ଓ ଅନେକଙ୍କ ଆଖିରୁ ଦୁଇଧାର ଲୁହ ଝରିପଡ଼େ ଓ ଉକ୍ତ ମହାତ୍ମାଙ୍କ ପ୍ରତି ଥିବା ସମ୍ମାନ ହେତୁ ହାତ ଦୁଇଟି ଆପେ ଆପେ ପ୍ରଣାମ ମୁଦ୍ରାକୁ ଚାଲିଆସେ । ସେହି ଲୁହ ପୁଣି ଉଜ୍ଜୀବିତ କରାଏ ଉତ୍କଳମଣି ଗୋପବନ୍ଧୁଙ୍କ ଲେଖନୀକୁ –

'ଚିତାନଳେ ନୁହଁ ଉଷ୍ମ ସେନେହ ବନ୍ଧନ
ଶ୍ମଶାନ ନୁହେଁ ଏ ଜୀବ ଶେଷ ପରିସୀମା
କେବେ କାହିଁ ହେବ ନିଶ୍ଚେ ଶୁଭ ସମ୍ମିଳନ
ପ୍ରକାଶିତ ପ୍ରାଣେ ପୂର୍ଣ୍ଣ ପୁଣ୍ୟ ମାଧୁରିମା ।'

ମିଲ୍‌ଟନଙ୍କ ଭାଷାରେ – 'good book is the precious life blood of a master spirit, emblamed and treasured up on purpose to a life beyond life.'

ତେଣୁ ଆମ ଲେଖକଙ୍କୁ ଆମେ ଚିହ୍ନିବା, ଚିହ୍ନିବା ପୁଣି ଡକ୍ଟର ରବି ନାରାୟଣ ମହାନ୍ତିଙ୍କ ସୃଷ୍ଟିକୁ । ପୁଣି ଇତିହାସକୁ କାଳି କଲମରେ ଲେଖିବା । ମହନୀୟତା ହେଉଛି ଯେଉଁ ସ୍ରଷ୍ଟାଙ୍କର ସୃଷ୍ଟି ପାଠକ ଜଗତକୁ ବିମୁଗ୍ଧ କରିଛି ତାଙ୍କୁ ଭୁଲିଗଲେ ଚଳିବ ନାହିଁ । ଆଜି ବି ଡକ୍ଟର ମହାନ୍ତିଙ୍କ ଲେଖା କାଳଜୟୀ ।

କୀର୍ତ୍ତି କୋଣାର୍କର ଦୀପ୍ତି ମୁଖଶାଳା ରବିବାବୁ ମୀନାର ତୁମ ଭାଜିବ ନାହିଁ । ତୁମ ପୟଃଧାରା ବ୍ୟକ୍ତିତ୍ୱ ଧାରା ରକ୍ତଜବା ହୋଇ ଝରିବ ନାହିଁ ।

କବିଙ୍କ ଭାଷାରେ –

'କେଉଁ ତାରକା ସେ ମଙ୍ଗଳ ଲଗ୍ନେ
ସଜାଇ ଅର୍ଘ୍ୟ ଥାଳି
ଆସିଥିଲା ଗାଇ ବନ୍ଦନା ତବ
ଆକାଶେ ପ୍ରଦୀପ ଜାଳି
ଉଇଁ ଆସିଥିଲ ରବିବାବୁ ତୁମେ
ପୂର୍ଣ୍ଣିମା ଜହ୍ନ ପରି
ଜୋଛନା କୁସୁମ ସ୍ନିଗ୍ଧ ପରାଗୁ
ସୁରଭି ପଡ଼ିଲା ଝରି ।'

ଆଧ୍ୟାତ୍ମିକ ବିଚାରରେ ପ୍ରତ୍ୟେକ ପ୍ରାଣୀର ପ୍ରକୃତ ସ୍ୱରୂପ ହେଉଛି ତାର ଆତ୍ମସତ୍ତା । ଏହାର ଜନ୍ମ ନାହିଁକି ମୃତ୍ୟୁ ନାହିଁ । ଭଗବତ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଭରା ଜ୍ଞାନ ପ୍ରଦାନରେ କହିଛନ୍ତି–

'ନ ଜାୟତେ ମ୍ରିୟତେ ବା କଦାଚିତ
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରୋଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ।'

ଜୀବାତ୍ମାର ଜନ୍ମ ବା ମୃତ୍ୟୁ ନାହିଁ । ଏହା କୌଣସି ସମୟରେ ଜନ୍ମ ଲାଭ କରି ଅସ୍ତିତ୍ୱ ବା ବୃଦ୍ଧିପ୍ରାପ୍ତି ହୁଅନ୍ତି ନାହିଁ । ଏହା ଅନାଦି, ଅରୂପ, କ୍ଷୟ ରହିତ ଓ ପରିଣାମ ହୀନ ଅଟନ୍ତି । ଶରୀର ବିନାଶରେ ଏହାଙ୍କର ମଧ୍ୟ କିଛି କ୍ଷତି ଘଟେ ନାହିଁ । ଏହି ବିଚାରରେ ଡକ୍ଟର ରବିନାରାୟଣ ମହାନ୍ତିଙ୍କ ମର ଶରୀର ମୃତ୍ୟୁବରଣ କରିଥିଲେ ମଧ୍ୟ ତାଙ୍କର ଆତ୍ମା ଜନ୍ମ ମୃତ୍ୟୁର ଉର୍ଦ୍ଧ୍ୱରେ । ଆମ୍ଭମାନଙ୍କୁ ଶ୍ରୀମଦ୍ ଭଗବତ ସୂଚାଇ ଦେଇଛି –

'ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ ।'

ଶେଷରେ ଜନ୍ମ ମରଣର ଚକ୍ର ଅବିରତ ଓ ଅବାରିତ ଗତିରେ ଏ ଧରା ପୃଷ୍ଠରେ ଘୂରି ଚାଲିଛି । ସେଥିରେ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି –

'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାନି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।'

କବି ଗିରିଜା କୁମାର ବଳିୟାର ସିଂହଙ୍କ ଭାଷାରେ –

'ଏ ଶଯ୍ୟା ହିଁ ଶେଷ ଶଯ୍ୟା ଶୋକାପ୍ଳୁତ ଶୀତର ଶୁଶ୍ରୁଷା
କଳଙ୍କକୁ କରାଇଛ କଜଳତ କଳା ବଦନରେ

ତୁଳସୀ ପତ୍ରରେ ତମେ ତାପସୀର ତିଳ ତିଳ ତୃଷ୍ଣା
ଚନ୍ଦ୍ର ମଲ୍ଲିକାର ଚିତ୍ର ଚିହ୍ନାଇବ ଚୁଆ ଚନ୍ଦନରେ ।'

ଡକ୍ଟର ରବି ନାରାୟଣ ମହାନ୍ତିଙ୍କର ସମସ୍ତ ଜୀବନ ଏକ ବତୀ ଖୁଣ୍ଟ ପରି । ସମୟକୁ ଜୟ କରିଛନ୍ତି ରବିବାବୁ କଥାରେ, କର୍ମରେ, କଳ୍ପନାରେ ଓ ବାସ୍ତବତାରେ । ତାଙ୍କର କର୍ମ ପାଇଁ ସେ ଅମର । ତାଙ୍କର ଆତ୍ମାର ସଦ୍‌ଗତି ହେଉ । ତାଙ୍କ ପତ୍ନୀ ଦୀପ୍ତିମୟୀ ମହାନ୍ତି, ପୁତ୍ର ଆଶୁତୋଷ ଓ ଦୁଇ ଝିଅ ମାମାଲି ଓ ରୂପାଲିଙ୍କର ପରବର୍ତ୍ତୀ ଜୀବନ ପୁଷ୍ପିତ ହେଉ । ସ୍ମୃତି କାଳଜୟୀ ହେଉ ।

'ନୈନଂ ଛିନ୍ଦନ୍ତି ଶାସ୍ତ୍ରାଣି
ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପଃ
ନ ଶୋଷୟତି ମାରୁତଃ ।'

ଅବସରପ୍ରାପ୍ତ ଅଧ୍ୟାପକ,
ଚାନ୍ଦବାଲି କଲେଜ, ଚାନ୍ଦବାଲି
ଜି–ଭଦ୍ରକ (ଓଡ଼ିଶା), ପିନ ୭୫୬୧୩୩



## ଡିସେମ୍ବର ୧୭ରୁ ସର୍‌ଗିଫୁଲ ମହୋତ୍ସବ

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଆନୁକୂଲ୍ୟରେ ଡିସେମ୍ବର ୧୭ ତାରିଖରୁ ୧୯ ତାରିଖ ପର୍ଯ୍ୟନ୍ତ ୟୁନିଟ୍–୧ସ୍ଥିତ ଆଦିବାସୀ ପଡିଆଠାରେ ବିଭାଗ ଅଧୀନସ୍ଥ ବିଦ୍ୟାଳୟର ଅନୁସୂଚିତ ଜାତି ଓ ଜନଜାତିର ଛାତ୍ରଛାତ୍ରୀମାନଙ୍କ ନିମନ୍ତେ 'ସର୍‌ଗି ଫୁଲ ମହୋତ୍ସବ– ୨୦୧୪' ଅନୁଷ୍ଠିତ ହେବ । ଏହି ମହୋତ୍ସବରେ ରାଜ୍ୟର ୩୦ଟି ଜିଲ୍ଲାର ବିଭାଗୀୟ ବିଦ୍ୟାଳୟଗୁଡିକର ୯୦୦ରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀ ଅଂଶଗ୍ରହଣ କରିବେ । ଏହି ଅବସରରେ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ରାଜ୍ୟସ୍ତରୀୟ ବିଜ୍ଞାନ ପ୍ରଦର୍ଶନୀ ଅନୁଷ୍ଠିତ ହେବ । ଏହା ସହିତ ବିଜ୍ଞାନ ଖେଳ, କ୍ଲେ ମଡେଲିଂ, ବେଷ୍ଟ ଅଫ୍ ୱେଷ୍ଟ, ପପେଟ୍ରି, ଫିଲ୍ମ ନିର୍ମାଣ, ଫଟୋଗ୍ରାଫି, ଫଟୋ ଏଡିଟିଂ, ଶିଶୁ ରିପୋର୍ଟିଂ ଆଦି ୧୯ଟି ବିଭିନ୍ନ ବିଷୟରେ ଆୟୋଜିତ କର୍ମଶାଳାରେ ଛାତ୍ରଛାତ୍ରୀମାନେ ଅଂଶଗ୍ରହଣ କରିବେ । ପୂର୍ବାହ୍ନରେ କର୍ମଶାଳା, ଅପରାହ୍ନରେ ତର୍କ, ବକ୍ତୃତା, ନୃତ୍ୟ ଓ ସଙ୍ଗୀତ ଆଦି ବିଭିନ୍ନ ପ୍ରତିଯୋଗିତା ଏବଂ ପ୍ରତ୍ୟହ ସନ୍ଧ୍ୟାରେ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷିତ ହେବ । 'ସର୍‌ଗି ଫୁଲ ମହୋତ୍ସବ– ୨୦୧୪'ର ମୁଖ୍ୟଅତିଥି ଭାବେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଯୋଗଦାନ କରିବାର କାର୍ଯ୍ୟକ୍ରମ ରହିଛି । ଅନ୍ୟତମ ଅତିଥି ଭାବେ ବିଭାଗୀୟ ମନ୍ତ୍ରୀ ଶ୍ରୀ ଲାଲ୍ ବିହାରୀ ହିମିରିକା, ବିଭାଗୀୟ ଅନୁସୂଚିତ ଜନଜାତି କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୁଦାମ ମାର୍ଣ୍ଡି, ବିଭାଗୀୟ ଅନୁସୂଚିତ ଜାତି କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ସ୍ନେହାଙ୍ଗିନୀ ଛୁରିଆ, ୟୁନିସେଫ୍ ଓଡ଼ିଶା ଶାଖାର ମୁଖ୍ୟ ସୁଶ୍ରୀ ୟୁମି ବେ ଏବଂ ବିଭାଗୀୟ ଶାସନ ସଚିବ ଶ୍ରୀ ସୁରେନ୍ଦ୍ର କୁମାର, ବିଭାଗୀୟ ନିର୍ଦ୍ଦେଶକ ଆର୍. ରଘୁପ୍ରସାଦ, ଏସ୍.ସି.ଏସ୍.ଟି.ଆର୍.ଟି.ଆଇର ନିର୍ଦ୍ଦେଶକ ତଥା ଏ.ଟି.ଏଲ୍.ସିର ସଦସ୍ୟ ସଚିବ ପ୍ରଫେସର ଡଃ ଏ.ବି. ଓତା ପ୍ରମୁଖ ଯୋଗଦାନ କରିବେ । ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଦ୍ୱାରା ପରିଚାଳିତ ବିଦ୍ୟାଳୟଗୁଡିକର ପ୍ରତିଭାବାନ ଛାତ୍ରଛାତ୍ରୀମାନଙ୍କୁ ଲୋକଲୋଚନକୁ ଆଣିବା ସହିତ ସେମାନଙ୍କୁ ଅଧିକ ଉତ୍ସାହିତ କରିବା ପାଇଁ ଏହି ରାଜ୍ୟସ୍ତରୀୟ 'ସର୍‌ଗିଫୁଲ' ମହୋତ୍ସବର ଆୟୋଜନ କରାଯାଇଛି ।

# କୋରାପୁଟ ଆଦିବାସୀଙ୍କ ନୃତ୍ୟ ଓ ଗୀତ

ରଂଜନ ପ୍ରଧାନ

କୋରାପୁଟକୁ ପ୍ରକୃତିର ରାଣୀ ବୋଲି କୁହାଯାଏ । ଓଡ଼ିଶାର ଭୂ-ସ୍ୱର୍ଗ ଭାବେ ପରିଚିତ କୋରାପୁଟର ମାଟି, ପାଣି, ପବନ ବେଶ୍ ନିଆରା । ଏହି କୋରାପୁଟରେ ରହିଛି ଓଡ଼ିଶାର ଉଚ୍ଚତମ ଗିରିଶୃଙ୍ଗ ଦେଓମାଳି ଓ ଦୀର୍ଘତମ ଜଳପ୍ରପାତ ଡୁଡୁମା । ପଟାଙ୍ଗୀର ତୁଷାରପାତ ଓ ମାଲ୍‌କାନଗିରି ଗ୍ରୀଷ୍ମପ୍ରବାହ ମଧ୍ୟ ଏଠାକାର ଅନ୍ୟ ଏକ ବିଶେଷତ୍ୱ । ଫଗୁଣ ମାସର କୋରାପୁଟିଆ ମହୁଲିଆ ପବନର ବାସ୍ନାରେ ଆଗନ୍ତୁକଟିଏ ବିଭୋର ହୋଇଉଠେ । କୋରାପୁଟର ମାଟି, ପାଣି, ପବନ ସହିତ ଏଠାକାର ଆଦିମ ଜନଜାତି, ଝୋଲା, ଡଙ୍ଗର, ଅଳସୀ କିଆରି, ଥଣ୍ଡା ଥଣ୍ଡା ପରିବେଶ ମନ୍ତ୍ରମୁଗ୍ଧ କରିଥାଏ । ଦିଗତମାମ୍ ହାଡ଼ଭଙ୍ଗା ଖଟଣି କରି ସଞ୍ଜକୁ ଗାଁକୁ ଫେରିଲେ ଆଦିବାସୀ ଯୁବକ, ଯୁବତୀମାନେ ନାଚ ଗୀତ କରି ଜୀବନକୁ ଉପଭୋଗ କରିଥାନ୍ତି । ସଞ୍ଜ ପରଠାରୁ ବିଳମ୍ବିତ ରାତି ପର୍ଯ୍ୟନ୍ତ କୋରାପୁଟ ପୁରପଲ୍ଲୀରେ ନୃତ୍ୟଗୀତର ମଧୁର ମୂର୍ଚ୍ଛନା ସମଗ୍ର ପରିବେଶକୁ ରଙ୍ଗୀନ କରିଦିଏ । କୋରାପୁଟ ଅଞ୍ଚଳର ଆଦିମ ଜନଜାତି ଓ ସେମାନେ ପରିବେଷଣ କରୁଥିବା ପାରଂପରିକ ନୃତ୍ୟ, ଗୀତ ସଂପର୍କରେ ଆମ ସମୟର ପ୍ରତିଷ୍ଠିତ ଜନଜାତି ଗବେଷକ ଓ ଗାଳ୍ପିକଙ୍କ ଏକ ବିଶେଷ ଆଲେଖ୍ୟ ।

ଧାଂଗଡ଼ା, ଧାଙ୍ଗିଡ଼ି ଦିନସାରା କଠିନ ପରିଶ୍ରମ କରି ଘରକୁ ଫେରିବା ପରେ ଆଦିବାସୀ ଗାଁରେ ସଞ୍ଜ ନଇଁ ଆସେ । ପରଜା, ଗାଦବା, କନ୍ଧ, ଗଣ୍ଡ, ବଣ୍ଡା, କୋୟା, ଧାଙ୍ଗଡ଼ା, ଧାଙ୍ଗିଡ଼ି ନାଚ କରିବାକୁ ଗାଁର ମଧ୍ୟ ସ୍ଥଳ ବେରଣମୁଣ୍ଡାରେ ହାଜର ହୋଇଯାଆନ୍ତି । ଧାଙ୍ଗଡ଼ାମାନେ ଗୀତର ରିଆଜ୍ କରୁଥିବାବେଳେ ଧାଙ୍ଗିଡ଼ିମାନେ ମୁହଁରେ ପାଉଡ଼ର, ପାଦରେ ଅଳତା, କୁଙ୍କୁମ ଲଗେଇ ସଜ ହେଉଥାନ୍ତି । ପରେ ପରେ ଆବୃତ୍ତି ହୁଏ ଆଦିବାସୀ ଲଳନାର ପାଦର ଛନ୍ଦ କବିତା । ଧାଙ୍ଗଡ଼ାମାନେ ଟଇଁଲା, ତିଡ଼ିବିଡ଼ି, ଟାମକ୍ ସଜାଡ଼ିବାରେ ବ୍ୟସ୍ତ ଥାଆନ୍ତି । ଡୋକରା ଡୋକରୀ ମହୁଲି ପିଇ ବେରଣ ସ୍ଥଳରେ ନାଚଗୀତ ଉପଭୋଗ କରିବାକୁ ଅପେକ୍ଷା କରି ବସନ୍ତି । ସଞ୍ଜ ବୁଡୁ ବୁଡୁ ଗାଁ ଦାଣ୍ଡରେ ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ନାଚ, ଗୀତର ଆସର ଜମେଇ ଦିଅନ୍ତି । ନୃତ୍ୟର ତାଳେ ତାଳେ ଆଦିବାସୀ ଗାଁଗୁଡ଼ିକ ପ୍ରକଂପିତ ହୋଇଉଠେ । ପ୍ରକୃତରେ ଏ ଦୃଶ୍ୟ ଓ ମୁହୂର୍ତ୍ତ ସବୁ ବିରଳ । ଆଜିର ଏ ବିଚିତ୍ର ଦୁନିଆରେ କେତେଜଣ ତଥାକଥିତ ବୁଦ୍ଧିଜୀବୀ ଏସବୁର ଧାର ଧାରନ୍ତି ? ସେୟାର ମାର୍କେଟ୍, ଟଙ୍କା, ଗାଡ଼ି, ବଙ୍ଗଳା, ଧନ ପଛରେ ଧାଇଁ ଧାଇଁ ଆଜିର ମଣିଷ ନିଜେ ଏକ ମେସିନ୍ ପାଲଟିଛି । ଆଜି ମଣିଷ ପାଖରେ ସମୟ ନାହିଁ କୁଆଁର ପୁନେଇଁର ଗୋଲ୍ ଜହ୍ନକୁ ଦେଖିବାକୁ । ସନ୍ଧ୍ୟାରେ ସୂର୍ଯ୍ୟବୁଡ଼ି ଯାଉଥିବାର ଦୃଶ୍ୟ ହେଉକି ଚାଳରେ ବସିଥିବା ଘରଚଟିଆ, ପାଚିଲା ଧାନ କ୍ଷେତ, ଧାନ ଖଳାରେ ମଡ଼ା ଯାଇଥିବା ସୁନ୍ଦର ସୁନ୍ଦର ଧାନଗଦା, ଧାନ ସାଉଁଟା, ମାଛଧରା ଦୃଶ୍ୟ ଦେଖିବାକୁ କେତେ ଲୋକଙ୍କ ପାଖରେ ସମୟ ଅଛି ? ସବୁବେଳେ କଂପ୍ୟୁଟର ସାମ୍ନାରେ ବସି, ଫାଇଲ୍ ଭିତରେ ବୁଡ଼ି ରହି, ଗେମ୍ ଖେଳି ହେଉ କି ଅଜଣା ବାନ୍ଧବୀ ସହ ଇଣ୍ଟରନେଟ୍ ଚାଟିଂ କରି ସମୟତକ ସାରି ଦିଅନ୍ତି ଆଜିର ଆଇ.ଟି (କଂପ୍ୟୁଟର) ମଣିଷମାନେ । ମୁଁ ଆଇ.ଟିକୁ ବିରୋଧ କରୁନି । ତା'ବିନା ମଣିଷର ବିକାଶ ଅସମ୍ଭବ । ତେବେ ସୂର୍ଯ୍ୟ ବୁଡ଼ିଯାଉଥିବା ଦୃଶ୍ୟ ଦେଖିବା କ'ଣ ପାପ ? ଆଜି ମଣିଷ ପାଖରେ ସମୟ ନାହିଁ ପ୍ରକୃତିର ଏହିସବୁ ଅଫୁରନ୍ତ ସୌନ୍ଦର୍ଯ୍ୟକୁ ଉପଭୋଗ କରିବାକୁ । ସତରେ କେତେ ଅସହାୟ ଆଜିର ସଭ୍ୟ ମଣିଷ । ସେ ଦୃଷ୍ଟିରୁ ଦେଖିବାକୁ ଗଲେ ବଣ ଜଙ୍ଗଲରେ ରହୁଥିବା ବନବାସୀମାନେ ବେଶ୍ ସୁଖୀ ଓ ଭାଗ୍ୟବାନ୍ । ବଣ, ଜଙ୍ଗଲରେ ଏହି ବନବାସୀଙ୍କ ସହ କାମ କଲାବେଳେ ମୁଁ ଅନେକବାର ଏମାନଙ୍କ ଭଳି ବନବାସୀ ହୋଇଯିବାକୁ ଇଚ୍ଛା କରିଛି । ପ୍ରକୃତରେ ଏ ଜନ୍ମରେ ତାହା କ'ଣ

ସମ୍ଭବ ? ଯଦି ହୋଇପାରେ ଆରଜନ୍ମରେ । ନାଚ ହେଉଛି ପାଦର ଛନ୍ଦ କବିତା । ପାଦକୁ ନେଇ ସ୍ୱପ୍ନ ଦେଖିବା ମଣିଷ ହିଁ ଭଲ ନାଚିପାରେ । ମାତ୍ର ବିନା ପାଦରେ କ'ଣ ଜଣେ ଚମତ୍କାର ନୃତ୍ୟ କରିପାରେ ନାହିଁକି ? ନାଚିବା ପାଇଁ କେବଳ ଭଲ ପାଦ ଦୁଇଟି ଜରୁରୀ ନୁହେଁ, ଟିକିଏ ବିଭୋରପଣ ଓ ଖୋଲା ହୃଦୟ ଦରକାର । ନୃତ୍ୟ ହେଉଛି ଶରୀର ରୂପକ ଅର୍କେଷ୍ଟ୍ରାର ମଧୁମୟ ସଂଗୀତ ଆଉ ଆତ୍ମାର ଗୋପନ ପରିଭାଷା । ପୁଣି ମଧ୍ୟ ନୃତ୍ୟ ହେଉଛି, ଶରୀରକୁ ଆତ୍ମା ସହ ସଂଯୋଗ କରୁଥିବା ହାଓଡ଼ା ବ୍ରିଜ୍ । ସେହିଭଳି ସଂଗୀତ ହେଉଛି ସଫା ଜହ୍ନରାତି, ପ୍ରେମ ଓ ପ୍ରଣୟର ଶାକାହାର ଓ ଭଂଗା ହୃଦୟକୁ ଯୋଡ଼ିବାର ଅବ୍ୟର୍ଥ ଔଷଧ । ନୃତ୍ୟ ଓ ସଙ୍ଗୀତ ବିନା ମଣିଷର ଜୀବନ ଅଧୁରା କହିଲେ ଠିକ୍ ହେବ । ତେବେ ମଣିଷ କାହିଁକି ନାଚେ ? କାହିଁକି ଗୀତ ଗାଏ ? ଏହାକୁ ନେଇ ମନରେ ସ୍ୱାଭାବିକ ପ୍ରଶ୍ନଟିଏ ଉଠେ ।

ଅନେକ ଲୋକ ବିନା କିଛି କାରଣରେ ଓ ବିନା କିଛି ଉଦ୍ଦେଶ୍ୟରେ କୌତୁକବଶତଃ ନାଚିଥାନ୍ତି ଓ ଗୁଣୁଗୁଣେଇ ଗୀତ ବୋଲିଥାନ୍ତି । ଆଉ କିଛି ଅନ୍ୟମାନଙ୍କୁ ଖୁସି କରିବା ଉଦ୍ଦେଶ୍ୟରେ ବେସୁରା ଗୀତ ଗାଇ ମାହାଳିଆ ନାଚିଥାନ୍ତି । ପ୍ରଥମ ପ୍ରେମର ପହିଲି ସ୍ପର୍ଶରେ ପ୍ରେମିକଟିଏ ଆତ୍ମହରା ହୋଇ ଗୁଣୁଗୁଣେଇ ଗୀତ ଗାଇବା ସାଙ୍ଗକୁ ଦୁଇ ଘେରା ନାଚିଯାଏ । ପ୍ରେମ ପୀଡ଼ିତା ତରୁଣୀଟି ମନରେ ମଧ୍ୟ ସମାନୁଭୂତି ସୃଷ୍ଟି ହୋଇଥାଏ । ତା' ଛଡା ତଳର ରଙ୍ଗମଞ୍ଚରେ ନିୟମିତ ନାଚ, ଗୀତର ଆସର ଜମୁଥାଏ । କହିବାକୁ ଗଲେ, ନାଚ ଓ ଗୀତ ପ୍ରେମ ଜୀବନକୁ ଅଧିକ ରଙ୍ଗୀନ ଓ ସୁଖମୟ କରିଥାଏ । ନିଜର ସଫଳତାରେ ଆତ୍ମବିଭୋର ହୋଇ କିଛି ଲୋକ ନାଚି ପକାନ୍ତି । ଚାଷୀଟିଏ ତା' କ୍ଷେତରେ ହୋଇଥିବା ଭଲ ଫସଲକୁ ଦେଖି ଆନନ୍ଦରେ ନାଚିଉଠେ । ବିଭାଘର, ବ୍ରତଘର ଭଳି ସାମାଜିକ ଉତ୍ସବମାନଙ୍କରେ ଖୁସି ମନେଇବାକୁ ଯାଇ ଆଉ କିଛି ଲୋକ ସୁରାପାନ ପୂର୍ବକ ନାଚିନାଚି ଥକି ପଡ଼ନ୍ତି । ଉତ୍ସବ, ପର୍ବପର୍ବାଣିମାନଙ୍କରେ ସାଧାରଣତଃ ନାଚଗୀତର ଆୟୋଜନ ହୋଇଥାଏ । ପ୍ରାଚୀନ ସଭ୍ୟତାମାନଙ୍କର ଇତିହାସକୁ ଲକ୍ଷ୍ୟ କଲେ ଜଣାଯାଏ, ଦେବଦେବୀଙ୍କ ନିକଟରେ ନୃତ୍ୟ ପରିବେଷଣ କରିବା ତତ୍କାଳୀନ ସାମାଜିକ ବ୍ୟବସ୍ଥାର ଏକ ଗୁରୁତ୍ୱପୂର୍ଣ୍ଣ ପରଂପରା ରହିଥିଲା । ପ୍ରାଚୀନ ଗ୍ରୀକ୍ ସଭ୍ୟତାରେ ମନ୍ଦିର ପରିସରରେ ଉଭୟ ପୁରୁଷ ଓ ମହିଳା ପୂଜକମାନେ ଦେବଦେବୀଙ୍କ ସମ୍ମୁଖରେ ନୃତ୍ୟଗୀତ ପରିବେଷଣ କରୁଥିଲେ । ନୃତ୍ୟ ଓ ଗୀତ ଆଦିମ କାଳରୁ ମଣିଷ ସଭ୍ୟତା ସହ ଯୋଡ଼ି ହୋଇ ରହିଛି । ପ୍ରାଚୀନ ଗ୍ରୀକ୍ ସମାଜରେ , ଚାଷୀମାନେ ଫସଲ ଅମଳ (ବିଶେଷକରି ଅଙ୍ଗୁର) କରିବା ପରେ ଦେବତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଚାଷୀ ଓ ଗ୍ରାମବାସୀମାନେ ପ୍ରଚୁର ମଦ ପାନ କରି ନୃତ୍ୟର ଆସର ଜମେଇଥାନ୍ତି । ସେମାନେ ଗ୍ରୀସ୍‌ର ପ୍ରସିଦ୍ଧ ଦେବତା 'ଡିଓନିସସ୍'(ଔଞ୍ଛ ଝଜ ଘଛଛ୍ଝ) ଙ୍କ ସମ୍ମାନାର୍ଥେ ଅଙ୍ଗୁର ମଦ ପିଇ ନାଚି ନାଚି ବେଦମ୍ ହୋଇପଡ଼ନ୍ତି । ଭାରତରେ ମଧ୍ୟ ଅନେକ ହିନ୍ଦୁ ମନ୍ଦିରରେ ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ନୃତ୍ୟ ଓ ଗୀତର ପରଂପରା ରହି ଆସିଛି । ଭାରତ ପ୍ରସିଦ୍ଧ 'ଭାରତ ନାଟ୍ୟମ୍' ଓଡ଼ିଶାର 'ମାହାରୀ ନୃତ୍ୟ' ଏହାର ଗୋଟିଏ ଗୋଟିଏ ଉଦାହରଣ । ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ ବେଳକୁ ଗ୍ରୀସ୍‌ରେ ଆରଂଭ ହୋଇଥିବା ଅଲଂପିଆ କ୍ରୀଡ଼ାର ଉଦ୍‌ଘାଟନୀ ଉତ୍ସବରେ ନୃତ୍ୟ ଓ ଗୀତର ପରିବେଷଣ କରାଯାଉଥିଲା । ଆଉ ସେହି ନୃତ୍ୟ ପଂରପରା ଗତ ବେଜିଂ ଅଲଂପିକ୍ କ୍ରୀଡ଼ା ଉତ୍ସବରେ ମଧ୍ୟ ବଳବତ୍ତର ରହିଥିବା ଦେଖିବାକୁ ମିଳିଥିଲା । ପ୍ରାଚୀନ ଗ୍ରୀକ୍ ସଭ୍ୟତାରେ (ଖ୍ରୀଷ୍ଟପୂର୍ବ ୧୪୦୦ଶତାବ୍ଦୀ) ଚିତ୍ରକଳା ଓ ପତର ଖୋଦେଇ କାରୁକାର୍ଯ୍ୟଗୁଡିକ ବିଶେଷ କରି ନୃତ୍ୟର ବିଭିନ୍ନ ଭଙ୍ଗୀ, ମୁଦ୍ରାକୁ ନେଇ ସମୃଦ୍ଧ ଥିଲା । ନୃତ୍ୟ ଓ  ଗୀତ ସେତେବେଳେ ସମାଜରେ ପ୍ରଧାନ ଅଙ୍ଗ ଥିବା କଥା ପ୍ରାଚୀନ ଗ୍ରୀକ୍ ସଭ୍ୟତାରୁ ମିଳିଥିବା ଅନେକ Greek Paintingsରୁ ଜଣାପଡ଼େ । ନୃତ୍ୟର ବିଭିନ୍ନ ମୁଦ୍ରାରେ ଗ୍ରୀକ୍ ରମଣୀଙ୍କୁ ନେଇ ପ୍ରାଚୀନ ଗ୍ରୀକ୍‌ର ଏହି Paintings ଗୁଡ଼ିକ ଆଜି ବି ବେଶ୍ ଆକର୍ଷଣୀୟ ମନେହୁଏ । ପ୍ରାଚୀନ କାଳରେ ନାଚ ହିଁ ଜୀବନକୁ ଉପଭୋଗ କରିବାର ଅନ୍ୟ ଏକ ମାଧ୍ୟମ ଥିଲା କହିଲେ ଠିକ୍ ହେବ । ସର୍ବସାଧାରଣରେ ନୃତ୍ୟ ଗୀତ ପରିବେଷଣ କରି ସାଧାରଣ ଜନତାଙ୍କୁ ଆନନ୍ଦ ପ୍ରଦାନ କରିବା ଥିଲା ତତ୍କାଳୀନ ୟୁରୋପିୟ ସମାଜର ଏକ ପ୍ରମୁଖ ବ୍ୟବସ୍ଥା । ଏହି ବ୍ୟବସ୍ଥାରୁ ହିଁ European Balletର ସୃଷ୍ଟି ହୋଇଛି ।

ନୃତ୍ୟ ଓ ଗୀତକୁ ବାଦ୍ ଦେଇ ଆଦିବାସୀଙ୍କ ସଂପର୍କରେ କିଛି ବି ଚିନ୍ତା କରାଯାଇ ନପାରେ । ନୃତ୍ୟ ଓ ଗୀତ ଆଦିବାସୀ ସଂସ୍କୃତିର ଏକ ପ୍ରମୁଖ ଅଙ୍ଗ । ବଣ ଜଂଗଲରେ ବସବାସ କରୁଥିବା ଆଦିମ ଆଦିବାସୀମାନେ ପାରଂପାରିକ ଉତ୍ସବରେ ନାଚ, ଗୀତର ଆସର ଜମେଇଥାନ୍ତି । ପାରଂପାରିକ ପାନୀୟ ଲନ୍ଦା ହେଉ କି ପେଣ୍ଡମ୍, ମହୁଲି ଟିକେ ମାରିଦେଇ ଆଦିବାସୀମାନେ ନିଜର ଦୁନିଆକୁ ରଙ୍ଗମୟ କରି ଦିଅନ୍ତି । ନାଚି ନାଚି ଥକି ପଡ଼ନ୍ତି । ସଂଜ ନଇଁଗଲା ବେଳକୁ ଆଦିବାସୀ ଗାଁମାନଙ୍କରୁ ଢୁଂଗୁଢୁଂଗା, ଟଇଁଲା ଓ ମାଦଳରୁ ମଧୁର ଶବ୍ଦର ମୂର୍ଚ୍ଛନା ପବନରେ ଭାସିଆସେ । ଏହା ସହିତ ଭୂତପ୍ରେତଙ୍କୁ ଭଗେଇବା ପାଇଁ ହେଉ କି ଦେବତାଙ୍କୁ ଆବାହନ କରିବା ପାଇଁ ଆଦିବାସୀମାନେ ନୃତ୍ୟ ଓ ଗୀତର ଆସର

ଜମେଇଥାନ୍ତି । କାଳିସୀମାନଙ୍କ ଦେହରେ ଦେବଦେବୀଙ୍କ ଆତ୍ମା ସବାର ହେଲେ ସେମାନେ ମୁଣ୍ଡ ବାଳକୁ ମୁକୁଳା କରି ନାଚିଥାନ୍ତି। ଆଦିବାସୀ ଗାଁରେ ପର୍ବପର୍ବାଣି ସମୟରେ ଗୁରୁମାଇ ଦେହରେ ଦେବତା ଚେଗିଲେ ସେ ମଧ୍ୟ ଉଦଣ୍ଡ ନାଚ ନାଚିଥାଏ ।

ବୁଝିବାକୁ ଗଲେ ନାଚ, ଗୀତ ଓ ସୁରା, ଏ ତିନିହେଁ କେହି କାହାରିକୁ ଛାଡ଼ି ରହି ପାରିବେ ନାହିଁ । ପୁରାଣ କାଳରୁ ଆରମ୍ଭ କରି ଆଜିର ସଭ୍ୟ ସମାଜ ପର୍ଯ୍ୟନ୍ତ ସବୁଠି ଏମାନଙ୍କର ଆବଶ୍ୟକତା ଅନୁଭବ କରିହୁଏ । ସେ ହୋଇପାରେ ସ୍ୱର୍ଗର ରାଜା ଇନ୍ଦ୍ରଙ୍କ ରାଜସଭାରେ ନୃତ୍ୟରତା ଉର୍ବଶୀ, ରମ୍ଭା ଓ ମେନକାଙ୍କ କାହାଣୀ କିମ୍ବା ବର୍ତ୍ତମାନର ତାରକା ହୋଟେଲମାନଙ୍କରେ ବାର୍ ଗାର୍ଲଙ୍କ ଦ୍ୱାରା ପରିବେଷିତ ବାର୍ ଡ୍ୟାନ୍ସ । ଏମିତିକି ବିନା ମହୁଲି, ସଲପ, ଲନ୍ଦା, କି ପେଣ୍ଡମ୍‌ରେ ଆଦିବାସୀଙ୍କ ନାଚ, ଗୀତ କ'ଣ ଜମିପାରେ ? ଏହା ବିତର୍କ ସାପେକ୍ଷ ।

ନୃତ୍ୟ ଓ ଗୀତ ଆଦିବାସୀଙ୍କ ଜୀବନଚର୍ଯ୍ୟାର ଏକ ପ୍ରମୁଖ ଅଂଶ । ପ୍ରକୃତପକ୍ଷେ କହିବାକୁ ଗଲେ ପୃଥିବୀ ପୃଷ୍ଠରେ ଜୀବଜଗତ ସୃଷ୍ଟି ହେଲା ବେଳକୁ ନୃତ୍ୟ ଓ ଗୀତ ସଂପର୍କରେ ମଣିଷର କିଛି ବି ଜ୍ଞାନ ଧାରଣ ସୃଷ୍ଟି ହୋଇ ନଥିଲା । ମାନବ ଜାତିର କ୍ରମବିକାଶ ସାଥୀରେ ନୃତ୍ୟ, ଗୀତର ବିକାଶ ଘଟିଛି ବୋଲି ଅନୁମାନ କରାଯାଏ। ତେବେ ଏହି ନୃତ୍ୟ ଓ ଗୀତ ବିଶେଷ କରି ବଣଜଙ୍ଗଲରେ ବସବାସ କରୁଥିବା ଆଦିମ ଅଧିବାସୀମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି ବୋଲି କିଛି କିଛି ଗବେଷକ ମତ ଦିଅନ୍ତି । ଆଜିର ସଭ୍ୟ ମଣିଷ ଯେଉଁ ନୃତ୍ୟ ଗୀତକୁ ନେଇ ଗର୍ବ କରୁଛି ଏବଂ ଚର୍ଚ୍ଚା କରୁଛି, ପ୍ରକୃତରେ ତାହାର ସୃଷ୍ଟିକର୍ତ୍ତା ହେଉଛନ୍ତି ବଣ ଜଙ୍ଗଲରେ ବାସ କରୁଥିବା ଏଇ ଆଦିମ ଅଧିବାସୀ ।

ଯେତେବେଳେ ସଭ୍ୟତାର ବିକାଶ ଘଟି ନଥିଲା, ଶିଳ୍ପ ବିପ୍ଳବ, ସବୁଜ ବିପ୍ଳବ, ଶ୍ୱେତ ବିପ୍ଳବ, ନୀଳ ବିପ୍ଳବ, ଓ ସର୍ବୋପରି ବଜାର, ପୁଞ୍ଜି, ଷ୍ଟକ୍ ମାର୍କେଟ୍, ସଫଟଓୟାର୍, ଇଣ୍ଟରନେଟ୍, ବ୍ୟାଙ୍କିଙ୍ଗ୍, ଏସବୁ କୌଣସି ଥିଓରିର ମଧ୍ୟ ଅଭ୍ୟୁଦୟ ଘଟି ନଥିଲା, ସେତେବେଳେ ମଣିଷର ଜୀବନ ଶୈଳୀ କିଭଳି ଥିଲା ? ଏହି ସ୍ୱାଭାବିକ ପ୍ରଶ୍ନଟିଏ ମଣିଷ ମନକୁ ଆନ୍ଦୋଳିତ କରେ । ମଣିଷ ବଣ ଜଙ୍ଗଲରେ ରହୁଥିଲା ଏବଂ ତା'ପାଇଁ ସବୁବେଳେ ହିଂସ୍ରଜନ୍ତୁଙ୍କ ଆକ୍ରମଣର ମୁକାବିଲା କରିବାକୁ ସକ୍ଷମ ନ ହେବାକୁ କ୍ରମେ ସେ ସଂଘବଦ୍ଧ ହେଲା । ବିଶେଷକରି ରାତ୍ରୀକାଳ ହିଁ ଜଙ୍ଗଲରେ ବସବାସ କରୁଥିବା ମଣିଷ ପାଇଁ ସବୁଠୁ ବିପଦପୂର୍ଣ୍ଣ ଥିଲା । ହିଂସ୍ରଜନ୍ତୁଙ୍କ ମୁକାବିଲା କରିବା ପାଇଁ ମଣିଷ ବସତି ସ୍ଥାପନ କଲା । କ୍ରମେ ପୁରପଲ୍ଲୀ ସୃଷ୍ଟି ହେଲା । ବନ୍ୟଜନ୍ତୁଙ୍କୁ ଘଉଡ଼ାଇବା ପାଇଁ ମଣିଷ ନିଆଁ ଜାଳିଲା । ଏହା ସହିତ ହିଂସ୍ରଜନ୍ତୁଙ୍କୁ ଘଉଡ଼ାଇବା ପାଇଁ ମଣିଷ ବିଭିନ୍ନ ଶବ୍ଦର ସାହାରା ନେଲା । ତେବେ ଅଧିକ ସମୟ ପାଟିତୁଣ୍ଡ କରି କରି ମଣିଷ କ୍ରମେ ଥକି ପଡ଼ିଲା । ଏହା ପରେ ମଣିଷ ନାନା ପ୍ରକାର ଶବ୍ଦ ସୃଷ୍ଟି କରିବା ଉଦ୍ଦେଶ୍ୟରେ ବାଦ୍ୟଯନ୍ତ୍ରର ଉଦ୍ଭାବନ କଲା । ନିଜକୁ ରାତି ସମୟରେ ସଜାଗ ରଖିବା ପାଇଁ ବାଦ୍ୟଯନ୍ତ୍ରରୁ ବିଭିନ୍ନ ପ୍ରକାର ଶବ୍ଦ ସୃଷ୍ଟି କରିବା ସହିତ ନିଜେ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରି ନାଚିଲା । କ୍ରମେ ମଣିଷ ବିଭିନ୍ନ ଜଙ୍ଗଲୀ ଜୀବଜନ୍ତୁର ଭାବ ଭଙ୍ଗୀକୁ ନେଇ ନାଚ ଆରମ୍ଭ କରିଦେଲା । ଏହି ପ୍ରକାର ନୃତ୍ୟ ବେଶ୍ ଆନନ୍ଦଦାୟକ ମନେ ହେଲା । କ୍ରମେ ଏଥିରୁ ବିଭିନ୍ନ ପ୍ରକାର ପଶୁନୃତ୍ୟର ବିକାଶ ଘଟିଲା । ଏବେ ବି ଅବିଭକ୍ତ କୋରାପୁଟ ଜିଲ୍ଲାର ବାଘ ନାଚ, ମିରିଗନାଚ, ହଂସ ନାଚ, ମୟୂରନାଚ, ଶୁଆନାଚ, ଘୋଡ଼ାନାଚ ପ୍ରମୁଖ ପଶୁପକ୍ଷୀ ପର୍ଯ୍ୟବସିତ ନୃତ୍ୟ ଏ ଅଞ୍ଚଳରେ ବେଶ୍ ଲୋକପ୍ରିୟ ହୋଇ ରହିଛି ।

ନୃତ୍ୟ ଓ ଗୀତକୁ ବାଦ୍ ଦେଇ ଆଦିବାସୀଙ୍କ ସଂପର୍କରେ କିଛି ବି ଚିନ୍ତା କରାଯାଇ ପାରେ । ଶିକ୍ଷା କ୍ଷେତ୍ରରେ ବହୁ ପଛରେ ଥାଇ ମଧ୍ୟ ଆଦିବାସୀମାନେ ନୃତ୍ୟ ଓ ଗୀତ ମାଧ୍ୟମରେ ଜୀବନକୁ ଉପଭୋଗ କରିଥାନ୍ତି । ନୃତ୍ୟ ଓ ଗୀତ ମାଧ୍ୟମରେ ଆଦିବାସୀଙ୍କ ଗୋଷ୍ଠୀ ଜୀବନ (community life) ବେଶ୍ ସମୃଦ୍ଧ ହୋଇଥାଏ। ବିଭାଘର ହେଉକି ଦଶାଘର, ଆଦିବାସୀ ପରିବାରରେ ଶିଶୁଟିଏ ଜନ୍ମ ନେଲେ କିମ୍ବା ମଣିଷର ମୃତ୍ୟୁ ହେଲେ, ସେହିପରି ଚାଷ କାମ, ଧାନ ରୁଆ, ଉପଡ଼ା, ଶିକାର, ଫସଲ ଅମଳ, ଭୋଜିଭାତ, ପର୍ବପର୍ବାଣିମାନଙ୍କରେ ନୃତ୍ୟର ନିଶ୍ଚିତ ଆବଶ୍ୟକତା ଥାଏ । ନୃତ୍ୟ ବିନା ଆଦିବାସୀମାନେ ଏ ସବୁକୁ କ'ଣ ଭଲ ଭାବେ ଉପଭୋଗ କରିପାରିବେ ? ଲୋକ ଗୀତ (FOLK SONG), ଲୋକ ନୃତ୍ୟ (folk dance) ଓ ଲୋକ ସଂଗୀତ (folk music) ହେଉଛି ଆଦିବାସୀ ସଂସ୍କୃତିର ଗୋଟିଏ ଗୋଟିଏ ପ୍ରମୁଖ ଅଂଗ ।

ନୃତ୍ୟ ଓ ଗୀତ ବିନା ବନବାସୀ ଆଦିମ ଅଧିବାସୀଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନ ଅସଂପୂର୍ଣ୍ଣ ।

ଆଦିବାସୀଙ୍କ ନୃତ୍ୟକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ–

୧. ଧାର୍ମିକ ଅନୁଷ୍ଠାନରେ ପରିବେଷିତ ନୃତ୍ୟ

୨. ମନୋରଂଜନଧର୍ମୀ ନୃତ୍ୟ

ପରଜାଙ୍କ ଚଇତ୍‌ପରବ, ବେଣ୍ଟ ଯାତ୍ରା, ପୁଷ୍ ପୁନେଇଁ ହେଉ କି କୋୟାମାନଙ୍କ ବିଜା ପାଣ୍ଡୁମ୍ (ଚଇତ୍ ପରବ) କିମ୍ବା

କର୍ତ୍ତା ପାଣ୍ଡୁମ (ନୂଆଖିଆ ପରବ) ଆଦି ନୃତ୍ୟ ଧାର୍ମିକ ଅନୁଷ୍ଠାନରେ ପରିବେଶିତ ନୃତ୍ୟ ଶ୍ରେଣୀର ଅନ୍ତର୍ଭୁକ୍ତ । ଏହି ନାଚ ସବୁ ପର୍ବପର୍ବାଣି ସମୟରେ ପରିବେଷଣ କରାଯାଇଥାଏ । ପରବ୍ ସମୟରେ ମୁଖ୍ୟତଃ ଶିରା ଯାତ୍ରା, ଗୁରୁମାଇ, ବେଜୁଣୀ ନାଚର ଆୟୋଜନ କରାଯାଇଥାଏ । ନବରଙ୍ଗପୁର ଓ କୋରାପୁଟ ଅଞ୍ଚଳର ଆଦିବାସୀ ଗାଁମାନଙ୍କରେ ପ୍ରତି ଦୁଇ ତିନି ବର୍ଷରେ ଥରେ ବାଲି ଯାତ୍ରା ପାଳନ କରାଯାଇଥାଏ । ବାଲିଯାତ୍ରା ଏଠାକାର ଅଧିବାସୀଙ୍କର ଏକ ପ୍ରମୁଖ ଧାର୍ମିକ ଉତ୍ସବ । ଏଥିରେ କାଳିସୀମାନେ ମୁଣ୍ଡ ବାଳକୁ ମୁକୁଳା କରି ବାଦ୍ୟର ତାଳେ ତାଳେ ନାଚିଥାନ୍ତି । ଏହାକୁ କାଳିସୀ ନାଚ କୁହାଯାଏ। କାଳିସୀ ନାଚ ମାଧ୍ୟମରେ ଦେବଦେବୀଙ୍କୁ ଆବାହନ କରାଯାଏ ।

ଅପରପକ୍ଷେ, ନୃତ୍ୟର ଗଠନ (formation) ଦୃଷ୍ଟିରୁ ଅବିଭକ୍ତ କୋରାପୁଟ ଅଞ୍ଚଳର ଆଦିବାସୀ ନୃତ୍ୟକୁ ତିନି ଭାଗରେ ବିଭକ୍ତ କରାଯାଇପାରେ ।

କ) ଦଳଗତ ନୃତ୍ୟ (group dance)
ଖ) ଯୋଡ଼ି ନୃତ୍ୟ (couple dance)
ଗ) ଏକକ ନୃତ୍ୟ (single dance)

ଅବିଭକ୍ତ କୋରାପୁଟ ଅଞ୍ଚଳର ପ୍ରସିଦ୍ଧ ଆଦିବାସୀ ନୃତ୍ୟ 'ଢେମ୍‌ସା' ହେଉଛି ଏକ ଦଳଗତ ନୃତ୍ୟ । ସେହିପରି କୋୟା ନୃତ୍ୟ, ବଣ୍ଡା ନୃତ୍ୟ, ଗଣ୍ଡମାନଙ୍କର 'ମାଟି ମନ୍ଦର ନୃତ୍ୟ' ଡଙ୍ଗରିଆ କନ୍ଧ ନୃତ୍ୟ ଆଦି ବିଭିନ୍ନ ଦଳଗତ ନୃତ୍ୟର ଉଦାହରଣ । ଶବର–ଶବରୁଣୀ ନୃତ୍ୟ, ହଂସ ନୃତ୍ୟ, ନବରଙ୍ଗପୁର ଖଣିଙ୍ଗି ନୃତ୍ୟ, ଘୁଡୁକି ନୃତ୍ୟ ଭଳି କିଛି ନୃତ୍ୟ 'ଯୋଡ଼ି ନୃତ୍ୟ' ପର୍ଯ୍ୟାୟର । ଏହି ଧରଣର ନାଚରେ ଦୁଇ ଜଣ ପ୍ରମୁଖ ସଦସ୍ୟ ମଞ୍ଚ ଉପରେ କିମ୍ବା ଖୋଲା ପଡ଼ିଆରେ ନୃତ୍ୟ ପରିବେଷଣ କରିଥାନ୍ତି । ତେବେ ଏକକ ନୃତ୍ୟ କୋରାପୁଟ ଅଞ୍ଚଳର ଆଦିବାସୀ ସମାଜରେ କେଉଁଠି ଦୃଶ୍ୟ ହୋଇ ନଥାଏ । କାରଣ ପୂର୍ବରୁ କୁହାଯାଇଛି, ଆଦିବାସୀଙ୍କର ନୃତ୍ୟ ମୁଖ୍ୟତଃ ଗୋଷ୍ଠୀଗତ ନୃତ୍ୟ ପର୍ଯ୍ୟାୟର । ନୃତ୍ୟ ମାଧ୍ୟମ୍ୟରେ ହିଁ ସେମାନଙ୍କର ଗୋଷ୍ଠୀ ଜୀବନ ସମୃଦ୍ଧ ହୋଇଥାଏ ।

ଅବିଭକ୍ତ କୋରାପୁଟ ଅଞ୍ଚଳର ଆଦିବାସୀଙ୍କର ଆଉ କିଛି ନୃତ୍ୟ ବର୍ଷର ବିଭିନ୍ନ ସମୟରେ ପରିବେଷଣ କରିଥାନ୍ତି । ନିଜ ଅଞ୍ଚଳକୁ କେହି ରାଜନେତା କିମ୍ବା ରାଜ ପାରିଷଦ ଭ୍ରମଣରେ ଆସିଲେ, ତାଙ୍କ ସମ୍ମାନାର୍ଥେ ଆଦିବାସୀମାନେ ନୃତ୍ୟ, ଗୀତର ଆୟୋଜନ କରିଥାନ୍ତି । ବିଭିନ୍ନ ପ୍ରକାର ଯାନିଯାତରା, ନବରଙ୍ଗପୁରର ଲୋକ ମହୋତ୍ସବ ମଣ୍ଡେଇ ହେଉ କି କୋରାପୁଟର ପରବ ମାଲକାନଗିରିର ମାଲ୍ୟବନ୍ତ ମହୋତ୍ସବ ଏ ସବୁ ସମୟରେ ଆଦିବାସୀମାନେ ସେମାନଙ୍କ ନୃତ୍ୟ ଗୀତର ଆୟୋଜନ କରିଥାନ୍ତି। ଏହା ଛଡ଼ା ବିଭାଘର, ଦଶାଘର, ଶିଶୁ ଜନ୍ମ ଉତ୍ସବମାନଙ୍କରେ ଆଦିବାସୀମାନେ ସେମାନଙ୍କର ପାରମ୍ପରିକ ନୃତ୍ୟ ପରିବେଷଣ କରିଥାନ୍ତି ।

ଏ ସବୁ ନୃତ୍ୟ ପର୍ଯ୍ୟାୟ ବ୍ୟତୀତ ଅବିଭକ୍ତ କୋରାପୁଟ ଅଞ୍ଚଳର ଆଦିବାସୀମାନଙ୍କ ନୃତ୍ୟଗୁଡ଼ିକୁ ନିମ୍ନୋକ୍ତ ଶ୍ରେଣୀରେ ବିଭକ୍ତ କରାଯାଇପାରେ–

୧. ଶିକାର ନୃତ୍ୟ (war & hunt dance)

୨. ପର୍ବଭିତ୍ତିକ ନୃତ୍ୟ (sacred dance)

୩. ସାମାଜିକ ନୃତ୍ୟ (social dance)

୪. ବିବାହ ନୃତ୍ୟ (marriage dance)

୫. ମୃତ୍ୟୁକାଳୀନ ନୃତ୍ୟ (funeral dance)

୬. ପଶୁପକ୍ଷୀ ନୃତ୍ୟ (animal &bird dance)

୭. ଋତୁଭିତ୍ତିକ ନୃତ୍ୟ (seasonal dance)

ଆଦିବାସୀମାନଙ୍କର ପାରଂପରିକ ନୃତ୍ୟ ଓ ଅନ୍ୟାନ୍ୟ ସାଧାରଣ ବର୍ଗଙ୍କ ନୃତ୍ୟ ମଧ୍ୟରେ ଅନେକ କିଛି ସାମଞ୍ଜସ୍ୟ ଲକ୍ଷ୍ୟ କରିହୁଏ । ସାଧାରଣ ନୃତ୍ୟରେ ତାଳ (beats) ଓ ଲୟ (tempo) ମଧ୍ୟରେ ଯେପରି ଉତ୍ତମ ସଂଯୋଗ ରହିଥାଏ, ସେମିତି ଆଦିବାସୀଙ୍କ ନାଚରେ ତାଳ ଓ ଲୟ ମଧ୍ୟରେ ଉତ୍ତମ ବୁଝାମଣା ଲକ୍ଷ୍ୟ କରାଯାଏ । ଆଦିବାସୀଙ୍କ ନାଚରେ ପଦପାତ (steps) ଓ ପଦଚାଳନା (footwork) ମଧ୍ୟରେ ଉତ୍ତମ ସଂପର୍କ ରକ୍ଷା କରାଯାଇଥାଏ । ଯଦିଓ ଆଦିବାସୀମାନେ ଅଶିକ୍ଷିତ ଓ ପାରମ୍ପରିକ ତଥାପି ସେମାନଙ୍କ ନୃତ୍ୟ ବିଜ୍ଞାନସମ୍ମତ । ଓଡ଼ିଶୀ ନୃତ୍ୟରେ ନର୍ତ୍ତକ, ନର୍ତ୍ତକୀମାନେ ଘୁଙ୍ଗୁର ବ୍ୟବହାର କରୁଥିବାବେଳେ ଆଦିବାସୀଙ୍କ ଅଧିକାଂଶ ନୃତ୍ୟରେ ଘୁଙ୍ଗୁରର ବ୍ୟବହାର ହୋଇଥାଏ । ଅନ୍ୟ ଆଧୁନିକ ନୃତ୍ୟ ଭଳି ଆଦିବାସୀମାନେ ମଧ୍ୟ ବିଭିନ୍ନ ମୁଦ୍ରା (mudra)ରେ ନୃତ୍ୟ ପରିବେଷଣ କରିଥାନ୍ତି ।

ଅବିଭକ୍ତ କୋରାପୁଟ ଅଞ୍ଚଳର ଆଦିବାସୀମାନଙ୍କର ସଂସ୍କୃତି, ପରଂପରା, ରୀତିନୀତି, ପାରଂପରିକ ନୃତ୍ୟ, ଲୋକ ଗୀତ ସଂଗ୍ରହ, ହଜି ଯାଉଥିବା କିଛି ବିରଳ ନୃତ୍ୟ, ସେମାନଙ୍କର ବାଦ୍ୟଯନ୍ତ୍ର ସଂପର୍କରେ ଏକ ପ୍ରାଞ୍ଜଳ ଅଧ୍ୟୟନ ଏହି ଗ୍ରନ୍ଥରେ ସମ୍ଭବ ହୋଇଛି। ଆଦିବାସୀ ସମାଜରେ ବିଭିନ୍ନ ପ୍ରକାର ଗୀତ ରହିଛି ।

ବିଭାଘର ଗୀତ, ଦଶାଘର ଗୀତ, ଶିଶୁ ଜନ୍ମ ଗୀତ, ବର୍ଷା ଗୀତ, ପୁଷ୍ ପୁନେଇଁ ଗୀତ, ପାନିଆକୁନିଆ ଗୀତ, ଛେର୍‌ଛେରା ଗୀତ, ଚଇତ ପରବ ଗୀତ, ଶିକାର ଗୀତ, ଧାନ ରୁଆ ଗୀତ ଆଦି ବିଭିନ୍ନ ପ୍ରକାର ପାରଂପରିକ ଗୀତ ଆଦିବାସୀ ସମାଜରେ ଦେଖିବାକୁ ମିଳିଥାଏ । ଏହି ଗ୍ରନ୍ଥରେ ବିଭିନ୍ନ ପ୍ରକାର ନୃତ୍ୟ ସମ୍ବଳିତ କିଛି ସୁନିର୍ବାଚିତ ଗୀତ ସଂଗ୍ରହ ସମ୍ଭବ ହୋଇଛି । ସବୁଠୁ ବଡ଼ ଦୁଃଖର କଥା ହେଉଛି ଆଦିବାସୀଙ୍କ ଏହି ବିରଳ ନୃତ୍ୟ ଓ ଗୀତ ଆଜି ବିଲୁପ୍ତ ହୋଇଯିବାକୁ ବସିଛି । ପାରମ୍ପରିକ ଲୋକନୃତ୍ୟ, ଗୀତ ଭଳି ଏହି ଧରଣର ଅନୁଭବ୍ୟ ଐତିହ୍ୟ (intangible heritage)ର ସଂରକ୍ଷଣ ଏବେ ଅନିବାର୍ଯ୍ୟ ହୋଇପଡ଼ୁଛି । ଦିନ ଥିଲା ଓଡ଼ିଆ ସାଧବମାନେ ବାଣିଜ୍ୟ କରିବାକୁ ସାତ ଦରିଆ ପାରି ହୋଇ ଯାଉଥିଲେ କିମ୍ବା ଓଡ଼ିଆ ଗ୍ରାମ୍ୟ ସଂସ୍କୃତିର ପ୍ରାଚୀନତମ ସ୍ୱାକ୍ଷର ବହନ କରି ଆସୁଥିଲା ଗାଁ ଭାଗବତ ଟୁଙ୍ଗୀ । ହେଲେ ଆଜି ସେସବୁ ଅତୀତ ଓ ଇତିହାସ । ଏହି ଧରଣର ଐତିହ୍ୟକୁ ଆମେ ଅନୁଭବ୍ୟ ଐତିହ୍ୟ ବୋଲି କହୁଛୁ । ସେମିତି କୋରାପୁଟ ଆଦିବାସୀଙ୍କ ଢ଼େମ୍‌ସା ନାଚ କି କନ୍ଧ ପରଜାଙ୍କ ଶିକାର ନାଚ ହେଉ କି ଦୁରୁଆଙ୍କ ଏଡୁଏଡୁ ନାଚ, ଗଣ୍ଡଙ୍କ ମାଟି ମନ୍ଦର ନାଚ ଦିନେ ଏଭଳି ଅତୀତ ହେବାକୁ ଆଉ କମ୍ ଦିନ ବାକି ଅଛି । କୋରାପୁଟିଆ ଆଦିବାସୀଙ୍କର ଏହି ଲୋକ ନାଚଗୁଡ଼ିକ ଅତୀତ ହୋଇଯିବା ପୂର୍ବରୁ ଏହାର ଉପଯୁକ୍ତ ସଂରକ୍ଷଣର ଆବଶ୍ୟକତା ରହିଛି । ଏ ଦିଗରେ ମୋର ଏଇ ସାମାନ୍ୟ ଅବଦାନକୁ ଈଶ୍ୱରଙ୍କ ଆଶୀର୍ବାଦ ବୋଲି ମନେ କରାଯାଇପାରେ । ତେବେ ସରକାରୀ ସ୍ତରରେ ହେଉକି ବିଶ୍ୱସ୍ତରୀୟ ସ୍ୱେଚ୍ଛାସେବୀ ସଂଗଠନ ମାଧ୍ୟମରେ ଏହି ଆଦିବାସୀ ଲୋକନୃତ୍ୟଗୁଡ଼ିକୁ ସଂରକ୍ଷଣ କରାଯାଇ ରଖାଯିବା ବର୍ତ୍ତମାନ ସମୟ ପାଇଁ ଅତ୍ୟନ୍ତ ଜରୁରୀ ବୋଲି ମନେ କରାଯାଏ ।

କୋରାପୁଟର ମାଟି, ପାଣି, ପବନର ଏକ ନିଆରା ବାସ୍ନା ଥାଏ । କେବେକେବେ ଡଙ୍ଗର, ଝୋଲା, ଅଳସି କିଆରି ଆଡ଼େ ବୁଲି ଆସିଲେ ହୃଦୟ ଚହଲିଯାଏ । ପ୍ରେମିକଟିଏ ଆନମନା ହୋଇଯାଏ । କୋରାପୁଟର ଆଦିବ ଜନଜାତି, ଡଙ୍ଗର, ଜନା, ଜନ୍ଦିରି, ଝରଣା, ପୁଷ୍ ପୁନେଇଁର ହାଡଥରା ଶୀତ, ଚଇତ୍ ପରବର ମହୁଲିଆ ପବନ ଆଦି ମଣିଷକୁ ବାନ୍ଧି ରଖିବାରେ ବେଶ ସହାୟକ ହୋଇଥାଏ ।

### କୋରାପୁଟ ଅଞ୍ଚଳର କିଛି ଆଦିବାସୀ ନୃତ୍ୟ

'ଜେମ୍‌ସା' ହେଉଛି ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀମାନେ ପରିବେଷଣ କରୁଥିବା ଏକ ପ୍ରମୁଖ ଲୋକପ୍ରିୟ ଲୋକନୃତ୍ୟ । ପରଜା ଓ ଭତରାମାନେ ମୁଖ୍ୟତଃ ଏହି ନାଚ ପରିବେଷଣ କରିଥାନ୍ତି । ଏହା ଏକ ଗୋଷ୍ଠୀ ବା ଦଳଗତ ନୃତ୍ୟ (group dance) ।

ଢ଼େମ୍‌ସା ନାଚରେ ମୁଖ୍ୟତଃ ଧୁମ୍‌ସା, ବଡ଼ ନାଗରା ବା ଟାମକ, ଢୋଲ, ଡାପ, ମହୁରୀ ପ୍ରମୁଖ ବାଦ୍ୟଯନ୍ତ୍ର ବ୍ୟବହାର କରାଯାଇଥାଏ । ଧୁମ୍‌ସା ବ୍ୟତୀତ ଏହି ନାଚରେ ମହୁରୀ, ଡିଡିବିଡି, ଝୁମୁକା ଭଳି ଅନ୍ୟ ବାଦ୍ୟଯନ୍ତ୍ର ବ୍ୟବହାର କରାଯାଇଥାଏ । ଢ଼େମ୍‌ସା ନାଚରେ ଧାଙ୍ଗଡ଼ା, ଧାଙ୍ଗିଡ଼ୀମାନେ ଏକା ପ୍ରକାର ପୋଷାକ ପିନ୍ଧନ୍ତି। ଧାଡ଼ି ଧାଡ଼ି ହୋଇ ଧାଙ୍ଗିଡୀମାନେ ନୃତ୍ୟ ପରିବେଷଣ କରିଥାନ୍ତି ।

ଏଡୁଏଡୁ ନାଚ ଦୁରୁଆମାନେ ପରିବେଷଣ କରୁଥିବା ଅନ୍ୟ ଏକ ପ୍ରମୁଖ ନୃତ୍ୟ । ମୁଖ୍ୟତଃ କୋରାପୁଟ ଜିଲ୍ଲାର କୋଟପାଡ଼, ବୈପାରୀଗୁଡ଼ା ଓ କୁନ୍ଦୁରା ବ୍ଲକ୍‌ରେ ବସବାସ କରନ୍ତି । ଏମାନେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଦେଖିବାକୁ ମିଳନ୍ତି । ପୁଷ୍ ପୁନେଇଁ ହେଉଛି ଦୁରୁଆମାନଙ୍କର ପ୍ରମୁଖ ପର୍ବ । ପାଖାପାଖି ପନ୍ଦର ଦିନ ଧରି ଦୁରୁଆ ଗାଁମାନଙ୍କରେ ପୁଷ୍ ପୁନେଇଁ ଅବସରରେ ନାଚଗୀତ ଚାଲିଥାଏ । ପୁଷ୍ ପୁନେଇଁ ବେଳେ ଦୁରୁଆ ଯୁବତୀ ଓ ବୃଦ୍ଧାମାନେ ଏଡୁଏଡୁ ଗୀତ ଗାଇ ଗାଁ ଗାଁ ବୁଲି ଚାଉଳ, ଟଙ୍କା ମାଗିଥାନ୍ତି । ଯୁବତୀମାନେ ଏଡୁଏଡୁ ଗୀତ ଗାଇବା ସହ ନାଚିଥାନ୍ତି ।

ଏଡୁ ଏଡୁ ନାଚରେ କେବଳ ଦୁରୁଆ ଝିଅମାନେ ଦୁଇ ଭାଗ ହୋଇ ନୃତ୍ୟ ଓ ଗୀତ ପରିବେଷଣ କରିଥାନ୍ତି । ଗୋଟିଏ ଦଳରେ କିଶୋରୀ ଓ ଯୁବତୀ ଥିଲାବେଳେ ଆଉ ଗୋଟିଏ ଦଳରେ ବୟସ୍କା ବୃଦ୍ଧାମାନେ ଥାଆନ୍ତି । ଏହି ଦୁଇ ଦଳ ଦୁରୁଆ ମହିଳାମାନଙ୍କୁ ନେଇ ଗାଁରେ ଏଡୁ ଏଡୁ ନାଚ ଗୀତର ଆସର ଜମିଥାଏ । ଏଥିରେ ପୁରୁଷମାନଙ୍କର ଭୂମିକା ନଥିଲେ ମଧ୍ୟ ସେମାନେ ଦର୍ଶକ ସାଜିଥାନ୍ତି ।

ପୁଷ ପୁନେଇଁର ପନ୍ଦର ଦିନ ପୂର୍ବରୁ ଦୁରୁଆ ଯୁବତୀମାନେ ଗାଁ ଗାଁ ବୁଲି ଚାଉଳ, ପନିପରିବା ମାଗଣ କରିଥାନ୍ତି । ସେମାନେ ପ୍ରତିଦିନ ସକାଳୁ ବାହାରିଯାଇ ସନ୍ଧ୍ୟାରେ ନିଜ ଗାଁକୁ ଫେରନ୍ତି । ଗାଁକୁ ଫେରିଲା ପରେ ବୃଦ୍ଧାମାନେ ସେମାନଙ୍କଠାରୁ ସମସ୍ତ ପ୍ରକାର ଅନୁଭୂତି ଜାଣିବାକୁ ଚାହାନ୍ତି । ଦୁରୁଆ ବୃଦ୍ଧାମାନେ ଦୁଇହାତର ମଣିବନ୍ଧରେ ପିନ୍ଧିଥିବା ଧାତୁ ନିର୍ମିତ ଖଡୁକୁ ଖଡୁ ସହ ପିଟି ଶବ୍ଦ ସୃଷ୍ଟି କରନ୍ତି ଏବଂ ଏହି ଶବ୍ଦ ମାଧ୍ୟମରେ ସେମାନେ ଯୁବତୀମାନଙ୍କୁ ନାନା ପ୍ରଶ୍ନ କରନ୍ତି । ଯୁବତୀମାନେ ଗୀତ ମାଧ୍ୟମରେ ସେମାନଙ୍କର ଅନୁଭୂତି ବଖାଣନ୍ତି ।

ଡଙ୍ଗରିଆ କନ୍ଧଙ୍କ ଧାଙ୍ଗଡ଼ା–ଧାଙ୍ଗିଡୀ ନୃତ୍ୟ କୋରାପୁଟ ଅଞ୍ଚଳର ଅନ୍ୟ ଏକ ପ୍ରସିଦ୍ଧ ନୃତ୍ୟ । ଡଙ୍ଗରିଆ କନ୍ଧମାନେ ରାୟଗଡ଼ା ଓ କଳାହାଣ୍ଡି ଜିଲ୍ଲା ମଧ୍ୟରେ ଅବସ୍ଥିତ ନିୟମଗିରି ପାର୍ବତ୍ୟାଞ୍ଚଳରେ ବସବାସ କରନ୍ତି । ରାୟଗଡ଼ା ଜିଲ୍ଲାର ବିଷମ କଟକ, କଲ୍ୟାଣସିଂହପୁର, ମୁନିଗୁଡ଼ା ପ୍ରମୁଖ ବ୍ଲକ୍‌ରେ ଡଙ୍ଗରିଆ କନ୍ଧମାନେ ଦେଖିବାକୁ ମିଳନ୍ତି । ଡଙ୍ଗରିଆ କନ୍ଧମାନେ କୃଷି ଉପରେ ନିର୍ଭର କରି ସେମାନଙ୍କର ଜୀବିକା ନିର୍ବାହ କରିଥାନ୍ତି । ଦିନସାରା ଖଟିଖଟି ଘରକୁ ଫେରିଲା ପରେ କନ୍ଧ ଯୁବକ ଯୁବତୀମାନେ ମନ ଫୁର୍ତ୍ତି କରିବାକୁ ନୃତ୍ୟ, ଗୀତର ଆସର ଜମେଇ ଦେଇଥାନ୍ତି । ଏହା ବ୍ୟତୀତ ସେମାନେ ବିଭିନ୍ନ ପର୍ବପର୍ବାଣି ସମୟରେ ଧାଙ୍ଗଡ଼ା–ଧାଙ୍ଗିଡୀ ନୃତ୍ୟ ପରିବେଷଣ କରିଥାନ୍ତି ।

ଧାଙ୍ଗଡା ଧାଙ୍ଗିଡୀ ନାଚ ବେଳେ ଡଙ୍ଗରିଆ ଯୁବକ, ଯୁବତୀମାନଙ୍କ ମଧ୍ୟରେ ପ୍ରେମର ଆଦାନ ପ୍ରଦାନ ହୋଇଥାଏ ଏବଂ ସେମାନେ ନିଜ ନିଜର ଜୀବନ ସାଥୀ ବାଛିବା ପାଇଁ ଏଠାରେ ଏକ ସୁଯୋଗ ମିଳିଥାଏ । ବିଶେଷ କରି ଏହା ଏକ ତର୍କମୂଳକ ସଂଗୀତ ଓ ନୃତ୍ୟ କାର୍ଯ୍ୟକ୍ରମ । ଡଙ୍ଗରିଆ କନ୍ଧ ନାଚରେ କେତେ ଜଣ ଯୁବକ ଓ ଯୁବତୀ କଳାକାର ରହିବେ ସେମିତି କିଛି ଧରାବନ୍ଧା ନିୟମ ନାହିଁ । ତେବେ ଏଥିରେ ପାଖାପାଖି ୧୫ରୁ ୨୦ ଜଣ ସଦସ୍ୟ ଅଂଶ ଗ୍ରହଣ କରିଥାନ୍ତି । ଯୁବକ ଓ ଯୁବତୀମାନେ ଦୁଇ ଦଳ ହୋଇ ନୃତ୍ୟ ପରିବେଷଣ କରନ୍ତି । ଡଙ୍ଗରିଆ କନ୍ଧ ଯୁବକମାନେ ଡାପୁ ଓ ନିଶାଣ ବଜେଇବା ସହ ଗୀତ ବୋଲି ନାଚନ୍ତି ।

ଗଣ୍ଡମାନଙ୍କ 'ମାଟି ମନ୍ଦର ନୃତ୍ୟ' ଏହା ଏକ ପାରମ୍ପରିକ ଦଳଗତ ନୃତ୍ୟ । ନବରଙ୍ଗପୁର ଜିଲ୍ଲାର ରାଇଘର ଓ ଚନ୍ଦାହାଣ୍ଡି ବ୍ଲକ୍‌ରେ ବସବାସ କରୁଥିବା ଗଣ୍ଡ ସଂପ୍ରଦାୟର ଆଦିବାସୀମାନେ ଏହି ନୃତ୍ୟ ପରିବେଷଣ କରିଥାନ୍ତି । ଉଭୟ ଗଣ୍ଡ ଯୁବକ ଓ ଯୁବତୀମାନେ ଏହି ନୃତ୍ୟରେ ଅଂଶ ଗ୍ରହଣ କରିଥାନ୍ତି । ସୋନ୍‌ପୁର ଓ ଉଦୟପୁର, ରାଇଘର ବ୍ଲକ୍ ଅନ୍ତର୍ଗତ ଦୁଇଟି ଗଣ୍ଡ ଗାଁ । ମାଟି ମନ୍ଦର ନୃତ୍ୟ ପାଇଁ ଏହି ଦୁଇ ଗାଁର କଳାକାରମାନେ ଉଭୟ ରାଜ୍ୟ ଓ ରାଜ୍ୟ ବାହାରେ ବେଶ୍ ନାଁ କମେଇ ସାରିଲେଣି ।

'ମାଟିର ମନ୍ଦର୍' ନାଚ ମୁଖ୍ୟତଃ ବିଭିନ୍ନ ଯାନିଯାତରା ସମୟରେ ଅନୁଷ୍ଠିତ ହୋଇଥାଏ । ଧାଙ୍ଗଡ଼ାମାନେ କଳା କିମ୍ବା ନୀଳ ରଙ୍ଗର ସାର୍ଟ ସାଙ୍ଗକୁ ଅଣ୍ଟା ତଳକୁ ନାଲି ରଙ୍ଗର ପଲିଷ୍ଟର କପଡ଼ାରେ ଏକ ଘେରା ପିନ୍ଧିଥାନ୍ତି । ମୁଣ୍ଡରେ ଏକ ପଗଡ଼ି ବାନ୍ଧନ୍ତି । ସେଥିରେ ମୟୂର ପୁଚ୍ଛ ଓ ଅନ୍ୟାନ୍ୟ ପକ୍ଷୀର ପର ଫୁଲ ଲାଗିଥାଏ । ବେକରେ ଗୋଟିଏ ଲେଖାଏଁ ପ୍ଲାଷ୍ଟିକ୍ ଫୁଲର ହାର ପିନ୍ଧିଥାନ୍ତି । ପାଦରେ ଘୁଙ୍ଗୁର ପିନ୍ଧିଥାନ୍ତି । ଅଣ୍ଟାରେ କଉଡ଼ିରେ ନିର୍ମିତ ଏକ ପଟି ପିନ୍ଧିଥାନ୍ତି । ଏହି ଅଣ୍ଟା ପଟିକୁ ଗଣ୍ଡ ଭାଷାରେ 'ପେଟା' କହନ୍ତି । ନାଚ ମୁଖିଆ ଓ ସହଯୋଗୀ ଦୁହେଁ ମୁଣ୍ଡରେ କାଠରେ ନିର୍ମିତ ଶିଙ୍ଗ ମୁକୁଟ ପିନ୍ଧିଥାନ୍ତି, ସେଥିରେ କଉଡ଼ି ଏବଂ ବିଭିନ୍ନ ଜରି କାମ ହୋଇଥାଏ । ଏହା ବ୍ୟତୀତ ମୁଖିଆ ଏକ ସୁସୁକାରୀ ଧରିଥାଏ । ସୁସୁକାରୀକୁ ଗଣ୍ଡ ଭାଷାରେ 'ପିଡ଼ିପିଡ଼ି' କହନ୍ତି । ଏହି ପିଡ଼ିପିଡ଼ି ସହାୟତାରେ ମୁଖିଆ ନାଚକୁ ବିଭିନ୍ନ ତାଳରେ ଆଗେଇ ନେଇ ଚାଲେ । ଧାଙ୍ଗିଡ଼ୀମାନେ ଧଳା ରଙ୍ଗର ଶାଢ଼ୀ ପିନ୍ଧନ୍ତି ଏବଂ ଶାଢ଼ୀର ଧଡ଼ି ଓ ପଣତ ଲାଲ୍ ରଙ୍ଗର ହୋଇଥାଏ । ଧାଙ୍ଗିଡ଼ୀମାନେ ପାଦରେ ଘୁଙ୍ଗୁର ପିନ୍ଧିବା ସହ ଅନ୍ୟାନ୍ୟ ପ୍ରସାଧନ ସାମଗ୍ରୀର ବ୍ୟବହାର କରିଥାନ୍ତି । ପୁରୁଷମାନେ ଦେହରେ ରଙ୍ଗ ବୋଳି ହୋଇଥିବାବେଳେ ଧାଙ୍ଗିଡ଼ୀମାନେ ମୁହଁରେ ପାଉଡ଼ର, କ୍ରିମ୍ ବୋଳି ହୋଇଥାନ୍ତି । ଧାଙ୍ଗିଡ଼ିମାନେ ଗୀତ ବୋଲିବା ସାଙ୍ଗକୁ ନାଚନ୍ତି । ଧାଙ୍ଗଡ଼ାମାନେ ବାଜା ବଜେଇ ଧାଙ୍ଗିଡ଼ୀମାନଙ୍କ ସହ ପାଲି ଧରି ନାଚନ୍ତି । ଏହା ଏକ ପ୍ରେମ ପ୍ରଣୟଭିତ୍ତିକ ନାଚ । ଏଥିରେ ପ୍ରଥମେ ଯୁବତୀମାନେ ଗୀତ ବୋଲି ଯୁବକଙ୍କୁ ପ୍ରେମ ନିବେଦନ କରିଥାନ୍ତି ।

କୋରାପୁଟ ଅଞ୍ଚଳର ଆଦିବାସୀଙ୍କ'ଶିକାର ନୃତ୍ୟ'ଏକ ପ୍ରସିଦ୍ଧ ପାରଂପରିକ ଲୋକନୃତ୍ୟ ଭାବେ ପରିଚିତ । ଏହାକୁ 'ବେଣ୍ଟଯାତ୍ରା' କୁହାଯାଏ । ନବରଙ୍ଗପୁର ଜିଲ୍ଲାର ତେନ୍ତୁଳିଖୁଣ୍ଟି, ଝରିଗାଁ, ନନ୍ଦାହାଣ୍ଡି ଏବଂ କୋରାପୁଟ ଜିଲ୍ଲାର ଲକ୍ଷ୍ମୀପୁର, ବୋରିଗୁମ୍ମା, ଜୟପୁର, କୁନ୍ଦୁରା, ବୈପାରୀଗୁଡ଼ାରେ ବସବାସ କରୁଥିବା କନ୍ଧ ଓ ପରଜାମାନେ 'ଚଇତି ପରବ' ଅବସରରେ ସେମାନଙ୍କ ପାରଂପରିକ ନୃତ୍ୟ, ଗୀତ ପରିବେଷଣ କରିଥାନ୍ତି । ଚୈତ୍ର ମାସ ବେଳକୁ ପରଜା ଓ କନ୍ଧମାନେ ଦଳବଳ ହୋଇ ବେଣ୍ଟ ଯାତ୍ରାରେ ବାହାରିଲା ବେଳେ ଏହି ପାରମ୍ପରିକ 'ଶିକାର ନାଚ' ପରିବେଷଣ କରାଯାଏ । 'ଶିକାରନୃତ୍ୟ ' ହେଉଛି କନ୍ଧମାନେ ଦଳବଳ ହୋଇ ବେଣ୍ଟ ଯାତ୍ରାରେ ବାହାରିଲା ବେଳେ ଏହି ପାରଂପରିକ 'ଶିକାର ନାଚ'ପରିବେଷଣ କରାଯାଏ । ଶିକାର ନୃତ୍ୟ ହେଉଛି କନ୍ଧ ଓ ପରଜାମାନଙ୍କର ଏକ ପ୍ରମୁଖ ନାଚ ।

ବିଶେଷକରି ଚୈତ୍ରମାସ ବେଳକୁ କନ୍ଧ ଓ ପରଜାମାନେ ଜଙ୍ଗଲକୁ ବେଣ୍ଟ କରି ଗଲାବେଳେ 'ଶିକାରନାଚ'ର ଆୟୋଜନ କରିଥାନ୍ତି । କନ୍ଧ ଓ ପରଜା ଧାଙ୍ଗିଡ଼ୀମାନେ ଧାଙ୍ଗଡ଼ାମାନଙ୍କୁ ବନ୍ଦାପନା କରି ବେଣ୍ଟ ଶିକାରକୁ ପଠାଇଥାନ୍ତି । ଏହି ଅବସରରେ

କନ୍ଧ ଓ ପରଜା ଧାଙ୍ଗଡ଼ାମାନେ କାନ୍ଧରେ ବିଭିନ୍ନ ପ୍ରକାର ଶିକାର ସାମଗ୍ରୀ ପାରଂପରିକ ଅସ୍ତ୍ରଶସ୍ତ୍ର, ଖଣ୍ଡା, କାତି, ବର୍ଚ୍ଛା, ଦାନ୍ଦର, ଶିକାର ମଣା, ଆଦି ସାଥୀରେ ଧରି ଜଙ୍ଗଲକୁ ବାହାରନ୍ତି । ଧାଙ୍ଗିଡୀମାନେ ଗୀତ ଗାଇ ଧାଙ୍ଗଡ଼ାମାନଙ୍କୁ ପଠାନ୍ତି । ଏହି ଅବସରରେ କନ୍ଧ ଓ ପରଜା ଯୁବକ ଯୁବତୀମାନେ ନାନା ପ୍ରକାର ରସରସିଆ ଗୀତ ଗାଇବା ସାଂଗକୁ ନାଚି ନାଚି ଜୀବନକୁ ଉପଭୋଗ କରିଥାନ୍ତି । ଧାଙ୍ଗଡ଼ା ଧାଙ୍ଗିଡ଼ୀମାନେ 'ଚଇତପରବ ଗୀତ 'ବା ବେଣ୍ଟ ଗୀତ' ଗାନ କରିଥାନ୍ତି । ଏହାକୁ ହିଁ କନ୍ଧ ଓ ପରଜାମାନଙ୍କ ଶିକାର ନାଚ କୁହାଯାଏ । ଏହି ଶିକାର ନାଚ, କନ୍ଧ ଓ ପରଜାମାନଙ୍କର ଏକ ପାରଂପରିକ ନୃତ୍ୟ । ଏହା ବିଶେଷ କରି ଚୈତ୍ର ମାସରେ ପାଳନ କରାଯାଇଥାଏ । ଏହାକୁ ବେଣ୍ଟଯାତ୍ରା, କୁହାଯାଏ ।

ତେବେ ଯୁଗ ବଦଳିବା ସାଙ୍ଗକୁ କନ୍ଧ ଓ ପରଜାମାନଙ୍କ ଏହି ପାରଂପରିକ ନୃତ୍ୟରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରାଗଲାଣି। ଏବେ ପଶୁପକ୍ଷୀ ଶିକାର ଉପରେ ସରକାରଙ୍କ କଟକଣା ଏବଂ ବେଣ୍ଟଯାତ୍ରା ଉପରେ ପ୍ରଶାସନ ପକ୍ଷରୁ ଅଂକୁଶ ଲାଗିବା ଫଳରେ କେବଳ ପ୍ରତୀକ ଭାବେ ବେଣ୍ଟ ଯାତ୍ରାର ଆୟୋଜନ କରାଯାଉଛି ।

ମାଲ୍‌କାନ୍‌ଗିରିର 'କୋୟା ନୃତ୍ୟ' ଅନ୍ୟ ଏକ ଲୋକପ୍ରିୟ ନୃତ୍ୟର ମାନ୍ୟତା ଲାଭ କରିପାରିଛି । ମାଲ୍‌କାନ୍‌ଗିରି ଜିଲ୍ଲାର ପଡ଼ିଆ ବ୍ଲକ୍ ଅନ୍ତର୍ଗତ 'ଇରାଲ୍‌ଗୁଣ୍ଡି' ଗାଁରେ ଆମେ ସକାଳୁ ପହଞ୍ଚିଲା ପରେ କୋୟାମାନେ ଆମକୁ ଅଭିନନ୍ଦନ ଜଣାଇ ପାଛୋଟି ନେଇଥିଲେ । ପୂର୍ବର ସୂଚନା ଅନୁସାରେ ଗାଁର କୋୟାମାନେ ସମସ୍ତେ ପ୍ରସ୍ତୁତ ହୋଇ ସାରିଥିଲେ । ମୋ ସାଥୀରେ ଥିଲେ ମାଲ୍‌କାନ୍‌ଗିରିର ଜଣେ କୋୟା ସରପଞ୍ଚ । ତାଙ୍କ ନାମ ଉଙ୍ଗାପଡ଼ିୟାମ୍ମି । ସେ ମୋତେ ତଥ୍ୟ ପ୍ରଦାନ ଓ କୋୟାମାନଙ୍କର ସହ ଭାବ ବିନିମୟରେ ପ୍ରମୁଖ ସହଯୋଗ କରିଥିଲେ । କାରଣ କୋୟା ଭାଷା ବୁଝିବା ମୋ ପକ୍ଷେ ସଂପୂର୍ଣ୍ଣ ଅସମ୍ଭବ ଥିଲା । ଆମେ (ଇରାଲ୍‌ଗୁଣ୍ଡି) ଗାଁରେ ପହଞ୍ଚିବା ପରେ କୋୟାମାନେ ସେମାନଙ୍କର ପାରଂପରିକ ନୃତ୍ୟ ପରିବେଷଣ ଆରମ୍ଭ କରିଦେଲେ ।

କୋୟା ନୃତ୍ୟ ଓ ଏହି ନୃତ୍ୟରେ ବ୍ୟବହୃତ ବାଦ୍ୟଯନ୍ତ୍ର, ପୋଷାକ, ଅଳଙ୍କାର, ସଂଗୀତ ବେଶ୍ ମନମୁଗ୍ଧକର । କୋୟା ନୃତ୍ୟ ସଂପର୍କରେ ଆର.ସି.ଏସ୍ ବେଲ୍ ଏକ ଚମତ୍କାର ବର୍ଣ୍ଣନା କରିଛନ୍ତି । ବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଆଦିବାସୀ ସମ୍ପ୍ରଦାୟରେ ଯେତେ ପ୍ରକାର ନୃତ୍ୟ ରହିଛି, ସେଥିମଧ୍ୟରୁ କୋୟା ନୃତ୍ୟର ଏକ ବିଶେଷ ପରିଚୟ ରହିଛି ।

'ଇରାଲ୍‌ଗୁଣ୍ଡି' ଓ କୋୟାଗିରିର କୋୟାମାନେ ସେମାନଙ୍କର ପାରଂପରିକ ଶିଙ୍ଗ ନାଚ ପରିବେଷଣ କରି ସମଗ୍ର ପୃଥିବୀରେ ବିଖ୍ୟାତ ହୋଇ ସାରିଛନ୍ତି । କୋୟାମାନେ ବର୍ଷର ବିଭିନ୍ନ ପର୍ବପର୍ବାଣିରେ ଏହି ନୃତ୍ୟ କରିଥାନ୍ତି । ବିଶେଷକରି ବିଭାଘର କିମ୍ବା ଶିଶୁ ଜନ୍ମ ଉତ୍ସବବେଳେ କୋୟାମାନେ ରାତିରାତି ମହୁଲି ପିଇ ନାଚ କରିଥାନ୍ତି । କୋୟାମାନଙ୍କର ମୁଖ୍ୟ ପର୍ବ ଚୈତ୍ର ପରବ ବା 'ବିଜା ପାଣ୍ଡୁମ୍' ନୂଆଖିଆ ପର୍ବ ବା କର୍ଡ୍ଡା ପାଣ୍ଡୁମ୍, ପୁଷ୍ପପରବ୍ ବା ଭୀମୁଡୁ ପାଣ୍ଡୁମ୍, ଆଦି ପର୍ବପର୍ବାଣି ପାଳନ ଅବସରରେ ଏହି ନୃତ୍ୟ ପରିବେଷଣ କରାଯାଇଥାଏ । ଧାଙ୍ଗିଡ଼ୀମାନେ ମିଳିତ କଂଠରେ ଗୀତ ଗାଆନ୍ତି ଏବଂ ବାହୁରେ ବାହୁକୁ ଛନ୍ଦି ନାଚ ଆରମ୍ଭ କରେ । ନାଚିଲାବେଳେ ଯୁବକ ଯୁବତୀମାନେ ଶୃଙ୍ଖଳିତ ଭାବେ ଦୁଇ ଧାଡ଼ିରେ ଆବଦ୍ଧ ରହି ପଦପାତ କରିଥାନ୍ତି । ଯୁବକମାନେ ବାଦ୍ୟ ପରିବେଷଣ କରନ୍ତି ଏବଂ ଯୁବତୀମାନେ ଗୀତ ଗାଇବା ସହ ନୃତ୍ୟ କରିଥାନ୍ତି ।

ପ୍ଲଟ୍ ନଂ– ୪୧୬/୧୭୬୫
ପ୍ରାଚୀବିହାର
ପଳାଶୁଣି, ଭୁବନେଶ୍ୱର



# ପୁରାଣ ପୃଷ୍ଠାରେ ସରସ୍ୱତୀ

ଡ଼କ୍ଟର ଶରତ ଚନ୍ଦ୍ର ପରିଡ଼ା

ଭାରତୀୟ ସଂସ୍କୃତି ଅଦ୍ୱିତୀୟ । ତାହା ଅପୂର୍ବ ପରାଜ୍ଞାନ ଓ ଶିକ୍ଷାରେ ସମୃଦ୍ଧ । ତା'ର ଦୃଷ୍ଟି ଓ ଚଳଣିରେ ଚମକ ରହିଛି । ଭାରତର କଳା ଭାସ୍କର୍ଯ୍ୟ, ସ୍ଥାପତ୍ୟ-ଶିଳ୍ପ, ଧର୍ମ-ଦର୍ଶନ ତଥା ଶାସ୍ତ୍ର ଓ ସାହିତ୍ୟରେ ବାଗ୍‌ଦେବୀ ସରସ୍ୱତୀଙ୍କର ଅକ୍ଷୟ ପ୍ରଭାବ ଯୁଗ ଯୁଗ ଧରି ପ୍ରତିଫଳିତ ହୋଇ ଆସିଛି । ସରସ୍ୱତୀ ନଦୀ ବା ସରସ୍ୱତୀ ଦେବୀଙ୍କୁ ବାଦ୍ ଦେଲେ ଭାରତୀୟ କଳା, ସଙ୍ଗୀତ ଓ ସାହିତ୍ୟର ମୂଲ୍ୟାୟନ କରିବା ସମ୍ଭବ ନୁହେଁ । ସିଦ୍ଧିଦାତା ଓ ବିଘ୍ନ ବିନାଶନ ବିନାୟକ ତଥା ପ୍ରଜ୍ଞାନର ଦେବୀ ସରସ୍ୱତୀଙ୍କ ବିନା ଭାରତୀୟ ସଂସ୍କୃତି ଅଧ୍ୟୟନ ଅଭାବନୀୟ । ସେ ବିଦ୍ୟାଦାତ୍ରୀ, ଅନ୍ନ ଓ ଜ୍ଞାନଦାତ୍ରୀ, ବୁଦ୍ଧି, ସିଦ୍ଧି ଓ ମୁକ୍ତିଦାତ୍ରୀ । ସେ ଅଜ୍ଞାନ-ଅନ୍ଧକାର ବିନାଶିନୀ । ତାଙ୍କୁ ହଜାର ହଜାର ବର୍ଷ ଧରି ସମଗ୍ର ଭାରତବର୍ଷର କବି, କୋବିଦ, ଶାସ୍ତ୍ରକାର ଓ କଳାକାରମାନେ ପୂଜା ପ୍ରାର୍ଥନା ଓ ଉପାସନା କରି ଆସୁଛନ୍ତି । ଏହି ଧାରା ନିରବଚ୍ଛିନ୍ନ । ତାଙ୍କର ଗାରିମାକୁ ଭିତ୍ତି କରି ଅନେକ କଥା ଓ କାହାଣୀମାନ ସଂଯୋଜିତ ହୋଇଛି । ବୈଦିକ ଯୁଗର ସରସ୍ୱତୀ ଆଜି ନଥିଲେ ମଧ୍ୟ ଭାରତର ପ୍ରାୟ ପ୍ରତ୍ୟେକ ଅଞ୍ଚଳର ଶାସ୍ତ୍ର ଓ ହୃଦୟରେ ସରସ୍ୱତୀ ନଦୀ ଓ ଦେବୀ ରୂପରେ ବିରାଜିତ । ସରସ୍ୱତୀ ଯେ ଭାରତୀୟ ଏକତାର ଅନ୍ୟତମ ପ୍ରଧାନ ସୂତ୍ର ତାହା କହିବା ଅନାବଶ୍ୟକ । ଦେବୀ ସରସ୍ୱତୀ ହିଁ ମହାକାଳୀ ଓ ମହାଲକ୍ଷ୍ମୀ । ଶ୍ରୀଦୁର୍ଗା ସପ୍ତଶତୀର ରହସ୍ୟରେ ତାହା ହିଁ ସୂଚିତ ହୋଇଛି । ସେଥିରେ ସରସ୍ୱତୀ ନିମ୍ନଲିଖିତ ନାମରେ ନାମିତ ହୋଇଛନ୍ତି :

ମହାବିଦ୍ୟା ମହାବାଣୀ ଭାରତୀ ବାକ୍ ସରସ୍ୱତୀ ।
ଆର୍ଯ୍ୟା ବ୍ରାହ୍ମୀ କାମଧେନୁ ର୍ବେଦଗର୍ଭାଚ ଧୀଶ୍ୱରୀ ॥

**ବେଦୋତ୍ତର ସାହିତ୍ୟରେ ଅଳଂକୃତା ଦେବୀ ସରସ୍ୱତୀ:** ବେଦବର୍ଣ୍ଣିତ ସରସ୍ୱତୀଙ୍କ ନିଗୂଢ଼ ତତ୍ତ୍ୱ ମହାଭାରତ ଓ ପୁରାଣ ଯୁଗରେ ସରଳ ଓ ସୁବୋଧ୍ୟ ହୋଇ ପାରିଛି । ବୈଦିକ ଭାବନା ଆଳଂକାରିକ ରୂପ ଧାରଣ କରିଛି । କିନ୍ତୁ ପୌରାଣିକ ସରସ୍ୱତୀଙ୍କଠାରେ ବେଦୋକ୍ତ ମୂଳ ବିଚାର ଅକ୍ଷୁଣ୍ଣ ଓ ଅପରିବର୍ତ୍ତିତ । ମହାଭାରତ ଓ କେତେକ ପୁରାଣରେ ସରସ୍ୱତୀଙ୍କ ନଦୀ ରୂପ ବର୍ଣ୍ଣନା ଦେଖିବାକୁ ମିଳେ । ସାକାର ଉପାସନା ପ୍ରଚଳିତ ହେବାରୁ ସରସ୍ୱତୀ ବିଦ୍ୟାର ପ୍ରତୀକ ହୋଇ ଦେବୀ ତଥା ମାନବୀ ରୂପ ଧାରଣ କରିଛନ୍ତି । ଜ୍ଞାନମୟୀ ସେ ବାକ୍ୟର ଅଧିଷ୍ଠାତ୍ରୀ ଦେବୀ । ବିଦ୍ୟାଦାୟିନୀ । ଜଡ଼ତା ହାରିଣୀ । କାବ୍ୟକଳାର ଆଦ୍ୟା ଶକ୍ତି । ସକଳ ପ୍ରାଣୀଙ୍କ ମଧ୍ୟରେ ସେ ଚେତନା ଓ ଚେତନା ଶକ୍ତିର ଉଦ୍ରେକକାରିଣୀ । ସତ୍ୟ ଓ ସାତ୍ତ୍ୱିକ ଭାବନା ପରିପ୍ରକାଶ କରୁଥିବା ବୀଣା, ପୁସ୍ତକ ଓ ହଂସକୁ ସରସ୍ୱତୀଙ୍କ ସହିତ ଯୋଡ଼ି ଦିଆଯାଇଛି । ପୁରାଣ ଯୁଗରେ ସରସ୍ୱତୀଙ୍କ ବିଭିନ୍ନ ସ୍ତବ, ସ୍ତୋତ୍ର ଓ କବଚ ପ୍ରଭୃତି ରଚନା କରାଯାଇଥିଲା । ଜ୍ଞାନପିପାସୁ ଆର୍ଯ୍ୟ ମାନବ ବିନମ୍ର କଣ୍ଠରେ ଗାଇଥାଏ : ଯା କୁନ୍ଦେନ୍ଦୁ ତୁଷାର ହାର ଧବଳା..

**ସଂସ୍କୃତ ମହାଭାରତରେ ନଦୀରୂପା ଓ ଦେବୀ ରୂପା ସରସ୍ୱତୀ:**

ମହାଭାରତରେ ନଦୀରୂପା ସରସ୍ୱତୀଙ୍କ ବର୍ଣ୍ଣନା ନିହିତ । ସପ୍ତଧାରା ଗଙ୍ଗାଙ୍କର ସେ ଥିଲେ ଅନ୍ୟତମ ଧାରା । ଦ୍ୱାରକାରୁ ହସ୍ତିନାପୁର ଯିବା ବାଟରେ ଏହି ନଦୀକୁ ପାରି ହେବାକୁ ପଡ଼ୁଥିଲା । ସରସ୍ୱତୀ ହେମ୍ରକୂଟ ପର୍ବତରୁ ବାହାରି କୁରୁକ୍ଷେତ୍ର ଦେଇ ପ୍ରବାହିତ ହୋଇଛି ବୋଲି କେତେକ ମତ ଦିଅନ୍ତି । ବନବାସ କାଳରେ ପାଣ୍ଡବମାନେ ସରସ୍ୱତୀ ନଦୀ ପାରି ହୋଇଥିଲେ । ଏହି ନଦୀ କୂଳରେ କାମ୍ୟକ ବନ ଥିଲା । ସରସ୍ୱତୀ ନଦୀ ପବିତ୍ର ତୀର୍ଥ ସ୍ୱରୂପା । ଏହି ନଦୀ କୂଳରେ ଯଜ୍ଞ, ଦାନ, ତପସ୍ୟା ଓ ଶ୍ରାଦ୍ଧ ଅନୁଷ୍ଠିତ ହେଉଥିଲା । ସରସ୍ୱତୀ ନଦୀ ତୀରରେ ମହର୍ଷି ଦଧିଚିଙ୍କ ଆଶ୍ରମ ଥିଲା । ମହର୍ଷି ବଶିଷ୍ଠ ସରସ୍ୱତୀ ପ୍ରବାହରେ ଭାସି ଯାଇଥିଲେ । ଏହି ନଦୀ କୂଳରେ ଥିବା ଏକ ଅଶ୍ୱତ୍‌ଥ ବୃକ୍ଷ ମୂଳରେ

ଶ୍ରୀକୃଷ୍ଣ ଇହଲୀଳା ସାଙ୍ଗ କରିଥିଲେ । ସେହିପରି ମହାଭାରତ ଯୁଗରେ ଦେବୀ ରୂପେ ସରସ୍ୱତୀଙ୍କୁ ବନ୍ଦନା କରିବାର ପ୍ରଥା ପ୍ରଚଳିତ ଥିଲା । ସେଥିପାଇଁ ମହାକବି ବେଦବ୍ୟାସ ମହାଭାରତର ପ୍ରତ୍ୟେକ ପର୍ବର ଆରମ୍ଭରେ ବାକ୍ ଦେବୀ ସରସ୍ୱତୀଙ୍କୁ ବନ୍ଦନା କରି ଲେଖନ୍ତି: ଦେବୀଂ ସରସ୍ୱତୀଂ ଚୈବ ତତୋଜୟମୁଦୀରୟେତ୍ (ଆଦିପର୍ବ) ।

ପାଣ୍ଡବମାନେ ଅଜ୍ଞାତବାସ କରିଥା'ନ୍ତି । ସାଙ୍ଗରେ ଥା'ନ୍ତି ଶ୍ରୀକୃଷ୍ଣ । ସେତେବେଳେ ତ୍ରିକାଳଦର୍ଶୀ ମହାପ୍ରାଜ୍ଞ ମାର୍କଣ୍ଡେୟ ଋଷି ପାଣ୍ଡବ ତଥା ସମବେତ ମୁନି ଓ ଋଷିଗଣଙ୍କୁ କହିବାକୁ ଲାଗିଲେ: ଦେବୀ ସରସ୍ୱତୀ ବେଦମାତା । ସେ ବିଦ୍ୟା ଓ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ । ସେ ସହଜରେ ମିଳନ୍ତି ନାହିଁ । ସାଧାରଣ ମଣିଷ ସ୍ୱାର୍ଥପର । ଅବିଦ୍ୟା ଓ ଷଡ଼ରିପୁଙ୍କ କବଳରେ ପଡ଼ି ସେ ସେମାନଙ୍କ ପାଖରେ ଆତ୍ମ ସମର୍ପଣ କରିଥାଏ । ଯେତେବେଳେ ସେ କାମନା ବାସନା ହୀନ ହୋଇ ନିର୍ମଳ ଅନ୍ତଃକରଣରେ ଅସୀମ ଶ୍ରଦ୍ଧାଳୁ ହୋଇ ସରସ୍ୱତୀଙ୍କ ବନ୍ଦନା କରେ ସେ ଆବିର୍ଭୂତ ହୋଇ ଈପସିତ ଜ୍ଞାନ ପ୍ରଦାନ କରନ୍ତି ।

**ସାରଳା ମହାଭାରତରେ ସରସ୍ୱତୀ ନଦୀ :**

ଶୂଦ୍ରମୁନି ସାରଳା ଦାସଙ୍କ ମହାଭାରତରେ ସରସ୍ୱତୀ ପ୍ରାଥମିକ ଅବସ୍ଥାରେ ନଦୀ ରୂପରେ ବର୍ଣ୍ଣିତ ହୋଇଛନ୍ତି । ପରବର୍ତ୍ତୀ କାଳରେ ସେ ହେଲେ ବାଗ୍‌ଦେବୀ ସରସ୍ୱତୀ । ସାରଳା ପୀଠର ଅଧିଷ୍ଠାତ୍ରୀ ଦେବୀ ମହିଷମର୍ଦ୍ଦିନୀ ସାରଳା ଓ ସରସ୍ୱତୀଙ୍କୁ ସେ ଏକ ଓ ଅଭିନ୍ନ ଦେବୀ ରୂପେ ସ୍ତୁତି କରିଛନ୍ତି । ଏହି ନଦୀ ତୀରରେ ଋଷ୍ୟଶୃଙ୍ଗ ମୁନିଙ୍କର ଆଶ୍ରମ ଥିଲା । ଅଜ୍ଞାତ ବନବାସରେ ଯୁଧିଷ୍ଠିରଙ୍କ ଅଭିଷେକ ଓ ରାଜସୂୟ ଯଜ୍ଞରେ ସରସ୍ୱତୀର ଜଳ ବ୍ୟବହୃତ ହୋଇଥିଲା । ସେ ପୁଣ୍ୟତୋୟା । ସାରଳା ଦାସ ବନ୍ଦନା କରନ୍ତି ଯେ ସରସ୍ୱତୀ ନଦୀରେ ସ୍ନାନ କଲେ ପାପ ଛାଡ଼ିଯାଏ ଓ ମୋକ୍ଷ ଲାଭ ହୁଏ :

ସରସ୍ୱତୀ ସ୍ନାହାନେ ଯେହ୍ନେ କଳୁଷ ଓଛ
ପ୍ରତ୍ୟକ୍ଷେ ପ୍ରାପତ ହୋଅଇ ଧର୍ମକାମ ମୋକ୍ଷ ॥

ପରେ ସେ ନିଜକୁ ସରସ୍ୱତୀଙ୍କ ବରପୁତ୍ର ସାରଳା ଦାସ ରୂପେ ଅଭିହିତ କରିଛନ୍ତି । ଦେବୀ ସାରଳା ଚଣ୍ଡୀ ଓ ଅଷ୍ଟଭୁଜା । ଖଟ୍ୱାଙ୍ଗ, ଡ଼ମ୍ବରୁ, ଖଡ୍ଗ, ତ୍ରିଶୂଳ,ଚକ୍ର, ବଜ୍ର, କାତି ଓ ଖପର ଧାରଣ କରିଛନ୍ତି । ସେ ସର୍ବସିଦ୍ଧିଦାୟିନୀ । ପାପ ବିନାଶିନୀ । ଅଭୟ ବର ଦାୟିନୀ । ସେ ଚନ୍ଦ୍ରମାବଦନୀ ଓ ପ୍ରତିଜ୍ଞା ସାର୍ଥକକାରିଣୀ । ଉତ୍କଳୀୟ କବି କବିବର ରାଧାନାଥ ରାୟ ମଧ୍ୟ ସରସ୍ୱତୀ ନଦୀର ଜଳ ସୁସ୍ୱାଦୁ ବୋଲି ପ୍ରଶଂସା କରି ଲେଖନ୍ତି :

ସରସ୍ୱତୀ ସରିତ ସୁସ୍ୱାଦୁ ଜଳ ।
ସେବି ହୋଇବ ତାର ହୃଦ ନିର୍ମଳ ॥

**ବ୍ରହ୍ମବୈବର୍ତ୍ତ ପୁରାଣରେ ପାପମୋଚିନୀ ନଦୀରୂପା ସରସ୍ୱତୀ:**

ପୁରାଣରେ ସରସ୍ୱତୀ ସପ୍ତତୀର୍ଥ ମଧ୍ୟରେ ଏକତମ । ସରସ୍ୱତୀର ଜଳ ପବିତ୍ର ହୋଇଥିବାରୁ ସଂକଳ୍ପକାରୀ ସରସ୍ୱତୀଙ୍କ ଆବାହନ କରି ହାତରେ ଥିବା ଜଳକୁ ପବିତ୍ର କରନ୍ତି :

ଗଙ୍ଗେଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ ।
ନର୍ମଦେ ସିନ୍ଧୁକାବେରୀ ଜଳେଷ୍ମିନ୍ ସନ୍ନିଧିଂ କୁରୁ ॥

ପ୍ରୋକ୍ତ ପୁରାଣର ଷଷ୍ଠ ଅଧ୍ୟାୟ ପ୍ରକୃତି ଖଣ୍ଡରେ କୁହାଯାଇଛି ଯେ ସରସ୍ୱତୀ ନଦୀରେ ସ୍ନାନ କଲେ ସମସ୍ତ ପାପ ଖଣ୍ଡନ ହୁଏ । ସେ ତପସ୍ୱୀମାନଙ୍କର ତପରୂପା । ପାପ ଇନ୍ଧନ ପାଇଁ ସାକ୍ଷାତ୍ ଜ୍ୱଳନ୍ତ ଅଗ୍ନି ସଦୃଶ । ଏହି ଭୂମଣ୍ଡଳରେ ଯେଉଁ ମାନବମାନେ ସରସ୍ୱତୀଙ୍କର ଜ୍ଞାନମୟ ସ୍ରୋତରେ ସ୍ନାନ କରନ୍ତି ସେମାନଙ୍କର ସ୍ଥିତି ଦୀର୍ଘକାଳ ପାଇଁ ହରିଙ୍କ ଭବନ ବୈକୁଣ୍ଠରେ ସୁନିଶ୍ଚିତ ହୋଇଥାଏ । ମହର୍ଷି ଯାଜ୍ଞବଲ୍କ୍ୟଙ୍କ ସମ୍ମୁଖରେ ସେ ସ୍ୱର ଓ ବ୍ୟଞ୍ଜନ– ବର୍ଣ୍ଣରେ ଭୂଷିତ ହୋଇ ବାଗ୍‌ଦେବୀ ରୂପେ ଉଭା ହୋଇଥିଲେ ।

**ଧର୍ମ ଶାସ୍ତ୍ରରେ ବ୍ରହ୍ମାବର୍ତ୍ତର ସୀମା ନିର୍ଦ୍ଧାରଣରେ ନଦୀ ସରସ୍ୱତୀ:**

ଗୁପ୍ତ ଯୁଗରେ ଭାରତର ଅନେକ ସ୍ଥାନରେ ବାଗ୍‌ଦେବୀଙ୍କର ପୀଠ ଓ ମନ୍ଦିରମାନ ନିର୍ମିତ ହୋଇଥିଲା । ଭାରତର କୋଣେ ଅନୁକୋଣେ ଜ୍ଞାନ ଓ ବିଦ୍ୟା ପ୍ରାପ୍ତି କାମନାରେ ବାଗ୍‌ଦେବୀ ଉପାସନାର ଦ୍ରୁତ ପ୍ରସାର ଘଟିଥିଲା । ଧର୍ମ ଶାସ୍ତ୍ରରେ ମଧ୍ୟ ନଦୀରୂପା ସରସ୍ୱତୀଙ୍କ ଗାରିମା ବଜାୟ ରହିଥିଲା । ତାହା ବ୍ରହ୍ମଭୂମି ଭାରତବର୍ଷର ସୀମା ନିର୍ଦ୍ଧାରଣ କରେ ବୋଲି ମହର୍ଷି ମନୁ କହିଛନ୍ତି ଯେ, ସରସ୍ୱତୀ ଓ ଦୃଷଦ୍‌ବତୀ ହେଉଛନ୍ତି ଦେବନଦୀ । ଏ ଦୁହିଁଙ୍କ ମଧ୍ୟବର୍ତ୍ତୀ ଅଞ୍ଚଳରେ ଯେଉଁ ଦେଶ ଦେବତାମାନଙ୍କ ଦ୍ୱାରା ନିର୍ମିତ ହୋଇଛି ସେହି ଦେଶର ନାମ ବ୍ରହ୍ମାବର୍ତ୍ତ ।

ସ୍ମୃତିଶାସ୍ତ୍ରକାରମାନେ ବାଗ୍‌ଦେବୀ ଉପାସନାର ଭିନ୍ନ ଭିନ୍ନ ପ୍ରଣାଳୀ ପ୍ରବର୍ତ୍ତନପୂର୍ବକ ବିଧି ବ୍ୟବସ୍ଥା ପ୍ରଣୟନ କଲେ । ଗୁପ୍ତ ଯୁଗରେ ରଚିତ ପୁରାଣ ଉପପୁରାଣ ସମୂହରେ ସରସ୍ୱତୀଙ୍କ ସଂପର୍କିତ ନୂତନ ଆଖ୍ୟାୟିକାମାନ ସଂଯୋଜିତ ହୋଇଥିଲା । ଭାରତବର୍ଷର କେନ୍ଦ୍ର ସ୍ଥଳରେ ଅବସ୍ଥିତ ବାରାଣାସୀ ନଗରୀ ବାଣୀ ଆରାଧନାର ଶ୍ରେଷ୍ଠ ପୀଠର ମାନ୍ୟତା ଲାଭ କରି ବିଦ୍ୟାନଗରୀ

ରୂପେ ପରିଚିତ ହୋଇଥିଲା । ଏହି ଗୁପ୍ତ ଯୁଗରେ ବାଗ୍‌ଦେବୀ ଉପାସନାର ବିକାଶ ଘଟିବା ଦ୍ୱାରା ବିଦ୍ୟାଦାତ୍ରୀ ସରସ୍ୱତୀ ଜାତି, ଧର୍ମ ଓ ବର୍ଣ୍ଣ ସଂପ୍ରଦାୟ ନିର୍ବିଶେଷରେ ଅଗଣିତ ଭାରତବାସୀଙ୍କର ଆରାଧ୍ୟା ଦେବୀ ହୋଇ ଯାଇଥିଲେ ।

**ବ୍ରହ୍ମବୈବର୍ତ୍ତ ପୁରାଣ ଅନୁସାରେ ଦେବୀ ରୂପା ସରସ୍ୱତୀଙ୍କ ଜନ୍ମ :**

ବ୍ରହ୍ମବେତ୍ତା ଋଷିମାନଙ୍କ କଳ୍ପନାରେ ସରସ୍ୱତୀ ଜନ୍ମ ନିଅନ୍ତି । ପୁରାଣକାରମାନେ ସରସ୍ୱତୀଙ୍କ ବିଭିନ୍ନ ଲୀଳା କୀର୍ତ୍ତନ କରିବା ସହିତ ତାଙ୍କୁ ବ୍ରହ୍ମା, ସୂର୍ଯ୍ୟ ଓ ବିଷ୍ଣୁଙ୍କ ସହିତ ନାନା ସମ୍ପର୍କରେ ଛନ୍ଦି ଦେଇଛନ୍ତି । ବ୍ରହ୍ମବୈବର୍ତ୍ତ ପୁରାଣର ଶ୍ଳୋକ–୬୧–୬୭ରେ ବର୍ଣ୍ଣନା ରହିଛି ଯେ ସୃଷ୍ଟି କାଳରେ ଈଶ୍ୱରଙ୍କ ଇଚ୍ଛାରେ ମୂଳ ପ୍ରକୃତି ଈଶ୍ୱରୀ ଶକ୍ତି ପାଞ୍ଚ ଭାଗରେ ବିଭକ୍ତ ହେଲା ଯଥା: ରାଧା, ପଦ୍ମା, ସାବିତ୍ରୀ, ଦୁର୍ଗା ଓ ଦେବୀ ସରସ୍ୱତୀ । ସେଠାରେ କୁହାଯାଇଛି ସରସ୍ୱତୀ ଦେବୀ ଅଟନ୍ତି । ସେ କୃଷ୍ଣଙ୍କ କଣ୍ଠରୁ ଉଦ୍ଭବ । ବାକ୍ ର ଅଧିଷ୍ଠାତ୍ରୀ । ଶାସ୍ତ୍ରଜ୍ଞାନ ପ୍ରଦାୟତ୍ରୀ :

ବାଗାଧିଷ୍ଠାତ୍ରୀ ଯା ଦେବୀ ଶାସ୍ତ୍ରଜ୍ଞାନପ୍ରଦା ସଦା ।
କଷ୍ଣକଣ୍ଠୋଭବା ଯାଚ ସାଚଦେବୀ ସରସ୍ୱତୀ ।

**ପୁରାଣର ବ୍ରହ୍ମଖଣ୍ଡର ତୃତୀୟ ଅଧ୍ୟାୟରେ ସୌତି କହିଛନ୍ତି:**

ପରମାତ୍ମାଙ୍କ ମୁଖରୁ ସରସ୍ୱତୀ ଆବିର୍ଭୂତା ହୋଇଛନ୍ତି । ସେ ଶୁକ୍ଳବର୍ଣ୍ଣା । ବୀଣା ପୁସ୍ତକଧାରିଣୀ । କୋଟିଏ ପୂର୍ଣ୍ଣଚନ୍ଦ୍ରଙ୍କ ଶୋଭାରେ ସେ ଶୋଭିତା । ଶରତ୍‌କାଳୀନ ପଦ୍ମ ପରି ତାଙ୍କ ନେତ୍ରଯୁଗଳ । ସେ ବହ୍ନି ପରି ଦୀପ୍ତିମୟୀ । ରତ୍ନ ଅଳଙ୍କାରରେ ଅଳଙ୍କୃତା । ସୁନ୍ଦର ଦନ୍ତପଙ୍କ୍ତିଯୁକ୍ତା । ମନ୍ଦହାସିନୀ । ସୁନ୍ଦରୀମାନଙ୍କର ସୁନ୍ଦରୀ । ସେ ବେଦ ଓ ଶାସ୍ତ୍ରର ନିର୍ଯ୍ୟାସ । ବିଦ୍ୱାନମାନଙ୍କ ଶ୍ରେଷ୍ଠ ଜନନୀ । ସେ କବିମାନଙ୍କର ଶ୍ରେଷ୍ଠ ଦେବତା । ସେ ଶୁଦ୍ଧ ସତ୍ତ୍ୱ ସ୍ୱରୂପା । ଶାନ୍ତରୂପା । ଆବିର୍ଭାବ ମାତ୍ରକେ ସେ ଗୋବିନ୍ଦଙ୍କ ସମ୍ମୁଖରେ ରହି ତାଙ୍କର ନାମଗୁଣକୀର୍ତ୍ତି ବଡ଼ ଆନନ୍ଦରେ ଗାନ କରିଥିଲେ ଓ ବୀଣା ବଜାଇ ନୃତ୍ୟ କରିଥିଲେ ।

**ବ୍ରହ୍ମବୈବର୍ତ୍ତ ପୁରାଣରେ ସରସ୍ୱତୀ ନଦୀ ହେବା ପଛରେ ଗଙ୍ଗାଙ୍କ ଅଭିଶାପ :**

ଉକ୍ତ ପୁରାଣର ପ୍ରକୃତି ଖଣ୍ଡରେ ମଧ୍ୟ ସରସ୍ୱତୀ କିପରି ଓ କାହିଁକି ନଦୀ ରୂପ ଧାରଣ କଲେ ତାହା ଅତି ରୋଚକ ଢଙ୍ଗରେ ବର୍ଣ୍ଣିତ ହୋଇଛି । ଥରେ ଦେବର୍ଷି ନାରଦ ସରସ୍ୱତୀ କାହିଁକି ଭାରତରେ ପୁଣ୍ୟପ୍ରଦା ନଦୀରେ ପରିଣତ ହେଲେ ବୋଲି ଜିଜ୍ଞାସା କଲେ । ନାରାୟଣ ଉତ୍ତରରେ କହିଲେ–ହରିଙ୍କର ତିନୋଟି ଭାର୍ଯ୍ୟା ଥିଲେ । ସେମାନେ ହେଲେ ଲକ୍ଷ୍ମୀ ସରସ୍ୱତୀ ଓ ଗଙ୍ଗା । ଥରେ ଗଙ୍ଗା ହରିଙ୍କ ମୁଖକୁ ନିରୀକ୍ଷଣ କଲେ । କାମପରା ହୋଇ ହସିଦେଲେ । କଟାକ୍ଷରେ ବାରମ୍ବାର ଚାହିଁଲେ । ହରି ମଧ୍ୟ ଚାହିଁ ହସିଦେଲେ । ଏ ଦୃଶ୍ୟକୁ ଲକ୍ଷ୍ମୀ ଦେଖି କ୍ଷମା କରିଦେଲେ । ହେଲେ ସରସ୍ୱତୀ ସହି ପାରିଲେ ନାହିଁ । ରାଗିଗଲେ । କହିଲେ – ତୁମେ ଗଙ୍ଗା ଓ ଲକ୍ଷ୍ମୀଙ୍କୁ ଅଧିକ ଭଲ ପାଉଛ । ମୁଁ ହତ ଭାଗିନୀ । ତୁମକୁ ଯେଉଁ ମନୀଷୀମାନେ ସର୍ବେଶ ସତ୍ତ୍ୱ ରୂପ ବୋଲି କହିଛନ୍ତି ସେମାନେ ମୂର୍ଖ । ସେମାନେ ବେଦଜ୍ଞ ନୁହଁନ୍ତି । ତୁମର ମତି ଜାଣନ୍ତି ନାହିଁ । ହରି କିଛି ନକହି ସଭା ବାହାରକୁ ଚାଲିଗଲେ । ଗଙ୍ଗାଙ୍କୁ ସରସ୍ୱତୀ ପୁଣି ଗାଳି ଦେଇ କହିଲେ ହେ ନିର୍ଲଜୀ, ହେ କାମୁକୀ, ସ୍ୱାମୀ ଗର୍ବ କାହିଁକି କରୁଛୁ ? ସ୍ୱାମୀ ସୌଭାଗ୍ୟକୁ କାହିଁକି ବିଜ୍ଞାପିତ କରୁଛୁ ? ତୋ ମାନ ଆଜି ଚୂର୍ଣ୍ଣ କରିବି । ଚୁଟି ଧରିବାକୁ ଉଦ୍ୟତ ହୁଅନ୍ତେ ଗଙ୍ଗା କହିଲେ : ବାଗଦୁଷ୍ଟା ବାଗଧିଷ୍ଠାତ୍ରୀ ଦେବୀୟଂ କଳହପ୍ରିୟା ॥

ହେ ସରସ୍ୱତୀ ! ବାଗ୍ ର ଅଧିଷ୍ଠାତ୍ରୀ ଦେବୀ ହେଲେ ମଧ୍ୟ ବାକ୍ ଦ୍ୱାରା କଳୁଷିତ ହୋଇ କଳିଝଗଡ଼ା କରୁଛ । ତୁମେ ସରିତ୍ ସ୍ୱରୂପା ହୋଇ ମର୍ତ୍ତ୍ୟକୁ ଯାଅ । କଳି ଯୁଗରେ ଯେଉଁଠାରେ ପାପୀମାନେ ଅଛନ୍ତି ତୁମେ ସେହି ପାପୀମାନଙ୍କର ପାପର ଅଂଶ ଲାଭ କରିବ । ସରସ୍ୱତୀ ମଧ୍ୟ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଯିବାକୁ ଅଭିଶାପ ଦେଲେ । ସରସ୍ୱତୀଙ୍କ ଜନ୍ମ କାହାଣୀ ବର୍ଣ୍ଣନା କରିବା ଯେତିକି ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ ତାର ଅନ୍ତରାଳରେ ଥିବା ସରସ୍ୱତୀଙ୍କ ସ୍ୱଭାବ ତାଙ୍କ ଦାୟାଦମାନଙ୍କଠାରେ କିପରି ଯୁଗେ ଯୁଗେ ପ୍ରତିଫଳିତ ତାହା ଅନୁଶୀଳନଯୋଗ୍ୟ । ସେଥିପାଇଁ ଅନୁଭବୀ ମନୁଷ୍ୟମାନେ ଠାଏ କହି ଦେଇଛନ୍ତି : ବିଦ୍ୟା ବିବାଦାୟ ଧନଂ ମଦାୟ । ସେ ଯାହା ହେଉ ନା କାହିଁକି ସରସ୍ୱତୀଙ୍କ ଏହି ଜନ୍ମବୃତ୍ତାନ୍ତରୁ ଜଣାପଡ଼େ ଆର୍ଯ୍ୟମାନେ ସରସ୍ୱତୀ ନଦୀକୁ ଏକ ଦେବସ୍ତ୍ରୀର ରୂପାନ୍ତର ବୋଲି ମନେ କରୁଥିଲେ ।

ପୁରାଣମାନଙ୍କରେ ସରସ୍ୱତୀଙ୍କ ପ୍ରାୟ ତିରିଶଟି ସ୍ଥାନରେ ପୁଣ୍ୟାତ୍ମାମାନଙ୍କ ଯଜ୍ଞ ଆଦି ଅବସରରେ ନଦୀ ରୂପରେ ପ୍ରକଟ ହୋଇ ପ୍ରବାହିତ ହେବାର ଅତ୍ୟନ୍ତ ରମଣୀୟ ଉପାଖ୍ୟାନମାନ ରହିଛି । ବ୍ରହ୍ମା ପୁଷ୍କରରେ ଯଜ୍ଞ ସଂପନ୍ନ କରୁଥିବା ବେଳେ ଋଷିମାନଙ୍କ ପ୍ରାର୍ଥନାରେ ସରସ୍ୱତୀ ସେଠାରେ ପ୍ରକଟିତ ହୋଇଥିଲେ । ଅତ୍ୟନ୍ତ ପ୍ରଭାଯୁକ୍ତ ଶରୀର ଧାରଣ କରି ଥିବାରୁ ସେହି ସମୟରେ ତାଙ୍କର ନାମ ଥିଲା ସୁପ୍ରଭା । ଋଷିମାନଙ୍କର

ଦ୍ୱାଦଶ ବର୍ଷୀୟ ଯଜ୍ଞରେ ତାଙ୍କର ଧ୍ୟାନ କରିବାରୁ ସେ କାଞ୍ଚନାକ୍ଷୀ ରୂପରେ ଆବିର୍ଭୂତ ହୋଇଥିଲେ । ଗୟା ନଗରୀରେ ମହାରାଜ ଗୟ ଯଜ୍ଞାନୁଷ୍ଠାନ କରୁଥିବା ଅବସରରେ ଧ୍ୟାନ ବଳରେ ସରସ୍ୱତୀ ନଦୀ ରୂପରେ ଆତ୍ମପ୍ରକାଶ କରିଥିଲେ । ଏହି ପ୍ରକାରେ ମନୋରମା, ସୁରେଣୁ, ଓଘବତୀ ଓ ବିମଳୋଦକା ଆଦି ନାମମାନଙ୍କରୁ ସରସ୍ୱତୀ ଉତ୍ତର କୁଶଳ, କୁରୁକ୍ଷେତ୍ର, ପୁଣ୍ୟମୟ ହିମାଳୟ ପର୍ବତ ଆଦି ସ୍ଥାନମାନଙ୍କରେ କୃପା ପରବଶ ହୋଇ ପ୍ରାଣୀମାନଙ୍କୁ ପବିତ୍ର କରିବା ଉଦ୍ଦେଶ୍ୟରେ ନଦୀ ରୂପରେ ପ୍ରବାହିତ ହୋଇ ଅଛନ୍ତି ।

**ବ୍ରହ୍ମାଣ୍ଡ ପୁରାଣରେ ସରସ୍ୱତୀ ବ୍ରହ୍ମକନ୍ୟକା :**

ବ୍ରହ୍ମାଣ୍ଡ ପୁରାଣର ତ୍ରିଚତ୍ୱାରିଂଶତମ (୪୩)ଅଧ୍ୟାୟରେ ସରସ୍ୱତୀଙ୍କ ଜନ୍ମ କାହାଣୀ ଭିନ୍ନ ପ୍ରକାରେ ଦେଖିବାକୁ ମିଳେ । ବ୍ରହ୍ମା ସୃଷ୍ଟି ପାଇଁ ପ୍ରସ୍ତୁତ ହୋଇ ଧ୍ୟାନମଗ୍ନ ହେଲେ । ତାଙ୍କ ଠାରେ ସତ୍ତ୍ୱ ଗୁଣ ପ୍ରବଳ ହେଲା । ହଠାତ୍ ସେହି ପ୍ରାବଲ୍ୟରୁ ଏକ କନ୍ୟା ଜାତ ହେଲା । ସେ କିଏ ବୋଲି ପରିଚୟ ମାଗିବାରୁ ଉତ୍ତର ମିଳିଲା–ମୁଁ ଆପଣଙ୍କ ଠାରୁ ଜନ୍ମ ହୋଇଛି । ମୋର ସ୍ଥାନ ଓ କର୍ତ୍ତବ୍ୟ ନିର୍ଦ୍ଦେଶ କରନ୍ତୁ । ବ୍ରହ୍ମା ଆଜ୍ଞା ଦେଲେ–ତୁମେ ବ୍ରହ୍ମକନ୍ୟକା । ତୁମର ନାମ ସରସ୍ୱତୀ । ତୁମେ ସମସ୍ତଙ୍କର ଜିହ୍ୱାର ଅଗ୍ର ଭାଗରେ ରହିବ । ତୁମେ ବିଶେଷତଃ ଜ୍ଞାନୀମାନଙ୍କର ଜିହ୍ୱାଗ୍ର ଭାଗରେ ନୃତ୍ୟ କରିବ । ତୁମେ ପୃଥିବୀରେ ନଦୀ ରୂପରେ ପ୍ରବାହିତ ହେବ । ତୁମେ ମଧ୍ୟ ମୋ ମଧ୍ୟରେ ରହିବ । ସରସ୍ୱତୀ ଏଥିରେ ସହମତ ହେଲେ । ତେଣୁ ତାଙ୍କୁ ବ୍ରହ୍ମାଙ୍କ ସହଚରୀ ରୂପେ ମଧ୍ୟ ପୁରାଣକାରମାନେ କହନ୍ତି । ସଂସ୍କୃତ କୋଷଗ୍ରନ୍ଥ 'ତ୍ରିକାଣ୍ଡଶେଷ' ପ୍ରଣେତା ପୁରୁଷୋତ୍ତମ ଦେବ (ଖ୍ରୀଷ୍ଟାବ୍ଦ ୮୫୦) ସରସ୍ୱତୀଙ୍କୁ ବ୍ରହ୍ମୀ, ବ୍ରହ୍ମକନ୍ୟକା, ବାଗ୍‌ଦେବୀ, ଶାରଦା, ଶୁକ୍ଳା, ମହାଶ୍ୱେତା ଆଦି ନାମରେ ପରିଚିତା କରାଇ ଅଛନ୍ତି । ସେ ବ୍ରହ୍ମାଙ୍କ ଅଦ୍ୱୈତ ଶକ୍ତି । ୧୭୫୧ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ରାଜା ଜଗପତି ଜଗନ୍ନାଥ ନାରାୟଣ ଦେବ ସରସ୍ୱତୀଙ୍କୁ ବ୍ରହ୍ମାଙ୍କ କନ୍ୟା ବୋଲି ପ୍ରତିପାଦନ କରି ଲେଖନ୍ତି : ଜୟ ବିରଞ୍ଚିନନ୍ଦିନୀ ବିପଞ୍ଚିଧାରିଣୀ । ପୁସ୍ତକପାଣି ଶ୍ରୀହରି ମାନସହାରିଣୀ ॥

**ଶ୍ରୀକୃଷ୍ଣଙ୍କ ଆଦେଶରେ ସରସ୍ୱତୀ ଶ୍ରୀବିଷ୍ଣୁଙ୍କ ମାନସହାରିଣୀ ହେଲେ :**

ସରସ୍ୱତୀଙ୍କ ଜନ୍ମ ସହିତ ତାଙ୍କ ପୂଜାର୍ଚ୍ଚନା ସଂପର୍କିତ । ପରମାତ୍ମା ଶ୍ରୀକୃଷ୍ଣଙ୍କଠାରୁ ଜନ୍ମ ଲାଭ କରିଥିବା ସରସ୍ୱତୀ ଶ୍ରୀକୃଷ୍ଣଙ୍କୁ କହିଲେ ତୁମେ ମୋ ଅଙ୍ଗରୁ ଜାତ । ନାରାୟଣଙ୍କୁ ସ୍ୱାମୀ ରୂପରେ ବରଣ କର । ମୁଁ ତୁମକୁ ବର ଦେଉଛି–ତୁମର ମଙ୍ଗଳ ହେବ । ଚିର ସ୍ୱାମୀସୁଖ ଲାଭ କରିବ । ତୁମର ସ୍ୱାମୀ ପ୍ରୀତି ହେତୁ ତୁମେ ଗୌରବ ଲାଭ କରିବ । ସରସ୍ୱତୀ ଯେ ବିଷ୍ଣୁଙ୍କ ଘରଣୀ ସେକଥା ଓଡ଼ିଆ ସନ୍ଥ ଅଚ୍ୟୁତାନନ୍ଦ ଦାସ ତାଙ୍କ ହରିବଂଶ ଦ୍ୱିତୀୟ ଖଣ୍ଡରେ ଉଲ୍ଲେଖ କରିଛନ୍ତି :

ବିଷ୍ଣୁଦେବ ପ୍ରଭୁଙ୍କର ଅଟୁ ତୁ ଗୋ ଜାୟା ।
ଧବଳ ଅଙ୍ଗୀ ଜନନୀ ସର୍ବଦା ନିର୍ମାୟା ॥
ବିଷ୍ଣୁ ବଲ୍ଲଭୀ ତୁ ଗୋ ଅଟୁ ମାହେଶ୍ୱରୀ ।
ସକଳ ବିଦ୍ୟାରେ ତୁହି ପୁଣି ଅଧିକାରୀ ॥

**ସରସ୍ୱତୀଙ୍କ ଉପାସନା ତିଥି :**

ଭାରତରେ ସର୍ବତ୍ର ମାଘଶୁକ୍ଳ ପଞ୍ଚମୀ ଦିନ ସରସ୍ୱତୀ ପୂଜା ଅନୁଷ୍ଠିତ ହୁଏ । ବସନ୍ତର ଅୟମାରମ୍ଭ । ଧରଣୀ ରାଣୀ ସକଳ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣା । ମଙ୍ଗଳମୟୀ ଆଦ୍ୟାଶକ୍ତିର ଚରଣ ତଳେ ପୂଜା ବାଢେ ଧରିତ୍ରୀ । ଏହି ତିଥି ବସନ୍ତ ପଞ୍ଚମୀ ନାମରେ ପ୍ରସିଦ୍ଧ । ଶ୍ରୀର ଅର୍ଥ ଲକ୍ଷ୍ମୀ ଓ ସରସ୍ୱତୀ । ବୈଦିକ ଯୁଗରେ 'ଶ୍ରୀ' ଓ 'ଲକ୍ଷ୍ମୀ' ପୃଥକ୍ ଦେବୀ ଥିଲେ । ସେମାନେ ଥିଲେ ଆଦିତ୍ୟଙ୍କର ଦୁଇ ପତ୍ନୀ । ମହାଭାରତ ଅନୁସାରେ ଶ୍ରୀପଞ୍ଚମୀ ଦିନ ସ୍କନ୍ଦଙ୍କ ସହିତ ଲକ୍ଷ୍ମୀଙ୍କର ପରିଣୟ ହୋଇଥିଲା । ତେଣୁ ଏହାକୁ ଲକ୍ଷ୍ମୀପଞ୍ଚମୀ ବୋଲି ମଧ୍ୟ କୁହାଯାଏ । ଷଷ୍ଠ ଶତାବ୍ଦୀର ଅମରସିଂହଙ୍କ ପର୍ଯ୍ୟନ୍ତ 'ଶ୍ରୀ' ଅର୍ଥ ସରସ୍ୱତୀ ନଥିଲା କିନ୍ତୁ ପରବର୍ତ୍ତୀ ଶବ୍ଦକୋଷ ପ୍ରଣେତାଗଣ ସରସ୍ୱତୀଙ୍କ ନାମ ପର୍ଯ୍ୟାୟରେ ଶ୍ରୀଙ୍କୁ ଅନ୍ତର୍ଭୁକ୍ତ କଲେ । ଆର୍ଯ୍ୟ ବ୍ୟାଡ଼ି ନିଜର ପ୍ରସିଦ୍ଧ କୋଷରେ ସ୍ପଷ୍ଟ ରୂପରେ ନିର୍ଦ୍ଦିଷ୍ଟ କରି କହିଛନ୍ତି ଯେ ଶ୍ରୀ ଶବ୍ଦ ଲକ୍ଷ୍ମୀ, ସରସ୍ୱତୀ, ବୁଦ୍ଧି, ଐଶ୍ୱର୍ଯ୍ୟ, ଅର୍ଥ, ଧର୍ମାଦି ପୁରୁଷାର୍ଥ, ଅଣିମାଦି ସିଦ୍ଧି, ସୌନ୍ଦର୍ଯ୍ୟ ତଥା ମାଙ୍ଗଳିକ ଉପକରଣମାନ ଏବଂ ବେଶ ରଚନା–ଏହି ଅର୍ଥମାନଙ୍କରେ ପ୍ରଯୁକ୍ତ ହୁଏ :

ଲକ୍ଷ୍ମୀଃ ସରସ୍ୱତୀ ଧୀଃ ତ୍ରିବର୍ଗ ସମ୍ପଦ୍ ବିଭୂତି ଶୋଭାସୁ ।
ଉପକରଣ–ବେଶ ରଚନା ବିଧାସୁଚ ଶ୍ରୀରିତି ପ୍ରଥିତା ॥

ଧର୍ମଶାସ୍ତ୍ରକାରମାନେ ମଧ୍ୟ ଶ୍ରୀଙ୍କୁ ସରସ୍ୱତୀ ରୂପେ ଗ୍ରହଣ କରିଥିବାର ଜଣାଯାଏ ।

**ମାଘ ମାସ ଶୁକ୍ଳପଞ୍ଚମୀ ତିଥି ସରସ୍ୱତୀଙ୍କ ଜନ୍ମତିଥି:**

ମାଘ ମାସ ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ଓ ବିଦ୍ୟାରମ୍ଭରେ ତୁମକୁ ଦେବ ସିଦ୍ଧ ଓ ମୁମୁକ୍ଷୁମାନେ ଆନନ୍ଦରେ ପୂଜା କରିବେ । ସମସ୍ତ ସନ୍ଥ ଯୋଗୀ ନାଗ ଗନ୍ଧର୍ବ ରାକ୍ଷସ ଗନ୍ଧଚନ୍ଦନରେ ଚର୍ଚ୍ଚିତ କରି ପୂଜା, ସ୍ତୁତି ଓ ଧ୍ୟାନ କରିବେ ବୋଲି ଶ୍ରୀକୃଷ୍ଣ ସରସ୍ୱତୀଙ୍କୁ

କହିଥିଲେ । ଯର୍ଜୁବେଦ ଅନୁଯାୟୀ ପ୍ରାଚୀନ କାଳରେ କୃଷ୍ଣ ନବମୀ ତିଥିରେ ଏବଂ ଶତପଥ ବ୍ରାହ୍ମଣ ଅନୁସାରେ ପୂର୍ଣ୍ଣିମା ଦିନ ସରସ୍ଵତୀଙ୍କ ପୂଜା କରାଯାଉଥିଲା । 'ରୁଦ୍ରଯାମଳ' ଗ୍ରନ୍ଥ ଅନୁସାରେ ଆଶ୍ୱିନ ମାସ ଶୁକ୍ଳପକ୍ଷ ମୂଳା ନକ୍ଷତ୍ରରେ ସରସ୍ଵତୀ ପୂଜା ଅନୁଷ୍ଠିତ ହେଉଥିଲା । କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ବ୍ରହ୍ମବୈବର୍ତ୍ତ ପୁରାଣର ଉଲ୍ଲେଖ ଅନୁସରଣ କରାଯାଉଛି । ୧୦୫୫ ଖ୍ରୀଷ୍ଟାବ୍ଦର ଭୋଜଦେବଙ୍କ ଭୁଜବଳିବନ୍ଧ ଗ୍ରନ୍ଥ ଅନୁସାରେ ମାଘ ଶୁକ୍ଳ ପଞ୍ଚମୀ ଦିନ ଲକ୍ଷ୍ମୀ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ୧୩୫୦ ଖ୍ରୀଷ୍ଟାବ୍ଦରେ ସ୍ମୃତିକାର ବୃହସ୍ପତି ସୂରୀ କହନ୍ତି–ମାଘ ଶୁକ୍ଳ ପଞ୍ଚମୀରେ ସରସ୍ଵତୀ ପୂଜା କରଣୀୟ :

ପଞ୍ଚମ୍ୟାଂ କୁନ୍ଦକୁସୁମୈଃ ପୂଜ୍ୟା କୌନ୍ଦୀ ସମୃଦ୍ଧୟେ ।

ଏଠାରେ କୌନ୍ଦୀ ଓ ଶ୍ରୀପଦ ଦୁଇଟିକୁ ସରସ୍ଵତୀ ଅର୍ଥରେ ଗ୍ରହଣ କରାଯାଇଛି । ବିଦ୍ୟାର୍ଥୀମାନେ ଦିବା ଭାଗରେ ଓ ସମୃଦ୍ଧିକାମୀମାନେ ସନ୍ଧ୍ୟାରେ ସରସ୍ଵତୀ ପୂଜା କରିବା ନିମିତ୍ତ ଉପଦେଶ ଦିଆଯାଇଛି । ୧୭୬୮ ଖ୍ରୀଷ୍ଟାବ୍ଦରେ ଗୋପୀନାଥ ତୁଙ୍ଗ ତାଙ୍କର 'ବୀରସର୍ବସ୍ୱ' ଗ୍ରନ୍ଥରେ ଲେଖିଛନ୍ତି ମାଘମାସ ଶୁକ୍ଳ ପକ୍ଷ ପଞ୍ଚମୀ ତିଥି ସରସ୍ଵତୀଙ୍କ ଅତୀବ ପ୍ରିୟ । ଏହି ତିଥିର ପୂର୍ବାହ୍ଣରେ ସରସ୍ଵତୀଙ୍କ ପୂଜନୋତ୍ସବ(ସାରସ୍ୱତୋତ୍ସବ) କରିବା ବିଧେୟ । କୁହାଯାଇଛି ମାଘମାସ ଶୁକ୍ଳପଞ୍ଚମୀରେ ସରସ୍ଵତୀଙ୍କ ପୂଜନ କଲେ ଉତ୍ତମ ସୌଭାଗ୍ୟ ପ୍ରାପ୍ତ ହୋଇଥାଏ । ଏହି ତିଥିରେ ରତି ଓ କାମଦେବଙ୍କ ପୂଜା କରାଯାଏ । ସରସ୍ଵତୀଙ୍କୁ ଶ୍ରୀକୃଷ୍ଣ ଏହା କହି ସାରିଲା ପରେ ସେହି ଦେବୀଙ୍କୁ ସେ ନିଜେ ପୂଜା କଲେ । ତା'ପରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର, ଅନନ୍ତ, ଧର୍ମ ସନକ ଆଦି ସର୍ବ ଲୋକ ଦ୍ୱାରା ସରସ୍ଵତୀ ପୂଜିତ ହେବାକୁ ଲାଗିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗୁପ୍ତଯୁଗରେ ଭାରତର ପୁରପଲ୍ଲୀ ସର୍ବତ୍ର ମାଘଶୁକ୍ଳ ପଞ୍ଚମୀ ତିଥିରେ ସରସ୍ଵତୀଙ୍କ ସାର୍ବଜନୀନ ଉପାସନା ସଂଘଟିତ ହୋଇ ସେହି ପବିତ୍ର ତିଥି ଶ୍ରୀପଞ୍ଚମୀ ନାମରେ ପ୍ରସିଦ୍ଧି ଲାଭ କଲା ।

କାଣ୍ୱଶାଖାରେ କୁହାଯାଇଥିବା ପଦ୍ଧତି ଅନୁସାରେ ଜଗତମାତା ସରସ୍ଵତୀଙ୍କ ପୂଜାବିଧାନ ସମ୍ପନ୍ନ କରାଯାଇଥାଏ । ମାଘଶୁକ୍ଳ ପଞ୍ଚମୀ ଦିନ ପୂର୍ବାହ୍ଣରେ ସଂଯମ ଆଚରଣ ପୂର୍ବକ ପବିତ୍ର ରହିବ । ସ୍ନାନ ସାରି ନିତ୍ୟକ୍ରିୟା କରି ଭକ୍ତିରେ କଳସ ସ୍ଥାପନ କରି ଷଡ଼୍ ଦେବତାଙ୍କ ସହିତ ନୈବେଦ୍ୟ ଅର୍ପଣ କରି ଷୋଡ଼ଶ ଉପଚାରରେ ସରସ୍ଵତୀଙ୍କ ପୂଜା କରିବ । ପୂର୍ବାହ୍ଣରେ ଓ କୁନ୍ଦପୁଷ୍ପରେ ସରସ୍ଵତୀଙ୍କ ପୂଜା ହୋଇଥାଏ । ମାଘମାସର ଶୁକ୍ଳ ପକ୍ଷର ଯେଉଁ ପଞ୍ଚମୀ ତିଥି ତାହା ସରସ୍ଵତୀଙ୍କ ଅତି ପ୍ରିୟ । କେତେକ ଯୁକ୍ତି ବାଢ଼ନ୍ତି ମା' ସରସ୍ଵତୀ କୁନ୍ଦ ପୁଷ୍ପରେ ପୂଜିତ ହେବାର ନିର୍ଦ୍ଦେଶ ଅଛି । ଏହି ପୁଷ୍ପ କେବଳ ପ୍ରଦୋଷରେ ପ୍ରସ୍ଫୁଟିତ ହୁଏ, ଏଣୁ କେବଳ ଅପରାହ୍ଣରେ ପୂଜା କରିବା ବିଧେୟ । କିନ୍ତୁ ଅନ୍ୟ ପକ୍ଷରେ ଶ୍ରୀମନ୍ଦିର ପଣ୍ଡିତମାନେ ମତ ଦେଇ କହନ୍ତି: ପୌର୍ବାହ୍ଣିକା ସ୍ତୁତିଥୟୋ ଦେବାକାର୍ଯ୍ୟେ ଫଳପ୍ରଦଃ ! ଶାସ୍ତ୍ର ମତରେ ଦେବକାର୍ଯ୍ୟମାନଙ୍କରେ ତିଥିମାନଙ୍କର ପୂର୍ବାହ୍ଣ ଗ୍ରହଣୀୟ । ଏଣୁ ଯେଉଁ ଦିନ ପୂର୍ବାହ୍ଣକୁ ପଞ୍ଚମୀ ପରିବ୍ୟାପ୍ତ ଥିବ ସେହି ଦିନ ହିଁ ପୂଜା କରାଯିବା ଉଚିତ । କାରଣ ସେମାନଙ୍କ ମତରେ କୁନ୍ଦପୁଷ୍ପ ସନ୍ଧ୍ୟାରେ ତୋଳା ଗଲେ ସୁଦ୍ଧା ସକାଳେ ଦେବୀଙ୍କ ଗଳାମାଳା ହେବାକୁ ଅନୁପଯୁକ୍ତ ବା ଦୋଷାବହ ନୁହେଁ ।

ସରସ୍ଵତୀଙ୍କ ପୂଜା ପଦ୍ଧତି : ମାଘଶୁକ୍ଳ ପଞ୍ଚମୀ ଦିବସର ସୂର୍ଯ୍ୟୋଦୟ ପୂର୍ବରୁ ବିଦ୍ୟାର୍ଥୀମାନେ ଉଠି ଫୁଲ ତୋଳିବାରେ ଲାଗି ପଡ଼ନ୍ତି । ଗାଧୋଇ ପାଧୋଇ ଉପବାସ ରହିବା ସଙ୍ଗେ ସଙ୍ଗେ ନବ ବସ୍ତ୍ର ପରିଧାନ କରନ୍ତି । ମାଳା ଗୁନ୍ଥି ନିଜ ନିଜ ଘରେ ଓ ବିଦ୍ୟାଳୟମାନଙ୍କରେ ମା' ସରସ୍ଵତୀଙ୍କର ପୂଜା କରି ପୁଷ୍ପାଞ୍ଜଳି ପ୍ରଦାନ କରନ୍ତି । ତା' ପରେ ପଞ୍ଚାମୃତ ଓ ଭୋଗ ସେବନ କରନ୍ତି । ଗ୍ରାମାଞ୍ଚଳରେ ପୂର୍ବ କାଳରେ ବ୍ରାହ୍ମଣମାନେ ତାମ୍ର ପାତ୍ରରେ ନଡ଼ିଆ ଗୁଆକୁ ସରସ୍ଵତୀ କରି ବା ସରସ୍ଵତୀଙ୍କର ଫଟୋଚିତ୍ର ରଖି ଦ୍ୱାର ଦ୍ୱାର ବୁଲି ପୂଜାର୍ଚ୍ଚନା କରାଉଥିଲେ । ପରେ ପରେ ଓଡ଼ିଶାରେ ଚାରୁକଳା ଓ ମୃଣ୍ମୟ ଶିଳ୍ପର ବିକାଶ ସଙ୍ଗେ ସଙ୍ଗେ ପରିବାର, ବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ, କ୍ଲବ ଓ ଆଖଡ଼ା ଘରମାନଙ୍କରେ ମୂର୍ତ୍ତି ପୂଜା କରାଯାଉଅଛି । କାଣ୍ୱଶାଖାରେ ନାରଦ ଏହି ପୂଜା ବିଧାନ ସମ୍ପର୍କରେ ପଚାରନ୍ତେ ଶ୍ରୀନାରାୟଣ କହନ୍ତି :

ମାଘସ୍ୟ ଶୁକ୍ଳ ପଞ୍ଚମ୍ୟାଂ ବିଦ୍ୟାରମ୍ଭେ ଦିନେଽପିଚ ।<br>
ପୂର୍ବେଽହ୍ନି ସଂଯମଂ ତତ୍ରାହ୍ନି ସଂଯତଃ ଶୁଚିଃ ॥<br>
ସ୍ନାତ୍ୱା ନିତ୍ୟକ୍ରିୟାଂ କୃତ୍ୱା ଘଟଂ ସଂସ୍ଥାପ୍ୟ ଭକ୍ତିତଃ ।<br>
ସଂପୂଜ୍ୟ ଦେବଷଟ୍‌କଞ୍ଚ ନୈବେଦ୍ୟାଦିଭିରେବଚ ॥

ସରସ୍ଵତୀ ହେଉଛନ୍ତି କଣ୍ଠବାସିନୀ । ଜିହ୍ୱାବାସିନୀ । ବୁଧଜନନୀ । କବି । ଜିହ୍ୱାଗ୍ରବାସିନୀ । ଗଦ୍ୟପଦ୍ୟବାସିନୀ । ପୁସ୍ତକବାସିନୀ ଓ ଗ୍ରନ୍ଥବୀଜ ରୂପା । ତାଙ୍କର ପ୍ରସାଦ ହେଲେ ମୂର୍ଖ ପଣ୍ଡିତ ହୁଏ । ସରସ୍ଵତୀଙ୍କ କବଚ ପାଠ କଲେ ଜଣେ ଦେବଗୁରୁ ବୃହସ୍ପତିଙ୍କ ପରି ବକ୍ତା, ମହାବାଗ୍ମୀ, କବୀନ୍ଦ୍ର ଓ ତ୍ରୈଲୋକ୍ୟ ବିଜୟୀ ହୋଇଥାଏ । କବି ନାରାୟଣ କହିଛନ୍ତି :

ଆଦୌ ସରସ୍ୱତୀ ପୂଜ୍ୟା ଶ୍ରୀକୃଷ୍ଣେନ ବିନିର୍ମିତା ।
ଯତ୍ ପ୍ରସାଦାତ୍ ମୁନିଶ୍ରେଷ୍ଠ ମୂର୍ଖୋ ଭବତି ପଣ୍ଡିତଃ ॥
ଯଦି ସ୍ୟାତ୍ ସିଦ୍ଧକକ୍ଟୁ ବୃହସ୍ପତିସମ ଭବେତ୍ ।
ମହାବାଗ୍ମୀ କବୀନ୍ଦ୍ରଚା ତ୍ରୈଲୋକ୍ୟବିଜୟୀ ଭବେତ୍ ॥

**ନଷ୍ଟସ୍ମୃତି ଯାଜ୍ଞବଲ୍କ୍ୟଙ୍କ ସରସ୍ୱତୀ ସ୍ତୁତିରେ ବିଶେଷ ଗୁଣର ପରିପ୍ରକାଶ :**

ପୂର୍ବୋକ୍ତ କଥାକୁ ପରିପୁଷ୍ଟ କରିବାକୁ ଯାଇ ନାରାୟଣ ମହାମୁନି ଯାଜ୍ଞବଲ୍କ୍ୟଙ୍କ କଥା ଉଦ୍ଧାର କରିଛନ୍ତି । ମହାମୁନି ଯାଜ୍ଞବଲ୍କ୍ୟ ଗୁରୁଙ୍କ ଅଭିଶାପରୁ ଅଧୀତ ବିଦ୍ୟା ହରାଇ ବସିଲେ । ସେ ଦୁଃଖିତ ହୋଇ...ସୂର୍ଯ୍ୟଙ୍କ ପାଖକୁ ଗଲେ । ତାଙ୍କୁ ସ୍ତୁତି କଲେ । ବାରମ୍ବାର କାନ୍ଦିଲେ । ସୂର୍ଯ୍ୟ ସ୍ମୃତି ଫେରି ପାଇବା ଉଦ୍ଦେଶ୍ୟରେ ବାଗ୍‌ଦେବୀଙ୍କୁ ଭକ୍ତିରେ ସ୍ତୁତି କରିବାକୁ ପରାମର୍ଶ ଦେଲେ । ଯାଜ୍ଞବଲ୍କ୍ୟ ସ୍ନାନ କରି ନମ୍ର ଭାବରେ ଦେବୀଙ୍କୁ ସ୍ତୁତି କଲେ : ହେ ଜଗତର ମାତା ! ତେଜ ହରଣ ହୋଇଥିବା ମୋତେ କୃପା କର । ଗୁରୁ ଶାପରୁ ମୋର ସ୍ମୃତି ନଷ୍ଟ ହୋଇଯାଇଛି । ମୁଁ ବିଦ୍ୟାହୀନ ହୋଇ ବଡ଼ ଦୁଃଖିତ । ହେ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ! ମୋତେ ସ୍ମୃତି ଫେରାଇ ଦିଅ । ମୋତେ ବିଦ୍ୟା ଦିଅ । ମୋତେ ଜ୍ଞାନ ଦିଅ । ମୋତେ କବିତା ଦିଅ । ପ୍ରତିଷ୍ଠା ଦିଅ । ଶିଷ୍ୟକୁ ବୁଝାଇଲା ଭଳି ଶକ୍ତି ଦିଅ । ମୋତେ ଗ୍ରନ୍ଥ ରଚନା କରିବାର ଶକ୍ତି ଦିଅ । ସଜ୍ଜନମାନଙ୍କର ସଭାରେ ଆବଶ୍ୟକ ହେଉଥିବା ପ୍ରତିଭା ଦିଅ । ଜଗତ କଲ୍ୟାଣକାରୀ ବିଚାର କ୍ଷମତା ଦିଅ । ତୁମେ ଜ୍ୟୋତିସ୍ୱରୂପା । ସନାତନୀ । ବ୍ରହ୍ମରୂପିଣୀ । ସକଳ ପ୍ରକାର ବିଦ୍ୟାର ଅଧିଦେବୀ । ତୁମେ ବାଣୀରୂପା । ତୁମ ବିନା ଏ ସମଗ୍ର ଜୀବନ ଥାଉ ଥାଉ ମୂକ ହୋଇ ମୃତ ପ୍ରାୟ ହୋଇଯାଏ । ତୁମେ ମାତ୍ରାର ଦେବୀ । ଅକ୍ଷରର ଦେବୀ । ତୁମେ ବିସର୍ଗ ଓ ବିନ୍ଦୁରୂପା । ତୁମେ ପଦବ୍ୟାଖ୍ୟାର୍ଥ ସ୍ୱରୂପା । ବକ୍ତା କହିବାକୁ ଇଚ୍ଛା କରୁଥିବା ଅପ୍ରମେୟ ଶବ୍ଦରେ ତୁମେ ଆବିର୍ଭୂତା ହୋଇଥାଅ । ତୁମେ ଗଦ୍ୟ ପଦ୍ୟାତ୍ମିକା । ତୁମ ବିନା କେହି ସଂଖ୍ୟା ଗଣନା କରି ପାରେ ନାହିଁ । ତୁମେ ତ୍ରିକାଳରୂପିଣୀ । ତୁମେ ହିମ, ଚନ୍ଦନ, କୁନ୍ଦ, କୁମୁଦ ଓ ପଦ୍ମ ପରି ଧବଳ ବର୍ଣ୍ଣା । ତୁମେ ଶାସ୍ତ୍ର ଓ ଶବ୍ଦର ବ୍ୟାଖ୍ୟା ସ୍ୱରୂପା ତଥା ବ୍ୟାଖ୍ୟାର ଅଧିଷ୍ଠାତ୍ରୀ ଦେବୀ । ତୁମେ ଭ୍ରମରୁ ସିଦ୍ଧାନ୍ତକୁ ନେଇଥାଅ । ବାସ୍ତବରେ ତୁମେ ହେଉଛ ସ୍ମୃତିଶକ୍ତି, ଜ୍ଞାନଶକ୍ତି, ପ୍ରତିଭାଶକ୍ତି, କଳ୍ପନା ଶକ୍ତି ଓ ସର୍ବଶେଷରେ ବୁଦ୍ଧିଶକ୍ତି :

ସ୍ମୃତିଶକ୍ତିର୍ଜ୍ଞାନଶକ୍ତିର୍ବୁଦ୍ଧିଶକ୍ତିଃ ସ୍ୱରୂପିଣୀ ।
ପ୍ରତିଭା–କଳ୍ପନା ଶକ୍ତି ର୍ଯାଚ ତସ୍ୟୈ ନମୋ ନମଃ ॥

– ବ୍ରହ୍ମବୈବର୍ତ୍ତ ପୁରା. ଅଧ୍ୟାୟ.୫, ଶ୍ଳୋକ .୧–୩୫

ଶ୍ରୀପଦ୍ମ ପୁରାଣରେ ଦିବ୍ୟଜ୍ଞାନ ପ୍ରଦାୟକ ସରସ୍ୱତୀ ଅଷ୍ଟକରେ ବୃହସ୍ପତିଙ୍କୁ ସରସ୍ୱତୀ ବର ପ୍ରଦାନ କରି କହିଛନ୍ତି :

ହନ୍ତ ତେ ନିର୍ମଳଂ ଜ୍ଞାନଂ କୁମତିଧ୍ୱଂସକାରମ୍ ।

ଅର୍ଥାତ୍ ହେ ବୃହସ୍ପତି ! ତୁମେ ମୋର ଆଶିଷରୁ ନିର୍ମଳ ଜ୍ଞାନ ଲାଭ କର । ସେହି ଜ୍ଞାନ ଦୁଷ୍ଟବୁଦ୍ଧି ବିନାଶ କରିବାରେ ସହାୟକ ହେବ । ତାଙ୍କୁ ସ୍ତୁତି କରାଯାଇଛି : ମାତର୍ମାତଃ ନମସ୍ତେ ଦହ ଦହ ଜଡ଼ତାଂ ଦେହି ବୁଦ୍ଧିପ୍ରଶସ୍ତାମ୍ । ଅର୍ଥାତ୍ ହେ ମାତା ସରସ୍ୱତୀ ! ମୁଁ ଆକୁଳ ଭାବରେ ତୁମକୁ ବାରମ୍ବାର ନମନ କରୁଛି ଦୟା କରି ମୋର ଜଡ଼ତାକୁ ଜାଳି ପୋଡ଼ି ପାଉଁଶ କରିଦିଅ । ମୋର ବୁଦ୍ଧିକୁ ଉଜ୍ଜ୍ୱଳ ଓ ପ୍ରଶସ୍ତ କର । ତୁମେ କଲ୍ୟାଣ ଦାୟିନୀ । ତୁମର ଆଶୀର୍ବାଦରୁ ମୋର କଲ୍ୟାଣ ହେଉ । ଶୁଭଙ୍କରୀ ବୁଦ୍ଧି ମୋତେ ଶୀଘ୍ର ପ୍ରଦାନ କର । ତୁମେ ଦ୍ରୁତ ବୁଦ୍ଧିକାରିଣୀ ଅଟ । ସେଥିପାଇଁ ତୁମକୁ ସୁର ଅସୁର ସମସ୍ତେ ଅର୍ଚ୍ଚନା କରିଥାନ୍ତି । ସିଦ୍ଧ ଗନ୍ଧର୍ବମାନେ ସେବା କରିଥାନ୍ତି । ତୁମେ ଯଶ ଦିଅ, କବିତ୍ୱ ଦିଅ :

ବୁଦ୍ଧିଂ ଦେହି ଯଶୋ ଦେହି କବିତ୍ୱଂ ଦେହି ମେ ଦେହି ।
ମୂଢତ୍ୱଂ ହର ମେ ଦେବି ! ତ୍ରାହି ମାଂ ଶରଣଗତମ୍ ॥

–ନୀଳସରସ୍ୱତୀସ୍ତୋତ୍ରମ୍

ମତ୍ସ୍ୟ ପୁରାଣରେ କୁହାଯାଇଛି ଯେ ସମସ୍ତ ବେଦ, ସକଳ ଶାସ୍ତ୍ର, ନୃତ୍ୟ, ଗୀତ ଆଦି ଗାନ୍ଧର୍ବ ବିଦ୍ୟା ହେଉଛି ସରସ୍ୱତୀଙ୍କ ସ୍ୱରୂପ ଓ ଶକ୍ତି । ତାଙ୍କର କରୁଣା ବିନା ସାଧକ ଏ କ୍ଷେତ୍ରରେ ସିଦ୍ଧି ଲାଭ କରି ପାରନ୍ତି ନାହିଁ । ସେହି ମତ୍ସ୍ୟ ପୁରାଣରେ କୁହାଯାଇଛି ଯେ ସରସ୍ୱତୀ କୋଟିଏ ଚନ୍ଦ୍ରଙ୍କ ଧବଳ ବର୍ଣ୍ଣରେ ଝଟକୁଛନ୍ତି । ସେ ଶୁଭ୍ରବର୍ଣ୍ଣା । ସ୍ୱଚ୍ଛ ମାଳା ଓ ବସ୍ତ୍ରରେ ବିଶୋଭିତା । ପଦ୍ମହସ୍ତରେ ମଣିମୟ ଅମୃତ କଳସ 'ସୁଧାକୁଣ୍ଡିକା' ବହନ କରିଛନ୍ତି । ଶ୍ୱେତପଦ୍ମର ମଧ୍ୟ ଭାଗରେ ସେ ପଦ୍ମାସନରେ ଉପବିଷ୍ଟ ହୋଇଛନ୍ତି । ସେ କୁଚ ଭାରରେ ଈଷତ୍ ଆନତ । ସେ ମଧୁର ଓ ମନ୍ଦହାସିନୀ । ସେ ବାଗ୍ ବିଭବ ପ୍ରଦାୟିନୀ । ବିଦ୍ୟୁତ୍ ଜ୍ୟୋତିରେ ତାଙ୍କର ନେତ୍ର ତ୍ରୟ ଉଦ୍ଭାସିତ । ସେ ସୌଭାଗ୍ୟ ଓ ସଂପଦ୍ ପ୍ରଦାନ କରିଥା'ନ୍ତି :

ଶୁଭ୍ରାଂ ସ୍ୱଚ୍ଛବିଲେପମାଲ୍ୟବସନାଂ ଶୀତାଂଶୁଖଣ୍ଡୋଜ୍ୱଳାମ୍
ବ୍ୟାଖ୍ୟାମକ୍ଷଗୁଣଂ ସୁଧାଢ୍ୟକଳସଂ ବିଦ୍ୟାଞ୍ଚ ହସ୍ତାମ୍ବୁଜୈଃ ।
ବିଭ୍ରାଣାଂ କମଳାସନାଂ କୁ ନତାଂ ବାଗ୍‌ଦେବତାଂ ସସ୍ମିତାଂ
ବନ୍ଦେ ବାଗବିଭବପ୍ରଦାଂ ତ୍ରିନୟନାଂ ସୌଭାଗ୍ୟସଂପଦ୍‌କରୀମ୍ ॥

**ତନ୍ତ୍ର ଗ୍ରନ୍ଥରେ ସରସ୍ୱତୀଙ୍କ ସ୍ୱରୂପ ଓ ଗୁଣ :** ତନ୍ତ୍ରମାନଙ୍କରେ ସରସ୍ୱତୀଙ୍କ ପ୍ରଭାବ ଅପ୍ରତିହତ । ଶ୍ରୀ ଶ୍ରୀଚଣ୍ଡୀରେ ମହାଶକ୍ତିଙ୍କୁ ପ୍ରାର୍ଥନା କରି କୁହାଯାଇଛି :

ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ ।
ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ ॥
ତ୍ୱୟୈକୟା ପୂରିତମମ୍ବୟୈତତ୍ ।
କା ତେ ସ୍ତୁତିଃ ସ୍ତବ୍ୟପରା ପରୋକ୍ତିଃ ॥

ଅର୍ଥାତ୍ ହେ ଦେବୀ ! ଏ ସଂସାରରେ ଯେତେ ପ୍ରକାର ବିଦ୍ୟା ଅଛି ତାହା ସବୁ ତୁମର ରୂପ ଭିନ୍ନ ଅନ୍ୟ କିଛି ନୁହେଁ । ଜଗତରେ ଯେତେ ସବୁ ସ୍ତ୍ରୀଲୋକ ଅଛନ୍ତି ସେମାନେ ସମସ୍ତେ ତୁମର ହିଁ ମୂର୍ତ୍ତି ଅଟନ୍ତି । ହେ ଜଗଦମ୍ବା ! ଏକମାତ୍ର ତୁମ ଦ୍ୱାରା ହିଁ ଏହି ବିଶ୍ୱ ପରିବ୍ୟାପ୍ତ ହୋଇଛି । ତୁମର ସ୍ତୁତି କ'ଣ ବା ଆମେ କରି ପାରିବୁ ? ତୁମେ ତ ସ୍ତବନ ଯୋଗ୍ୟ ପଦାର୍ଥଗୁଡ଼ିକର ଊର୍ଦ୍ଧ୍ୱରେ ଏବଂ ପରା ବାଣୀ ଅଟ ।

ପ୍ରାଚୀନ ଋଷି–ମହର୍ଷି ସମସ୍ତ ରାଗ–ଦ୍ୱେଷ, ଈର୍ଷା, ଲୋଭ, ମୋହ, ମଦ ଆଦି ଉପରେ ବିଜୟ ପ୍ରାପ୍ତି ପାଇଁ ଅନ୍ତଃକରଣକୁ ଅତ୍ୟନ୍ତ ଶୁଦ୍ଧ ଏବଂ ନିର୍ମଳ କରି ମୋକ୍ଷ ଅଭିଳାଷ ରଖି ଯାହାଙ୍କର ଅହର୍ନିଶ ସାଧନା କରନ୍ତି ତୁମେ ସେହି ମୋକ୍ଷ ପ୍ରାପ୍ତିର ସାଧନ ଅଟ । ତୁମେ ଅଚିନ୍ତ୍ୟ ମହାବ୍ରତ ସ୍ୱରୂପା । ବ୍ରହ୍ମ ବିଦ୍ୟା ସ୍ୱରୂପିଣୀ । ତୁମେ ଐଶ୍ୱର୍ଯ୍ୟ ଆଦି ଷଡ଼୍ ଭଗଯୁକ୍ତ ହୋଇଥିବାରୁ ଭଗବତୀ । ସାଧକମାନେ ତୁମର ସାନ୍ନିଧ୍ୟ ଲାଭ କରି ଜୀବନ୍ମୁକ୍ତିର–ସୁଖ ପ୍ରତ୍ୟକ୍ଷ ଅନୁଭବ କରୁଥିଲେ । ମୃତ୍ୟୁ ପରେ ବିଦେହମୁକ୍ତି ତଥା କୈବଲ୍ୟ ପ୍ରାପ୍ତ କରିବାରେ ସମର୍ଥ ହେଉଥିଲେ :

ଯା ମୁକ୍ତିହେତୁରବିଚିନ୍ତ୍ୟ ମହାବ୍ରତା ତ୍ୱ–
ମଭ୍ୟସ୍ୟସେ ସୁନିୟତେନ୍ଦ୍ରିୟତତ୍ତ୍ୱ ସାରୈଃ
ମୋକ୍ଷାର୍ଥିଭିର୍ମୁନିଭିରସ୍ତ ସମସ୍ତଦୋଷୈ–
ର୍ବିଦ୍ୟାସି ସା ଭଗବତୀ ପରମା ହି ଦେବୀ ॥
–ଶ୍ରୀଦୁର୍ଗା ସପ୍ତଶତୀ, ୪/୯

ପ୍ରୋକ୍ତ ଅଧ୍ୟାୟରେ ପରବର୍ତ୍ତୀ ଶ୍ଳୋକରେ ଦେବୀ ଶବ୍ଦାତ୍ମିକା ତିନି ବେଦଯୁକ୍ତା ତ୍ରୟୀ ଓ ବିଶ୍ୱର ବାର୍ତ୍ତା ବୋଲି ଉଲ୍ଲେଖ କରାଯାଇଛି । ଏକାଦଶ ଶ୍ଳୋକରେ କୁହାଯାଇଛି : ମେଧାସି ଦେବି ବିଦିତାଖିଳଶାସ୍ତ୍ରସାରା । ଅର୍ଥାତ୍ ହେ ଦେବୀ ! ଯାହାଙ୍କୁ ସମସ୍ତ ଶାସ୍ତ୍ରର ସାର ଜ୍ଞାତ ଅଟେ ସେହି ମେଧାଶକ୍ତି ଆପଣ ହିଁ ଅଟନ୍ତି ।

ଉକ୍ତ ଗ୍ରନ୍ଥର ପଞ୍ଚମ ଅଧ୍ୟାୟରେ ଦେବୀ ଚେତନା, ବୁଦ୍ଧି, କାନ୍ତି, ଲକ୍ଷ୍ମୀ, ସ୍ମୃତି ଓ ବ୍ୟାପ୍ତି ରୂପା ବୋଲି ବର୍ଣ୍ଣନାରୁ ସରସ୍ୱତୀ ଦୁର୍ଗାଙ୍କଠାରୁ ଅଭିନ୍ନା ବୋଲି ପ୍ରତିପାଦିତ ହୋଇଛି । ଦେବୀ ମାହାତ୍ମ୍ୟରେ ଦୁର୍ଗା ସରସ୍ୱତୀ ନାମରେ ଅଭିହିତା । ସେ ଅଷ୍ଟଭୁଜା । ମହାସରସ୍ୱତୀଙ୍କ ଦକ୍ଷିଣ ହସ୍ତରେ ଘଣ୍ଟା ଶୂଳ ଓ ଶଙ୍ଖ ବାମ ହସ୍ତରେ ମୂଷଳ, ଚକ୍ର, ଧନୁ ଓ ସାୟକ ଶୋଭାପାଏ । ସେ ମାତୃକାମୂର୍ତ୍ତି ରୂପେ ବର୍ଣ୍ଣିତା । ଆମ ଶାସ୍ତ୍ରରେ ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ– ଏହି ତ୍ରିଶକ୍ତିଙ୍କ ସମନ୍ୱିତ ଶକ୍ତିକୁ ମହାମାୟା ବା ଆଦ୍ୟାଶକ୍ତି ରୂପରେ ବର୍ଣ୍ଣନା କରାଯାଇଛି । ଶକ୍ତି ତତ୍ତ୍ୱ ପ୍ରତି ଦୃଷ୍ଟିପାତ କଲେ ଜଣାଯାଏ ଯେ ସରସ୍ୱତୀ ମହାଶକ୍ତିଙ୍କର ଅଂଶ ବିଶେଷ । ମହାଲକ୍ଷ୍ମୀ ଧନଧାନ୍ୟର, ମହାସରସ୍ୱତୀ ସକଳ ବିଦ୍ୟା ଓ ସକଳ ଜ୍ଞାନ ବିବେକର ଏବଂ ମହାକାଳୀ ସକଳ ଶକ୍ତିର ଉତ୍ସ ତଥା ପ୍ରକାଶକ ରୂପେ ପରିକଳ୍ପିତ । ହିନ୍ଦୁତନ୍ତ୍ର ବର୍ଣ୍ଣିତ ଅଷ୍ଟତାରା ମଧ୍ୟରେ ସରସ୍ୱତୀ ଅଛନ୍ତି :

ତାରା ଚୋଗ୍ରା ମହୋଗ୍ରାଚ ବଜ୍ରକାଳୀ ସରସ୍ୱତୀ ।
କାମେଶ୍ୱରୀଚଚାମୁଣ୍ଡା ଇତ୍ୟଷ୍ଟୌ ତାରିଣୀଗଣାଃ ॥

ଅନ୍ୟ ତନ୍ତ୍ରଗ୍ରନ୍ଥରେ ସେ ଯଜ୍ଞୋପବିତ ଧାରିଣୀ । ଜଟାମୁକୁଟମଣ୍ଡିତା ରତ୍ନ କୁଣ୍ଡଳ ଭୂଷିତା ଓ କ୍ଷୀର ପରି ଧବଳବର୍ଣ୍ଣା । ସଂକ୍ଷେପରେ କହିଲେ ତନ୍ତ୍ର ଯୁଗରେ ସରସ୍ୱତୀ ଶୁଦ୍ଧସତ୍ତ୍ୱମୟୀ ବୈଷ୍ଣବୀ ଶକ୍ତିର ମାନ୍ୟତା ଲାଭ କରି ମହାସରସ୍ୱତୀ ରୂପେ ପରିଚିତ ହୋଇଥିଲେ । ସଚ୍ଚିଦାନନ୍ଦମୟୀ ସରସ୍ୱତୀ ମହାକାଳୀ ଓ ମହାଲକ୍ଷ୍ମୀଙ୍କଠାରୁ ଅଭିନ୍ନ ନଥିଲେ । ଲୋକକଲ୍ୟାଣୀ ସରସ୍ୱତୀ ଶାକ୍ତ ସାହିତ୍ୟରେ ଉଚ୍ଚ ଆସନରେ ଅଧିଷ୍ଠିତ । ତାନ୍ତ୍ରିକ ବିଚାର ଧାରାରେ ସେ ପରମ ବିଦ୍ୟାତତ୍ତ୍ୱ ରୂପେ ପରିକଳ୍ପିତା । ବିକାଶୋନ୍ମୁଖୀ ଜ୍ଞାନର ପରିପୂର୍ଣ୍ଣତା ପାଇଁ ସେ ବୀଜମନ୍ତ୍ର ।

**ସରସ୍ୱତୀଙ୍କ ନବ ଶକ୍ତି :** ପୁରାଣକାର ଋଷିମହର୍ଷିଙ୍କ ହୃଦୟରେ ସରସ୍ୱତୀଙ୍କ ଯେଉଁ ନବଶକ୍ତିର କଳ୍ପନା କରାଯାଇଛି ତାହା ଅବଶ୍ୟ ଅନୁଶୀଳନ ଯୋଗ୍ୟ । ସେ ହେଉଛନ୍ତି ମେଧା (ବୋଧଶକ୍ତି), ପ୍ରଜ୍ଞା(ପ୍ରୟୋଗ ହୋଇଥିବା ବିଦ୍ୟାର ସଫଳ ଅନୁଭୂତି), ପ୍ରଭା (ଉତ୍କୃଷ୍ଟ ଜ୍ୟୋତି ବା ଦିବ୍ୟ ଆଲୋକରେ ନୂତନ ଭାବରେ ଦେଖିବା), ବିଦ୍ୟା (ଯାହାଦ୍ୱାରା ବସ୍ତୁର ସ୍ୱରୂପ ବିଷୟରେ ଅବଗତି/ ଜାଣି ହୁଏ), ଧୀ(ଅନୁଭବ ଶକ୍ତି), ଧୃତି(ସୁଖ ଦୁଃଖାଦି ଦ୍ୱନ୍ଦ୍ୱାତ୍ମକ ସ୍ଥିତିକୁ ସହ୍ୟ କରିବା), ସ୍ମୃତି(ଯାହା ମହନୀୟ ଆଦର ଓ ଶ୍ରଦ୍ଧାର ସହ ତା'ର ଉପାସନା କରିବା), ବୁଦ୍ଧି(ମାନସିକ ସ୍ଥିରତା/ ମାନସିକ ନୈପୁଣ୍ୟ) ଓ ବିଦ୍ୟାର ଶାସନକର୍ତ୍ତ୍ରୀ ଅଧୀଶ୍ୱରୀ ଦେବୀ:

ମେଧା ପ୍ରଜ୍ଞା ପ୍ରଭା ବିଦ୍ୟା ଧୀର୍ଧୃତିସ୍ମୃତିବୁଦ୍ଧୟଃ ।
ବିଦ୍ୟେଶ୍ୱରୀତି ସଂପ୍ରୋକ୍ତା ଭାରତ୍ୟା ନବଶକ୍ତୟଃ ॥
–ପ୍ରପଞ୍ଚସାର–୭–୯

**ବୌଦ୍ଧଧର୍ମରେ ସରସ୍ୱତୀ :**

ହିନ୍ଦୁ ଧର୍ମରେ ଆରମ୍ଭ ହୋଇଥିବା ସରସ୍ୱତୀ ପୂଜା ପରେ ବୌଦ୍ଧ ଧର୍ମରେ ପରିବର୍ତ୍ତିତ ହୋଇଥିଲା । ବୌଦ୍ଧଧର୍ମ ଶାସ୍ତ୍ର 'ସାଧନାମାଳା'ରେ ଉଲ୍ଲେଖ କରାଯାଇଛି, ସରସ୍ୱତୀ ଭକ୍ତମାନଙ୍କୁ ଜ୍ଞାନ ଓ ବୁଦ୍ଧି ପ୍ରଦାନ କରନ୍ତି । ଏହି ଗ୍ରନ୍ଥରେ ସରସ୍ୱତୀ ଚାରୋଟି ରୂପରେ ପୂଜିତା । ସେମାନେ ହେଲେ ମହାସରସ୍ୱତୀ, ବଜ୍ରବୀଣା ସରସ୍ୱତୀ, ବଜ୍ରଶାରଦା ସରସ୍ୱତୀ ଓ ଆର୍ଯ୍ୟବଜ୍ର ସରସ୍ୱତୀ । କେବଳ ଭାରତ କାହିଁକି ଭାରତ ବାହାରେ ତିବ୍ବତ, ଚୀନ୍ ଓ ଜାପାନରେ ମଧ୍ୟ ସରସ୍ୱତୀ ବୌଦ୍ଧଦେବୀ ରୂପେ ବେଶ ଜନାଦୃତ ।

**ଜୈନଗ୍ରନ୍ଥରେ ସରସ୍ୱତୀ ହେଉଛନ୍ତି ଶ୍ରୁତଦେବୀ :** ଜୈନମାନଙ୍କ ସିଦ୍ଧାନ୍ତ ଅନୁସାରେ ଭଗବାନଙ୍କ ମୁଖନିଃସୃତ ବାଣୀ ହେଉଛି ଶ୍ରୁତ । ସେହି ଶ୍ରୁତ ଓ ଶ୍ରୁତି ହେଉଛନ୍ତି ଅଭିନ୍ନ । ତେଣୁ ସରସ୍ୱତୀଙ୍କୁ ସେମାନେ ଶ୍ରୁତାଦେବୀ ବୋଲି କହି ବହୁ ସମ୍ମାନ ଦେଇଥାନ୍ତି । ରାଷ୍ଟ୍ରକୂଟ ବଂଶୀୟ ଜୈନରାଜା ଅମୋଘବର୍ଗଙ୍କ (୭୩୫–୭୯୯ ଖ୍ରୀଷ୍ଟାବ୍ଦ) ଗୁରୁ ଆଚାର୍ଯ୍ୟ ଜିନସେନ ଶ୍ରୀ, ହ୍ରୀ, ଧୃତି, କୀର୍ତ୍ତି, ବୁଦ୍ଧି, ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ଦେବୀ ରୂପେ ପ୍ରତିଷ୍ଠା କରିଥିଲେ । ଜୈନମାନେ ଏମାନଙ୍କୁ ସପ୍ତ କୁମାରୀ ଭାବେ ଗ୍ରହଣ କରିଛନ୍ତି । ଜୈନଧର୍ମରେ ସରସ୍ୱତୀଙ୍କୁ ଗୀର୍ବାଣୀ ଓ ବାଗ୍‌ଦେବୀ ରୂପେ ଆରାଧନା କରାଯାଏ । ଜୈନରତ୍ନସାଗର ଗ୍ରନ୍ଥରେ ସରସ୍ୱତୀଙ୍କୁ ଯେଉଁ ସବୁ ନାମରେ ପ୍ରାର୍ଥନା କରାଯାଇଛି ତନ୍ମଧ୍ୟରେ ମାହାଭାବା, ବରଦା, ବିଶ୍ୱରୂପା, ବିଶାଳାକ୍ଷୀ, ବିଦ୍ୟା, ପରମେଶ୍ୱରୀ ଆଦି ନାମ ଉଲେଖନୀୟ (ଜୈନ ଆଇକୋନୋଗ୍ରାଫି–ପୃ.୧୨୨–୧୩୨) ।

ଜୈନଗ୍ରନ୍ଥରେ ବର୍ଣ୍ଣିତ ସରସ୍ୱତୀଙ୍କ ଦ୍ୱାଦଶ ନାମ ତାଙ୍କର ଦ୍ୱାଦଶଟି ଗୁଣର ପରିଚାୟକ : 'ନିତ୍ୟକର୍ମଦର୍ପଣ' ଗ୍ରନ୍ଥରେ ସରସ୍ୱତୀଙ୍କର ଦ୍ୱାଦଶ ନାମର ଉଲ୍ଲେଖ କରାଯାଇଛି । ସେଗୁଡ଼ିକ ହେଉଛି ଭାରତୀ, ସରସ୍ୱତୀ, ଶାରଦା, ହଂସବାହିନୀ, ଜଗତୀ, ବାଗୀଶ୍ୱରୀ, କୌମାରୀ, ବ୍ରହ୍ମଚାରିଣୀ, ବୁଦ୍ଧିଦାତ୍ରୀ, ବରଦାୟିନୀ, କ୍ଷୁଦ୍ରଘଣ୍ଟା ଓ ଭୁବନେଶ୍ୱରୀ । ପ୍ରୋକ୍ତ ଶ୍ଳୋକଗୁଡ଼ିକରୁ ତାଙ୍କର ରୂପଗୁଣ, ବାହନ, ଆୟୁଧ ଓ କାର୍ଯ୍ୟର ପରିଚୟ ମିଳେ : ସରସ୍ୱତୀ ନମସ୍ତୁତେ ବୀଣାପୁସ୍ତକଧାରିଣୀ । ହଂସବାହସମାଯୁକ୍ତା ବିଦ୍ୟାଦାନକରୀ ଶୁଭା ॥

ପ୍ରଥମଂ ଭାରତୀ ନାମ ଦ୍ୱିତୀୟଂଚ ସରସ୍ୱତୀ ।
ତୃତୀୟଂ ଶାରଦା ଦେବୀଚତୁର୍ଥଂ ହଂସବାହିନୀ ॥
ପଞ୍ଚମଂ ଜଗତୀ ଖ୍ୟାତା ଷଷ୍ଠଂ ବାଗୀଶ୍ୱରୀ ତଥା ।
କୌମାରୀ ସପ୍ତମଂ ପ୍ରୋକ୍ତଂ ଅଷ୍ଟମଂ ବ୍ରହ୍ମାରିଣୀ ॥
ନବମଂ ବୁଦ୍ଧିଦାତ୍ରୀଚ ଦଶମଂ ବରଦାୟିନୀ ।
ଏକାଦଶଂ କ୍ଷଦ୍ରଘଣ୍ଟା ଦ୍ୱାଦଶଂ ଭୁବନେଶ୍ୱରୀ ॥
ବ୍ରାହ୍ମୀ ଦ୍ୱାଦଶ ନାମାନି ତ୍ରିସନ୍ଧ୍ୟଂ ଯଃ ପଠେନ୍ନରଃ ।
ସର୍ବସିଦ୍ଧିକରୀ ତସ୍ୟ ପ୍ରସନ୍ନାଚ ମହେଶ୍ୱରୀ ॥

ଭାରତୀ ପୃଥିବୀର ପାଳୟିତ୍ରୀ, ସରସ୍ୱତୀ ସର୍ବବ୍ୟାପିନୀ, ଶାରଦା ଦୁର୍ଗା, ହଂସବାହିନୀ ଜଡ଼ତା ବିନାଶିନୀ, ଜଗତୀ ସର୍ବଶ୍ରେଷ୍ଠା, ବାଗୀଶ୍ୱରୀ ବଗ୍‌ର ଅଧିଷ୍ଠାତ୍ରୀ ଦେବୀ, କୌମାରୀ ଯୁବଶକ୍ତି ଦାୟିନୀ, ବ୍ରହ୍ମଚାରିଣୀ ଐଶୀଶକ୍ତିପ୍ରଦା, ବୁଦ୍ଧିଦାତ୍ରୀ ବିବେକ ଓ ଜ୍ଞାନଦାତ୍ରୀ, ବରଦାୟିନୀ ଅଖିଳ ସୁଖପ୍ରଦା, କ୍ଷୁଦ୍ରଘଣ୍ଟା ଶତ୍ରୁନାଶିନୀ, ଭୁବନେଶ୍ୱରୀ ସର୍ବସିଦ୍ଧିକରୀ ଦେବୀ ରୂପେ ପରିକଳ୍ପିତା ।

**ସରସ୍ୱତୀଙ୍କ ରୂପ ଓ ଆକାର :** ସିଦ୍ଧସରସ୍ୱତୀ – ଷ୍ଟୋତ୍ରମ୍‌ରେ ସରସ୍ୱତୀଙ୍କ ରୂପଗୁଣର ବିଶଦ୍ ବର୍ଣ୍ଣନା ଦେଖିବାକୁ ମିଳେ । ସେ ଶ୍ୱେତହଂସରେ ଚଢ଼ି ଗଗନରେ ବୁଲୁଥା'ନ୍ତି । ଦକ୍ଷିଣ ହସ୍ତରେ ଧାରଣ କରିଥା'ନ୍ତି ସ୍ୱଚ୍ଛ ସ୍ଫଟିକର ଅକ୍ଷମାଳା । ବାମ ହସ୍ତରେ ଦିବ୍ୟ କନକମୟ ଜ୍ଞାନଗମ୍ୟ ପୁସ୍ତକ ଶୋଭା ପାଉଥାଏ । ସେ ଅଙ୍ଗୁଳିଚାଳନା କରି ତହିଁରୁ ଜାତ ଶାସ୍ତ୍ରବିଜ୍ଞାନ ଶବ୍ଦରେ ବୀଣାବାଦନ ପୂର୍ବକ କ୍ରୀଡ଼ା କରୁଥା'ନ୍ତି । ସେ ଦିବ୍ୟରୂପା, ପଦ୍ମହସ୍ତା । ଭାରତୀ ସବୁବେଳେ ଅତ୍ୟନ୍ତ ପ୍ରସନ୍ନ ଥା'ନ୍ତି ।

ସରସ୍ୱତୀଙ୍କ ମୂର୍ତ୍ତି କଳ୍ପନା ଭିନ୍ନ ଗ୍ରନ୍ଥ ଓ ସଂପ୍ରଦାୟରେ ଭିନ୍ନ ଭିନ୍ନ । କେତେକ ପୁରାଣରେ ତାଙ୍କର ଆଠଟି ବାହୁ ଥିଲାବେଳେ କେତେକ ପୁରାଣରେ ସେ ଚତୁର୍ଭୁଜା ଅଟନ୍ତି । ଦେବୀମାହାତ୍ମ୍ୟରେ ପଞ୍ଚମ ସର୍ଗର ଆରମ୍ଭରେ ଥିବା ଧ୍ୟାନ ଶ୍ଳୋକରୁ ତାଙ୍କର ଆଠଟି ହାତ ଥିବାର ଜଣାଯାଏ । ସେହି ହାତଗୁଡ଼ିକରେ ସେ ଘଣ୍ଟି, ତ୍ରିଶୂଳ, ଲଙ୍ଗଳ ଫାଳ, ଶିଙ୍ଗ, ଧନୁତୀର ଆଦି ଧାରଣ କରିଥା'ନ୍ତି । କିନ୍ତୁ ଅଗ୍ନି ପୁରାଣରେ ପଞ୍ଚାଶତମ ଅଧ୍ୟାୟରେ କୁହାଯାଇଛି ସରସ୍ୱତୀ ମୂର୍ତ୍ତି ହାତରେ ପୁସ୍ତକ, ଜପମାଳା ଓ ବୀଣା ଧାରଣ କରିବାର ବିଧି ଅଟେ । ସେ ଅଭୟଦାୟିନୀ । ଶ୍ୱେତାଙ୍ଗୀ । ଜଡ଼ତା ହାରିଣୀ ଓ ଅନ୍ଧକାର ଅପସାରିଣୀ । ସେ ଆଦ୍ୟା । ଜଗତ୍ ବ୍ୟାପିନୀ । ବ୍ରହ୍ମ ବିଚାରର ସାର ନିର୍ଯ୍ୟାସ । ସେ ପଦ୍ମାସନରେ ଆସୀନା । ବୁଦ୍ଧି ପ୍ରଦାନକାରିଣୀ, ସେ ହେଉଛନ୍ତି ପରମେଶ୍ୱରୀ ଭଗବତୀ । ସେ ସାରଦା । ସେହି ପ୍ରସିଦ୍ଧ ଧ୍ୟାନ ଶ୍ଳୋକଟି ହେଉଛି : ଶୁକ୍ଳାଂ ବ୍ରହ୍ମବିଚାରସାରପରମାମାଦ୍ୟାଂ.. । ଅନ୍ୟ ଏକ ଧ୍ୟାନ ଶ୍ଳୋକଟି ହେଉଛି–

ଯା କୁନ୍ଦେନ୍ଦୁ ତୁଷାରହାରଧବଳା ଯା ଶ୍ୱେତପଦ୍ମାସନା
ଯା ବୀଣାବରଦଣ୍ଡମଣ୍ଡିତକରା ଯା ଶୁଭ୍ରବସ୍ତ୍ରାବୃତା ।
ଯା ବ୍ରହ୍ମାଚ୍ୟୁତଶଙ୍କର ପ୍ରଭୃତିଭିଃ ଦେବୈଃ ସଦା ବନ୍ଦିତା
ସା ମାଂ ପାତୁ ସରସ୍ୱତୀ ଭଗବତୀ ନିଃଶେଷଜାଡ୍ୟାପହା ॥

–ସିଦ୍ଧସରସ୍ୱତୀ ଷ୍ଟୋତ୍ରମ୍

ଏହି ଦ୍ୱିତୀୟ ଧ୍ୟାନ ଶ୍ଳୋକରୁ ସରସ୍ୱତୀଙ୍କ ରୂପ ଓ ବର୍ଣ୍ଣ ବିଷୟରେ ଧାରଣା ହୋଇଥାଏ ଯେ ସେ କୁନ୍ଦପୁଷ୍ପ,ଚନ୍ଦ୍ରମା, ତୁଷାର ଓ ମୋତିର ହାର ପରି ଶ୍ୱେତବର୍ଣ୍ଣା । କୁନ୍ଦ ହେଉଛି ମଲ୍ଲୀଫୁଲ ବିଶେଷ । ସରସ୍ୱତୀ ଖାଲି କୁନ୍ଦପ୍ରଭା ନୁହଁନ୍ତି ସେ କୁନ୍ଦପ୍ରିୟ ମଧ୍ୟ । ଶ୍ରେଷ୍ଠ ଦଣ୍ଡରେ ଯୁକ୍ତ ବୀଣା ତାଙ୍କର ହସ୍ତ ଦ୍ୱୟରେ ମଣ୍ଡିତ ହୋଇଛି । ସେ ଶୁଭ୍ର ବସ୍ତ୍ର ପରିଧାନ କରିଥା'ନ୍ତି । ଜଡ଼ତାକୁ ସଂପୂର୍ଣ୍ଣ ନିମୂଳ କରି ହରଣ କରନ୍ତି । ଅବଶେଷ ରଖନ୍ତି ନାହିଁ । ବ୍ରହ୍ମା ଅଚ୍ୟୁତ ଓ ଶଙ୍କର ଭଳି ଶ୍ରେଷ୍ଠ ତିନି ଦେବ ତାଙ୍କ କୃପାଶିଷ ଲାଭ ଆଶାରେ ତାଙ୍କର ସବୁବେଳେ ବନ୍ଦନା କରୁଥା'ନ୍ତି । ସେହିପରି ଅଲୌକିକ ଗୁଣଯୁକ୍ତ ସରସ୍ୱତୀ ମୋତେ ରକ୍ଷା କରନ୍ତୁ ବୋଲି ଏହି ଶ୍ଳୋକରେ ପ୍ରାର୍ଥନା କରାଯାଇଛି । ସେ କେବଳ ଗୋଟିଏ ଚନ୍ଦ୍ରର କାନ୍ତିରେ ଯୁକ୍ତା ନୁହଁନ୍ତି ସେ ଶଶିକଳାରେ ଅଳଙ୍କୃତ । ସେ ହାତରେ ଉପାସକମାନଙ୍କ ପାଇଁ ମଣିମୟ କଳସରେ ଜ୍ଞାନ ରୂପକ ଅମୃତ (ସୁଧାଢ୍ୟକଳସଂ) ଉଦ୍‌ବହନ କରିଛନ୍ତି । ମଥାରେ ତାଙ୍କର ମୁକୁଟ ଶୋଭା ପାଉଥାଏ । ସେ ମନ୍ଦହାସିନୀ ଓ ମନୋହରା । ସୁନ୍ଦରୀମାନଙ୍କ ମଧ୍ୟରେ ସୁନ୍ଦରୀ । ତ୍ରିପୁର ସୁନ୍ଦରୀ । ସୁରେଶ୍ୱରୀ । ତାଙ୍କର ଦନ୍ତପଙ୍‌କ୍ତି ସୁନ୍ଦର । ସେ ଶରତ ଋତୁର ପୂର୍ଣ୍ଣେନ୍ଦୁ ପରି ଶୁଭ୍ର । ତାଙ୍କ ନେତ୍ର ଯୁଗଳ ଶରତ୍କାଳୀନ ନେତ୍ର ପରି ଚିତ୍ତାକର୍ଷକ । ତାଙ୍କ ମୁଖ ପଦ୍ମ ପରି । 'ଅପରାଜିତା ପୃଚ୍ଛା' ଅନୁସାରେ ସରସ୍ୱତୀ ଷଟ୍‌କୋଣ ମଣ୍ଡଳ ଅନ୍ତର୍ଗତ ଅଷ୍ଟଦଳ ପଦ୍ମ ଉପରେ ଦେବୀ ସରସ୍ୱତୀ ପୃଥିବୀ ଶକ୍ତି ରୂପେ କାମାଖ୍ୟା ନାମରେ ଉପାସିତ ହୁଅନ୍ତି । ସେ 'ସରୋଜହସ୍ତା କମଳେ ନିଷଣ୍ଣା' । ସେ ବାମ ହସ୍ତରେ ପଦ୍ମ ଧାରଣ କରିଥା'ନ୍ତି । ଶ୍ୱେତପଦ୍ମାସୀନା ଭାବେ ସରସ୍ୱତୀଙ୍କ ମୂର୍ତ୍ତି କଳ୍ପନା କରାଯାଇଛି । ବିଷ୍ଣୁ ଧର୍ମୋତ୍ତର ପୁରାଣ ଅନୁସାରେ ସେ ପଦ୍ମ ଉପରେ ଦଣ୍ଡାୟମାନ । ସେ ପଦ୍ମପୀଠାସନା । ସେ ପ୍ରଭାମଣ୍ଡଳ ଯୁକ୍ତା ।

ବିଷ୍ଣଧର୍ମୋତ୍ତର ପୁରାଣ ଅନୁସାରେ ସରସ୍ୱତୀ ବୈଷ୍ଣବୀ ମୁଦ୍ରାରେ ଥା'ନ୍ତି । ବାମ ହସ୍ତରେ କମଣ୍ଡଳୁ ଧାରଣ କରିଥା'ନ୍ତି । ଏହି ମୂର୍ତ୍ତି ଦକ୍ଷିଣ ଭାରତରେ ଅଧିକ ଦେଖାଯାଏ । ସ୍କନ୍ଦ ପୁରାଣ ଅନୁସାରେ ସେ ଚନ୍ଦ୍ରାର୍ଦ୍ଧକୃତ ଶେଖରା, ନୀଳଗ୍ରୀବା ଓ ଜଟାଜୁଟଧରା । ଏହି ପ୍ରସଙ୍ଗରେ ଅଚ୍ୟୁତାନନ୍ଦ ଲେଖନ୍ତି :

ଧଳବ ଅଙ୍ଗେ ଶୋଭିତଚାରୁ କୃଷ୍ଣକେଶ ।<br>
ନାନା କୁସୁମେ ମଣ୍ଡିତ ଗଭାଚଉପାଶ ॥<br>
ଚାଚର ଶୋଭିତ କେଶେ ଧନ୍ୟ ତୋ କବରୀ ।<br>
ସିଦ୍ଧ ଅଣାକାର କାୟା ଅଟେ ମାହେଶ୍ୱରୀ ॥

ବାସ୍ତବରେ ପୃଷ୍ଠ ଦେଶରେ ତାଙ୍କର ଘନକୃଷ୍ଣ କେଶ ଅତ୍ୟନ୍ତ ସୁନ୍ଦର ଦେଖା ଯାଉଥାଏ । ତାଙ୍କର ଭାଲ ପ୍ରଦେଶରେ ସିନ୍ଦୂର ବିନ୍ଦୁ ବେଶୀ ମନୋହର । ନାସାରେ ବସଣୀ ଓ ହୃଦୟରେ ମଣିହାର ଝଟକୁଥାଏ । ସେ ସର୍ବଶୁକ୍ଳା । ତାଙ୍କର ହସ୍ତରେ ଅଙ୍କୁଶ ଓ ପାଶ ଶୋଭା ପାଉଥାଏ । ଗଳାରେ ମୁକ୍ତାହାର ତାଙ୍କର କାନ୍ତି ବର୍ଦ୍ଧନ କରୁଥାଏ । ତାଦୃଶ ସରସ୍ୱତୀ ମୋର ମୁଖରୁ ସ୍ଫୁରିତ ହେଉଥିବା କଥାରେ ବିରାଜମାନ କରୁଥା'ନ୍ତୁ । ସରସ୍ୱତୀ ଉପନିଷଦ୍‌ରେ କୁହାଯାଇଛି :

ଅକ୍ଷସୂତ୍ରାଙ୍କୁଶଧରା ପାଶପୁସ୍ତକଧାରିଣୀ ।<br>
ମୁକ୍ତାହାରସମାଯୁକ୍ତା ବାଚିତିଷ୍ଠତୁ ମେ ସଦା ॥

–ମାର୍କଣ୍ଡେୟ ପୁରାଣ

ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବ ସରସ୍ୱତୀଙ୍କ ରୂପ ବର୍ଣ୍ଣନା କରି କହନ୍ତି ସରସ୍ୱତୀ ସର୍ବଦା ଶ୍ୱେତ ପୁଷ୍ପରେ ନିଜକୁ ସଜ୍ଜିତ କରୁଥାନ୍ତି । କାଶତଣ୍ଡୀ ଫୁଲର ହସ ପରି ତାଙ୍କର ହସ ଧବଳ ବର୍ଣ୍ଣ : ଶୁକ୍ଳପଦ୍ମାସନୀ ଶୁକ୍ଳକୁସୁମବେଶିନୀ । ଶୁକ୍ଳବସନ ଶୋଭିନୀ ସୁକାଶହାସିନୀ ॥ ପୁରାଣରେ କେତେବେଳେ ସେ ଚତୁର୍ବଦନା ତ ପୁଣି କେତେବେଳେ ଏକ ବଦନା । କେତେବେଳେ ଦଶଭୁଜା ତ କେବେ ଚତୁର୍ଭୁଜା । କେବେ ସେ ଦ୍ୱାଦଶ ନୟନା ତ ପୁଣି କେବେ ତ୍ରିନୟନା । ସେ କେବେ ବିଷ୍ଣୁଶକ୍ତି ରୂପେ ଶଙ୍ଖ, ଚକ୍ର, ଗଦା ଓ ଅଭୟ ମୁଦ୍ରାଧାରିଣୀ । ସେ ପ୍ରଭାମଣ୍ଡଳ ଯୁକ୍ତା ।

ଅନୁରୂପ ଭାବେ 'ସାରଦାତିଳକ' ଗ୍ରନ୍ଥରେ ସରସ୍ୱତୀଙ୍କ ରୂପ ବର୍ଣ୍ଣନାରେ ପୂର୍ବୋକ୍ତ ବର୍ଣ୍ଣନା ସମେତ କୁହାଯାଇଛି ଯେ ସେ ତରୁଣ ଚନ୍ଦ୍ର ଖଣ୍ଡରେ ଦୀପ୍ତିମୟୀ ଦେଖା ଯାଉଥା'ନ୍ତି । ଶ୍ୱେତପଦ୍ମରେ ସେ କେବଳ ଆସୀନା ନୁହଁନ୍ତ ଶ୍ୱେତପଦ୍ମ ସହିତ ଲେଖନୀ ହସ୍ତରେ ଧାରଣ କରିଥା'ନ୍ତି :

ତରୁଣସକଳମିନ୍ଦୋର୍ବିଭ୍ରତୀ ଶୁଭ୍ରକାନ୍ତିଃ ।<br>
କୁଚଭରନମିତାଙ୍ଗୀ ସନିଷଣ୍ଣା ସିତାବ୍ଜେ ॥<br>
ନିଜକର କମଳୋଦ୍ୟଲ୍ଲେଖନୀ ପୁସ୍ତକଶ୍ରୀଃ ।<br>
ସକଳବିଭବସିଦ୍ଧୈ ପାତୁ ବାଗ୍ ଦେବତାଃ ନଃ ॥

ଭଗବତୀ ସାରଦାଙ୍କର ମୂଳ ସ୍ଥାନ ଶଶାଙ୍କସଦନ ଅର୍ଥାତ୍ ଅମୃତମୟ ପ୍ରକାଶପୁଞ୍ଜ ଅଟେ । ସେଠାରୁ ସେ ନିରନ୍ତର ପଚାଶ ଅକ୍ଷରମାନଙ୍କ ରୂପରେ ଜ୍ଞାନାମୃତର ଧାରା ଆପଣା ଉପାସକମାନଙ୍କ ପାଇଁ ପ୍ରବାହିତ କରୁଥା'ନ୍ତି । ତାଙ୍କର ବିଗ୍ରହ ଶୁଦ୍ଧଜ୍ଞାନମୟ । ଆନନ୍ଦମୟ । ତେଣୁ ତାଙ୍କର ଉପାସକମାନଙ୍କ ହୃଦୟରେ ଜ୍ଞାନଯୁକ୍ତ ଶାନ୍ତି ଅକ୍ଷୁଣ୍ଣ ହୋଇ ରହିଥାଏ । ବାହ୍ୟ ଆକର୍ଷଣ, ବାଧାବିଘ୍ନ ବା ବିଷମ ସ୍ଥିତି ଉପାସକମାନଙ୍କୁ ବିଚଳିତ

କରିପାରେ ନାହିଁ । ସରସ୍ୱତୀଙ୍କ କୃପାରୁ ସେ ସର୍ବଦା ଆନନ୍ଦମୟ ସ୍ଥିତିରେ ସମର୍ଥ ହୋଇ ଥା'ନ୍ତି । ଏହା ଅନ୍ୟ କୌଣସି ସାଧନାରୁ ସମ୍ଭୂତ ନୁହେଁ । ସରସ୍ୱତୀଙ୍କ ତେଜ ଦିବ୍ୟ ଅପରିମେୟ । ବିଦ୍ୱାନ୍ ଓ ପୁଣ୍ୟାତ୍ମାମାନେ ତାଙ୍କୁ ଶବ୍ଦ ବ୍ରହ୍ମ ବୋଲି ସ୍ତୁତି କରନ୍ତି । ଶବ୍ଦାର୍ଥ ରୂପରେ ସାରା ସଂସାରରେ ସେ ବ୍ୟାପ୍ତ । ବାଣୀର ଅଧୀଶ୍ୱରୀ ସେ ସବୁର ରକ୍ଷା କରନ୍ତୁ ।

ସରସ୍ୱତୀଙ୍କୁ ପ୍ରସନ୍ନ କରିପାରିଲେ ବାକ୍ ପଟୁତା, କୀର୍ତ୍ତି ଓ ଆୟୁଆଦି ଲାଭ ହୁଏ : ସରସ୍ୱତୀଙ୍କ ସ୍ତୁତି ଗାନ କଲେ ବାସ୍ତବିଙ୍କ ସମ୍ମାନ ମିଳେ । ବିଭବ ପ୍ରାପ୍ତି ହୁଏ । ମଣିଷ ବାକ୍ କୁଶଳୀ ଓ ମୃଷ୍ଟକଣ୍ଠ(କଣ୍ଠରୁ ଅନର୍ଗଳ ବିବକ୍ଷିତ ଶବ୍ଦ ମୁକ୍ତ ଭାବରେ ନିଃସୃତ ହୁଏ । ସରସ୍ୱତୀ ପ୍ରସନ୍ନ ହେଲେ ବ୍ୟକ୍ତି କହିବାକୁ ଚାହୁଁଥିବା କଥାକୁ ଠିକ୍ ଢଙ୍ଗରେ ପ୍ରକାଶ କରିବାକୁ ସମର୍ଥ ହୁଏ । ମୁଖରୁ ଲଳିତାକ୍ଷରା ବାଣୀ ପ୍ରବର୍ତ୍ତିତ ହୁଏ । ଗଦ୍ୟପଦ୍ୟାତ୍ମକ ଅପ୍ରମେୟ ଶବ୍ଦ ରୂପିଣୀ ବାଣୀ ଆପେ ଆପେ ପ୍ରକାଶ ହୋଇ ଯା'ନ୍ତି । କାରଣ ସରସ୍ୱତୀ ଭକ୍ତ ଜିହ୍ୱାଗ୍ରବାସିନୀ । ସେ ତାଙ୍କ ଉପାସକମାନଙ୍କୁ ପୁଅ ପରି ସର୍ବଦା ପାଳିଥାନ୍ତି । ବିଦ୍ୟା ଅଧ୍ୟୟନରେ ଉପୁଜୁଥିବା ସକଳ ପ୍ରକାର ବାଧାବିଘ୍ନକୁ ସେ ହଟେଇ ଦିଅନ୍ତି । ଭକ୍ତ ଇଷ୍ଟ ଲାଭ କରେ । ସରସ୍ୱତୀଙ୍କ ଆଶିଷରୁ ଗ୍ରନ୍ଥର ଭାବାର୍ଥ ବିଷୟରେ ଶୀଘ୍ର ବୋଧ ଜାତ ହୁଏ । ଶାରଦା ସାକ୍ଷାତ୍ ତାଙ୍କର ମୁଖରେ ବାସ କରନ୍ତି । ସେ ଅନୁଗତ ଜନଙ୍କୁ ତିନି ଲୋକରେ ଜୟଯୁକ୍ତ କରାଇଥାନ୍ତି । ତିନି ଲୋକରେ ତାଙ୍କର ଭକ୍ତର ଯଶ ପ୍ରସରିଯାଏ । ସେ ଦୀର୍ଘାୟୁ ହୁଅନ୍ତି । ପୂଜା ପାଆନ୍ତି । ସକଳ ଗୁଣର ନିଧିରେ ପରିଣତ ହୁଅନ୍ତି । ରାଜାଙ୍କଠାରୁ ମାନ୍ୟତା ଲାଭ କରନ୍ତି । ଲୋକରେ ପ୍ରସିଦ୍ଧ ହୁଅନ୍ତି ।

ବାସ୍ତବରେ ସରସ୍ୱତୀ ହେଉଛନ୍ତି କଥା କହୁଥିବା ବ୍ୟକ୍ତିର ଚିନ୍ତା ଓ କଳ୍ପନା ଶକ୍ତି । ସେହି ଅବସ୍ଥାରେ ସେ ଅବ୍ୟକ୍ତ । ଯେତେବେଳେ କଳ୍ପନା ବର୍ଣ୍ଣ ସମନ୍ୱୟରେ ବାକ୍ ରୂପ ଧାରଣ କରେ ତାହା ସରସ୍ୱତୀଙ୍କର ବ୍ୟକ୍ତ ଅବସ୍ଥା । ତେଣୁ ସେ ବର୍ଣ୍ଣର ମା ଓ ବାକ୍ୟର ଈଶ୍ୱରୀ । ଯେଉଁ ସ୍ୱରରେ ବାକ୍ ଉଚ୍ଚାରିତ ହୁଏ ସରସ୍ୱତୀ ମଧ୍ୟ ତାର ଅଧିଷ୍ଠାତ୍ରୀ ଦେବୀ । ତେଣୁ ସେ ସ୍ୱରର ଈଶ୍ୱରୀ । ସଙ୍ଗୀତମୟୀ । କମଳଲୋଚନ ଖଡ୍ଗରାୟ ସଙ୍ଗୀତ ବିଦ୍ୟାର ଯଶୋଗାନ କରି ଲେଖନ୍ତି : ଶାସ୍ତ୍ରେ ମାଗୋ ମୋହିଲଚକ୍ରପାଣି । ବାସ୍ତବରେ ସରସ୍ୱତୀ ସପ୍ତ ସ୍ୱର ବୀଣାବାଦନ ପରାୟଣା ଓ ଦିବ୍ୟଗାନ କୁଶଳା । ସନ୍ଥକବି ଅଚ୍ୟୁତାନନ୍ଦ ଲକ୍ଷ୍ମୀ ମାହେଶ୍ୱରୀ ଓ ସରସ୍ୱତୀଙ୍କୁ ଏକ ଓ ଅଭିନ୍ନ ଦେବୀ ବୋଲି ପ୍ରତିପାଦିତ କରି ଲେଖନ୍ତି :

ଜୟ ତୁ ଶାରଦା ମା ଗୋ ଅପର୍ଣ୍ଣା ପାର୍ବତୀ ।
ଜୟ ଶାରଦା ଅଜ୍ଞାନଜନ ଜ୍ଞାନଦାତ୍ରୀ ॥

ସୁସ୍ୱର ମଧୁର ମା ଗୋ କରେ ବ୍ରହ୍ମ ବୀଣା ।
କିଣି କିଣି କୋଳାହଳ ବାଜେ ଜଗ ଜଗଜ୍ଜିଣା ॥
ଗାନ୍ଧାର ହଂକାରେ ମାଗୋ ସପ୍ତ ସ୍ୱର ଗାଇ ।
ଜାନୁରେ ବିଷ୍ଣୁ ତୁମର ସୀମା ସ୍ଥାନ ଦେଇ ॥
–ହରିବଂଶ ପ୍ରଥମ ଖଣ୍ଡ

ଯେଉଁ ଅର୍ଥ ପ୍ରକାଶ ପାଏ ତାହା ଶୂନ୍ୟରେ ଲିଖିତ ହୋଇ ରହେ । ତେଣୁ ତାହା ନିତ୍ୟା । ଖାଲି ଭାବିତ ଭାବନା ନୁହେଁ କି ଉଚ୍ଚାରିତ ଶବ୍ଦ ପଦର ନୁହେଁ କି ସ୍ୱରର ନୁହେଁ ଲିଖିତ ଶବ୍ଦ ପଦ ଓ ବାକ୍ୟ ଗଦ୍ୟପଦ୍ୟର ମଧ୍ୟ ସେ ଦେବତା । ତେଣୁ ସେ ଏକାଧାରରେ ଶବ୍ଦ ମୟୀ ବାକ୍ୟେଶ୍ୱରୀ ପଦ୍ୟେଶ୍ୱରୀ ଓ ଗଦ୍ୟେଶ୍ୱରୀ ଅଟନ୍ତି । ସେ ପ୍ରସନ୍ନା ଥିଲେ ମଣିଷ ମୁଖରୁ ଶବ୍ଦ ମାନେ ଲଳିତ ମଧୁର ହୋଇ ପ୍ରକାଶ ପାଆନ୍ତି । କଣ୍ଠରୁ ଅକୁଣ୍ଠ ଭାବରେ ଅନର୍ଗଳ ବାଣୀ ଅମୃତମୟୀ ହୋଇ ଉଠେ । ବକ୍ତା ବୃହସ୍ପତି ପରି ସମ୍ମାନ ଲାଭ କରନ୍ତି । ସେଥିପାଇଁ ସେ ଉତ୍କର୍ଷର ଦେବୀ । ଯଦି କଥା କହିବା ବ୍ୟବସ୍ଥା ସୃଷ୍ଟି ହୋଇ ନଥାନ୍ତା ଲୋକମାନେ ପରସ୍ପର ଭାବ ବିନିମୟ କରିବାକୁ ସମର୍ଥ ହୋଇ ନଥାନ୍ତେ । ତେଣୁ ସୂର୍ଯ୍ୟର ଆଲୋକ ଥିଲେ ମଧ୍ୟ ବାଣୀ ଅଭାବରେ ସାରା ଜଗତ ଅନ୍ଧକାରରେ ଆଚ୍ଛନ୍ନ ହୋଇ ରହିଥାନ୍ତା । ଶବ୍ଦ ପଦ ଓ ବାକ୍ୟ ଦ୍ୱାରା ଯେଉଁ ଅର୍ଥ ପ୍ରକାଶ ପାଏ ସରସ୍ୱତୀ ତାର ପ୍ରତୀକ । ତେଣୁ ସରସ୍ୱତୀ ଶିକ୍ଷା ରୂପିଣୀ, ପ୍ରଶିକ୍ଷଣ ରୂପିଣୀ ଓ ସର୍ବ ଶେଷରେ ଜ୍ଞାନ ରୂପିଣୀ । ଆତ୍ମଜ୍ଞାନ ହେଉଛି ଜ୍ଞାନର ପରମ ଓ ଚରମ ଲକ୍ଷ୍ୟ । ସରସ୍ୱତୀ ନିଜର ମୂର୍ତ୍ତି, ବାହନ ଓ ଆୟୁଧ ଦ୍ୱାରା ତାହା ପ୍ରକାଶ କରିଥାନ୍ତି ।

ସରସ୍ୱତୀଙ୍କ ଆଶୀର୍ବାଦରୁ ତାଙ୍କର ବରପୁତ୍ର ମାନେ : ସରସ୍ୱତୀ ପ୍ରଣତ ଜନର ମନକୁ ଆନନ୍ଦ ଦେଇଥାନ୍ତି । ସେ ସଂସାରର ସାର । ସକଳ ଗୁଣରେ ପରିପୂର୍ଣ୍ଣ ହେଲେ ମଧ୍ୟ ନିର୍ଗୁଣ ଓ ନିର୍ବିକାର । ସେ ସ୍ଥୂଳ ନୁହଁନ୍ତି କି ସୂକ୍ଷ୍ମ ନୁହଁନ୍ତି । ସେ ବିଶ୍ୱମୟୀ । ନିତ୍ୟଶୁଦ୍ଧା । ଅଭୟହସ୍ତା । ବରଦା ବାଗ୍ ଦେବୀ ପ୍ରସନ୍ନା ହୋଇ ଯାହା ଗୃହରେ ବାସ କରନ୍ତି ସେହି ସଜ୍ଜନ କବି ଦେବତାଙ୍କ ସମକକ୍ଷ ହୋଇ ସବୁବେଳେ ଆନନ୍ଦର ସହ ଜୟ ଲାଭ କରନ୍ତି । ୧୭୬୮ ଖ୍ରୀଷ୍ଟାବ୍ଦ ରେ କବି ଚିନ୍ତାମଣି ଲେଖନ୍ତି :

ପ୍ରସନ୍ନା ବାଗ୍ ଦେବୀ ବସତି ସଦନେ ଯସ୍ୟ ବରଦା ।
ସଦା ଦେବୈସ୍ତୁଲ୍ୟଃ ସ ଜୟତି ମୁଦା ସଜ୍ଜନ କବିଃ ॥–୧/୧୭

କବି ବଜରି ଦାସ(୧୬୭୨)ଙ୍କ ମତରେ ଯେଉଁମାନେ ସାରସ୍ୱତ ସାଧନା କରନ୍ତି ସେମାନଙ୍କୁ ସରସ୍ୱତୀ ଅଧିକ ସ୍ନେହ କରନ୍ତି । ପୁତ୍ର ଭଳି ପାଳନ କରନ୍ତି । କବିଙ୍କ ଭାଷାରେ– ସଂସାରେ

ଯେତେ କବିମାନ । ସମସ୍ତେ ତୋହର ନନ୍ଦନ ॥ ସାରସ୍ୱତ ସାଧନା କରୁଥିବା ସମସ୍ତ କବି ସରସ୍ୱତୀଙ୍କର ବରପୁତ୍ର ହେବାର ସୌଭାଗ୍ୟ ଲାଭ କରିପାରନ୍ତି ନାହିଁ । ସରସ୍ୱତୀ ନିଜର ଉପାସକମାନଙ୍କୁ ପୂର୍ବ ଜନ୍ମଜନ୍ମାନ୍ତର ଓ ଭବିଷ୍ୟତ ଜ୍ଞାନ କରାଇଥାନ୍ତି । ପ୍ରତିଭାଶାଳୀ କବି ହେବାକୁ ହେଲେ ତିନୋଟି ଯୋଗ୍ୟତା (କାବ୍ୟହେତୁ) ରହିବା ଦରକାର ବୋଲି ଆଳଙ୍କାରିକ ମମ୍ମଟାର୍ଯ୍ୟ କହିଛନ୍ତି । ସେଗୁଡ଼ିକ ହେଉଛନ୍ତି ଶକ୍ତି ବା ପ୍ରତିଭା, ବ୍ୟୁତ୍ପତ୍ତି ବା ବିବିଧ ଶାସ୍ତ୍ରର ପାଣ୍ଡିତ୍ୟ ଏବଂ ଅଭ୍ୟାସ । ଏମାନଙ୍କ ମଧ୍ୟରୁ କେବଳ କବିଗତା ପ୍ରତିଭା ହିଁ ଶ୍ରେଷ୍ଠ ବୋଲି ପଣ୍ଡିତରାଜ ଜଗନ୍ନାଥ କହନ୍ତି । ସ୍ୱଭାବ କବି ଗଙ୍ଗାଧର ମେହେର ମଧ୍ୟ ଲେଖନ୍ତି :

କି ମନ୍ତ୍ର ଦେଉଛୁ ପୁଣି ବାଛି ବାଛି ଲୋକ ।
ତମ ନାଶି ସୃଜୁଛନ୍ତି ସେମାନେ ଆଲୋକ ॥

ଉପଯୁକ୍ତ ତିନି ଯୋଗ୍ୟତା ମଧ୍ୟରୁ ବାଣୀଙ୍କ କୃପା ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ଯେଉଁମାନେ ବାଗ୍ ଦେବୀଙ୍କ ମନ୍ତ୍ର ଲାଭ କରିବାର ସୌଭାଗ୍ୟ ଲାଭ କରି ପାରିଛନ୍ତି ସେମାନେ ଦିବ୍ୟ ପ୍ରଭାବରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରି ପାଠକମାନଙ୍କୁ ଆଲୋକଦୀପ୍ତ କରିଥାନ୍ତି । ସରସ୍ୱତୀଙ୍କ ପ୍ରକାଶ ହେଉଛି ସାହିତ୍ୟ । ତେଣୁ ସାହିତ୍ୟ ମାନବ ମନର ସମସ୍ତ ପ୍ରକାର ଭାବ ଓ ଚିନ୍ତାର ସମନ୍ୱିତ ବିଗ୍ରହ । ପରିଶେଷରେ ମହର୍ଷି ଯାଜ୍ଞବଲକ୍ୟ ସରସ୍ୱତୀଙ୍କ ପାଖରେ ଶରଣ ପଶି କହିଥିଲେ–ଯାହାଙ୍କୁ ଚତୁର୍ମୁଖ ବ୍ରହ୍ମା ସ୍ତୁତି କରି ନପାରି ଜଡ଼ ପାଲଟି ଯାଇଥିଲେ ମୁଁ ତାଙ୍କୁ କିପରି ସ୍ତୁତି କରିପାରିବି ? ଦେବୀ ପ୍ରସନ୍ନ ହେଲେ ଓ କହିଲେ: ତୁମେ କବୀନ୍ଦ୍ର ହେବ । ଖାଲି ଯାଜ୍ଞବଲକ୍ୟ ନୁହେଁ ସନତ କୁମାର ମଧ୍ୟ ବାଣୀଙ୍କୁ ସ୍ତୁତି କରି ତାଙ୍କ ପ୍ରସାଦରୁ ନିର୍ମଳ ଓ ଭ୍ରମମୁକ୍ତ ସିଦ୍ଧାନ୍ତ କରିବାକୁ ସମର୍ଥ ହୋଇଥିଲେ । ମହର୍ଷି ବିଶ୍ୱାମିତ୍ରଙ୍କ ଉପରେ କୃପା କରି ତାଙ୍କୁ ଶାସ୍ତ୍ରମାନଙ୍କର ଜ୍ଞାନ ପ୍ରଦାନ କରିଥିଲେ । ତାଙ୍କୁ ଗାୟତ୍ରୀ ରୂପରେ ଦର୍ଶନ ଦେଇ ଗାୟତ୍ରୀ ମନ୍ତ୍ରର ଋଷିତ୍ୱ ପ୍ରାପ୍ତ କରାଇ ଥିଲେ । ମହର୍ଷି ବ୍ୟାସ ମଧ୍ୟ ପୁଷ୍କର ତୀର୍ଥରେ ଶହେ ବର୍ଷ ଧ୍ୟାନ କରି ତାଙ୍କ ଆଶୀର୍ବାଦରୁ କବୀନ୍ଦ୍ର ହେଲେ । ଫଳରେ ବ୍ୟାସ ବେଦବିଭାଗ କରିବାକୁ ଓ ପୁରାଣ ଲେଖିବାକୁ ସାମର୍ଥ୍ୟ ଲାଭ କଲେ ବୋଲି ବୃହଦ୍ଧର୍ମ ପୁରାଣରେ ଉଲ୍ଲେଖ ଅଛି । ଦେବୀ କହିଛନ୍ତି ହେ ବ୍ୟାସ ! ମୋର ପ୍ରେରଣାରୁ ବାଲ୍ମିକୀ ରାମାୟଣ ରଚିତ । ସେହି ରାମାୟଣ ମୋର ଶକ୍ତିର ସନାତନ କାବ୍ୟବୀଜ । ସେଥିରେ ରାମଚରିତ୍ର ରୂପରେ ମୁଁ ସାକ୍ଷାତ୍ ମୂର୍ତ୍ତିମତୀ ଶକ୍ତି ରୂପରେ ପ୍ରତିଷ୍ଠିତ ହୋଇଅଛି । ଭକ୍ତି ରସାପ୍ଲୁତ କବି ନାରାୟଣ ନନ୍ଦ ଅବଧୂତ ସ୍ୱାମୀ ଶ୍ରୀପଞ୍ଚମୀ ତିଥିରେ ଜନ୍ମ ଲାଭ କରି ରୁଦ୍ରସୁଧାନିଧି ରୂପକ ଅମୂଲ୍ୟ ରତ୍ନଖଣ୍ଡ ରଚନା କରିଥିଲେ । ସାର୍ବଭୌମ କବି ଉପେନ୍ଦ୍ର ଭଞ୍ଜ ଏହି ତିଥିରେ ଜନ୍ମ ଲାଭ କରି ମା ବାଗ୍ ଦେବୀଙ୍କ ଆଶୀର୍ବାଦ ଲାଭ କରି ଓଡ଼ିଆ ସାହିତ୍ୟର ମାନ ସଂସ୍କୃତ ସାହିତ୍ୟର ସମକକ୍ଷ କରି ପାରିଥିଲେ । ୧୭୭୯ ମସିହାରେ ମାଘ ଶ୍ରୀପଞ୍ଚମୀ ତିଥିରେ ଜନ୍ମ ଲାଭ କରି ଓଡ଼ିଆ ସଂଗୀତ ରାଜ୍ୟରେ ସଂସ୍କୃତ ତୁଲ୍ୟ ଗଦ୍ୟପଦ୍ୟମୟ ଚମ୍ପୂ ସୃଷ୍ଟି କରି ଅମର ହୋଇ ଅଛନ୍ତି । ଯୋଗାବଶିଷ୍ଟର ମଣ୍ଡପୋଖ୍ୟାନ ପ୍ରସଙ୍ଗରେ ରାଜା ପଦ୍ମଙ୍କର ପତ୍ନୀ ଲୀଳାଙ୍କ କଥା । ସେ ସରସ୍ୱତୀଙ୍କ ସ୍ୱଳ୍ପକାଳୀନ ଆରାଧନା କରିଥିଲେ । ଏହା ଦ୍ୱାରା ଭଗବତୀ ଶାରଦା ପ୍ରସନ୍ନ ହୋଇ ତାଙ୍କୁ ଭବିଷ୍ୟତର ଜ୍ଞାନ କରାଇ ଦେଇଥିଲେ । ଲୀଳାଙ୍କ ପତିଙ୍କର ସହସା ପ୍ରାଣହାନି ଘଟିଲା । ସେ ସରସ୍ୱତୀଙ୍କ ସ୍ମରଣ କରିଥିଲେ । ସରସ୍ୱତୀ ପୁନଃ ପହଞ୍ଚି ତାଙ୍କୁ ଆକାଶ ଗମନାଦିର ଶକ୍ତି ପ୍ରଦାନ କରି ତାଙ୍କ ପତିଙ୍କୁ ପୁନର୍ଜୀବିତ କରିଦେଲେ । ପୁଣି ସେହି ଦୁହିଁଙ୍କୁ ବ୍ରହ୍ମ ବିଦ୍ୟାର ଉପଦେଶ ଦେଇ ଦିବ୍ୟଜ୍ଞାନରେ ସଂଯୁକ୍ତ କରି ମୋକ୍ଷପ୍ରାପ୍ତି କରାଇଦେଇଥିଲେ ।

ପୁରାଣରେ ବର୍ଣ୍ଣିତ ହୋଇଛି ଯେ ସତ୍ୟବ୍ରତ ନାମରେ ଜଣେ ଋଷିଥିଲେ । ସେ ଜଡ଼ା ଥିଲେ । କିନ୍ତୁ ସର୍ବଦା ସରସ୍ୱତୀଙ୍କୁ ସ୍ମରଣ କରୁଥିଲେ । ସରସ୍ୱତୀଙ୍କ ପ୍ରସାଦ ଫଳରେ ଦିନେ ହଠାତ୍ ତାଙ୍କ ମୁଖରୁ ହ୍ର ଐ ଏବଂବ ଉଚ୍ଚାରିତ ହେଲା । ତାଙ୍କୁ ସମସ୍ତ ଶାସ୍ତ୍ରର ଜ୍ଞାନ ପ୍ରାପ୍ତ ହୋଇଗଲା । ଆଧ୍ୟାତ୍ମିକ ଦିବ୍ୟଜ୍ଞାନ ଦ୍ୱାରା ସେ ଆତ୍ମଦର୍ଶନ ଲାଭ କଲେ ।

ବ୍ରହ୍ମା ଅଚ୍ୟୁତ ଶଙ୍କର ପ୍ରଭୃତି ଦେବଙ୍କ ଦ୍ୱାରା ସରସ୍ୱତୀ ସଦା ବନ୍ଦିତା : କରୁଣା କମନା କରି ଦେବଗଣ ମଧ୍ୟ ସରସ୍ୱତୀଙ୍କ ଉପାସନା କରିଥାନ୍ତି । ବୃହସ୍ପତି ସରସ୍ୱତୀଙ୍କ କୃପା ବଳରେ ମହେନ୍ଦ୍ରଙ୍କୁ ଶବ୍ଦ ବ୍ୟାଖ୍ୟା କରି ପାରିଥିଲେ । ମହର୍ଷି ମନୁ, ମାନବ, ମୁନିଋଷି, ଦୈତ୍ୟେନ୍ଦ୍ର ଓ ବ୍ରହ୍ମା ବିଷ୍ଣୁ ଶିବ ପ୍ରଭୃତି ଦେବଗଣଙ୍କ ଦ୍ୱାରା ମଧ୍ୟ ସରସ୍ୱତୀ ଉପାସିତ ହୋଇଥାନ୍ତି । ସରସ୍ୱତୀ ସକଳ ବିଭବ ଓ ସିଦ୍ଧିଦାତ୍ରୀ ବୋଲି ଶାରଦାତିଳକ ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି । ବ୍ରହ୍ମପୁରାଣରେ କୁହାଯାଇଛି ସରସ୍ୱତୀ ହେଉଛନ୍ତି ଭଦ୍ରକାଳୀ । ସେ ବେଦ ବେଦାନ୍ତ ବେଦାଙ୍ଗ ତଥା ସକଳ ବିଦ୍ୟାର ମୂଳ ଉତ୍ସ । ସରସ୍ୱତୀଙ୍କ ଏହିପରି ପ୍ରଭାବ ଦେଖି ତାଙ୍କ ଉପାସନା ପ୍ରତି ଲୋକମାନଙ୍କର ଶ୍ରଦ୍ଧା ଓ ବିଶ୍ୱାସ ଅଧିକରୁ ଅଧିକ ହେବାକୁ ଲାଗିଲା । ଭାରତର ବିଭିନ୍ନ ପ୍ରାନ୍ତରେ ଅଗଣିତ ଅଜ୍ଞ ମୂର୍ଖ ବାଗ୍‌ଦେବୀଙ୍କ କୃପାରୁ କବି ଓ ପଣ୍ଡିତ ରୂପେ ଗଣ୍ୟ ହୋଇ ଅନେକ ଶାସ୍ତ୍ର ପୁରାଣ ଭାରତୀୟ ତଥା ଆଞ୍ଚଳିକ ଭାଷାରେ ଏହି ଯୁଗରେ ରଚନା କରିଥିଲେ ।

**ସରସ୍ୱତୀ ଅପ୍ରମେୟ ନୀତି ଓ ନୈତିକତାର ଦେବୀ :**

ମୁନିଗଣ ନମିତା ସରସ୍ୱତୀ ପୁଣ୍ୟା । ପୁଣ୍ୟ ପ୍ରଭାବଯୁକ୍ତା । ସେ ସୁବର୍ଣ୍ଣା । ତାଙ୍କ ଚରଣରେ ଶରଣ ନେଲେ ସେ ଅନୁଗତଙ୍କୁ ତିନି ଲୋକରେ ଜୟଯୁକ୍ତା କରାଇଥାନ୍ତି । ସେ ମାଧବଙ୍କୁ ପ୍ରୀତି ଦେଇ ଥାନ୍ତି । ଦୁରିତକୁ ଦହନ କରିଥାନ୍ତି । ସେ ଦୁଷ୍କୃତହାରିଣୀ । ପାପବିନାଶିନୀ । ସେ ସନ୍ତୁଷ୍ଟା ସିଦ୍ଧିଦାତ୍ରୀ । ସେ ମନ୍ଦହାସିନୀ ଶ୍ରେଷ୍ଠ କବିମାନଙ୍କର ଜିହ୍ୱା । ସେହିଭଳି ମହୀୟସୀ ହେ ମା ! ବାଚି ତିଷ୍ଠତୁ ମେ ସଦା । ଅର୍ଥାତ୍ ମୋର ବାଣୀକୁ ଛାଡ଼ି କୁଆଡ଼େ ଯାଆନ୍ତୁ ନାହିଁ । ମୋର ଜିହ୍ୱାକୁ ଛାଡ଼ି କୁଆଡ଼େ ଯାଆନ୍ତୁ ନାହିଁ । ମୋର ବୁଦ୍ଧି ବିରୋଧ ଭାବନାରେ କେବେ କଳୁଷିତ ନହେଉ । ମୋର ମନ ପାପ କାର୍ଯ୍ୟକୁ ନଯାଉ :

ସ୍ତୌମି ତ୍ୱାଂ ତ୍ୱାଂଚ ବନ୍ଦେ ମମ
ଖଳୁ ରସନାଂ ନୋ କଦାଚିତ୍ତ୍ୟଜେଥା
ମା ବୁଦ୍ଧିର୍ବିରୁଦ୍ଧା ଭବତୁ ନଚ ମନୋ
ମେ ଯାତୁ ପାପମ୍ ।
ମା ମେ ଦୁଃଖଂ କଦାଚିତ୍
କ୍ୱଚିଦପି ବିଷୟେଽପ୍ୟସ୍ତୁ ମେଽନାକୁଳତ୍ୱମ୍

ଶାସ୍ତ୍ରେ ବାଦେ କବିତ୍ୱେ ପ୍ରସରତୁ ମମ ଧୀର୍ମାସ୍ତୁ କୁଣ୍ଠା କଦାପି ॥

**ବ୍ରହ୍ମଶକ୍ତିର ଅଧିକାରିଣୀ ସରସ୍ୱତୀ:**

ସରସ୍ୱତୀ ତାଙ୍କ ଉପାସକମାନଙ୍କୁ ସମସ୍ତ ପାପତାପରୁ ମୁକ୍ତ କରି କାମନାଶୂନ୍ୟ କରି ପରମ ପଦ ଅଭିମୁଖୀ କରନ୍ତି । କାରଣ ସେ ଅନାଦି । ଅନନ୍ତ । ସେ ଅନ୍ତର୍ଯାମୀ । ସର୍ବ କାମଦୁଘା ଧେନୁ । ସରସ୍ୱତୀ ପଦ୍ୟା ସ୍ୱରୂପା । ସେ ବେଦାନ୍ତବିତ୍ । ସେ ମୁକ୍ତିର ମାର୍ଗ । ସେ ମୋକ୍ଷଦାତ୍ରୀ । ଅଦ୍ୱୈତା ବ୍ରହ୍ମଶକ୍ତି । ଅଧ୍ୟାତ୍ମ । ଅଧିଦୈବ । ସେ ନୂତନା । ସେ ନିତ୍ୟା । ଅନିତ୍ୟା । ଯାଜ୍ଞବଲକ୍ୟ ଭାଷାରେ :

ବ୍ରହ୍ମସ୍ୱରୂପା ପରମା ଜ୍ୟୋତିରୂପା ସନାତନୀ ।
ସର୍ବବିଦ୍ୟାଧିଦୈବୀ ଯା ତସ୍ୟୈ ବାଣ୍ୟୈ ନମୋ ନମଃ ॥

ଏହିପରି ସରସ୍ୱତୀ ପବିତ୍ର ଜଳ ରୂପରେ ବାହ୍ୟଶୁଦ୍ଧି ଏବଂ ଶୁଦ୍ଧଜ୍ଞାନ ଶକ୍ତି ବଳରେ ଅନ୍ତଃକରଣକୁ ପ୍ରକ୍ଷାଳିତ କରନ୍ତି । ସାଧନାକୁ ନିର୍ମଳ କରି ବ୍ରହ୍ମ ସଂପନ୍ନତାର ଯୋଗ୍ୟତା ପ୍ରଦାନ କରିବା ପାଇଁ ସରସ୍ୱତୀ ଯୁଗେ ଯୁଗେ ଆରାଧିତ ହେଉଛନ୍ତି ।

**ଉପସଂହାର :** ପୁରାଣ ସାହିତ୍ୟରେ ନଦୀରୂପା ସରସ୍ୱତୀଙ୍କ ଗୁରୁତ୍ୱ ଧୀରେ ଧୀରେ ହ୍ରାସ ପାଇ ଦେବୀ ରୂପରେ ପଲ୍ଲବିତ ଓ ପୁଷ୍ପିତ ହୋଇଛି ।

ଯାହା ସାର ଓ ଶ୍ରେଷ୍ଠ ସରସ୍ୱତୀ ତାର ପ୍ରତିନିଧି । ସେ ରତ୍ନନିର୍ମିତ ନାନା ଶ୍ରେଷ୍ଠ ଦିବ୍ୟ ତଥା ଶୁକ୍ଳ ଅଳଙ୍କାରରେ ବିଭୂଷିତ । ସେ ଶୁକ୍ଳ ପଟବସ୍ତ୍ର ପରିହିତା । ସେ ବିଶ୍ୱଯୋନି । ଜଗଦମ୍ବିକା । ଜଗତର ଉଦୟକାରୀ । ତାଙ୍କର ଆକୃତି ବଡ଼ ମନୋଜ୍ଞ । ସେ ହାତରେ ମଧ୍ୟ ପଦ୍ମ ଧାରଣ କରିଛନ୍ତି । ସେ ଶୁଦ୍ଧ ଶୁକ୍ଳବର୍ଣ୍ଣା । ସେ ରତ୍ନର କୁଣ୍ଡଳ କର୍ଣ୍ଣରେ ଧାରଣ କରିଥାନ୍ତି । ଗଳାରେ ଗଜମୋତିର ହାର ଝଟକୁଥାଏ । ମଣିଷ ଭିତରେ ଥିବା ଅନ୍ତଃକରଣ, ସ୍ମୃତି,ଚିତ୍ତ, ମେଧା, ବୁଦ୍ଧି, କଳ୍ପନାଶକ୍ତ, ରଚନା ଶକ୍ତି, ଯଶ, ନୀତି ନୈତିକତାର ସେ ପ୍ରତୀକ । କେବଳ ସେତିକିରେ ସେ ସୀମାବଦ୍ଧ ନୁହଁନ୍ତି ସେ ମଣିଷର ଆଧ୍ୟାତ୍ମିକ ବିକାଶ ଘଟାଇ ତାକୁ ମୋକ୍ଷମାର୍ଗୀ କରାଇଥାନ୍ତି । ସଂସ୍କୃତ ପୁରାଣମାନଙ୍କରେ ବର୍ଣ୍ଣିତ ରୂପ ସମ୍ଭାରକୁ ଆଧାର କରି ଓଡ଼ିଆ କବି ଗାଇ ଉଠିଛନ୍ତି :

ଅଇଲେ ସରସ୍ୱତୀ ନିର୍ମଳ ବର୍ଣ୍ଣେ
ରତ୍ନବିଭୂଷିତ କୁଣ୍ଡଳ କର୍ଣ୍ଣେ
ଗଳାରେ ଗଜମୋତି ମୁକୁତାର ହାର
ଦିଅ ମାଦ ସରସ୍ୱତୀ ବିଦ୍ୟା ଭଣ୍ଡାର ।


୧) ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା, ପଠାଣି ପଟ୍ଟନାୟକ, ଓଡ଼ିଶା ବୁକ୍‌ଷ୍ଟୋର,

୨)ଭାରତରେ ସରସ୍ୱତୀ ଉପାସନା ଭଗବାନ୍ ପଣ୍ଡା ଗ୍ରନ୍ଥ ମନ୍ଦିର, କଟକ–୨୦୦୧

୩) ତପସ୍ୱିନୀ ଓ ମେହେର ସାହିତ୍ୟ ଗୌରୀ କୁମାର ବ୍ରହ୍ମା

୪) ନିର୍ମାଲ୍ୟ ହରିହର ବାହିନୀପତି ଶ୍ରୀଜଗନ୍ନାଥ ମିଶନ ପୁରୀ ବିଶେଷାଙ୍କ, ୨୦୦୪

୫) ଭାରତୀୟ ଧର୍ମ ଓ ସଂସ୍କୃତି ପଣ୍ଡିତଅନ୍ତର୍ଯାମୀ ମିଶ୍ର, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, ୨୦୦୭

୬) ଶବ୍ଦ କଳ୍ପଦ୍ରୁମ ରାଧାକାନ୍ତ ଦେବ ରାଷ୍ଟ୍ରୀୟ ସଂସ୍କୃତ ସଂସ୍ଥାନ, ନୂଆଦିଲ୍ଲୀ– ୨୦୦୨

୭) ଭାରତରେ ସରସ୍ୱତୀ ଉପାସନା ଡକ୍ଟର ଭଗବାନ୍ ପଣ୍ଡା ଗ୍ରନ୍ଥମନ୍ଦିର କଟକ–୨୦୦୧

୮) ନିର୍ମାଲ୍ୟ ହରିହର ବାହିନୀପତି, ଶ୍ରୀଜଗନ୍ନାଥ ମିଶନ, ପୁରୀ ପୂଜା ବିଶେଷାଙ୍କ, ୨୦୦୪



କ୍ୱା.ନଂ ସି/୨୨/୧, ନାଲ୍‌କୋ. ଦାମନଯୋଡ଼ି
କୋରାପୁଟ–୭୬୩୦୦୮

# କଳା ସୃଜନର ସ୍ୱାକ୍ଷର ଧନୁଯାତ୍ରା

କୁଞ୍ଜବିହାରୀ ସାହୁ

ପ୍ରାକ୍ ସ୍ୱାଧୀନତା ସମୟରେ ପଶ୍ଚିମ ଓଡ଼ିଶାର ବରଗଡ଼ ଥିଲା ସଂସ୍କୃତିର ପର୍ଯ୍ୟାପ୍ତ ପୀଠ । ସ୍ୱାଭିମାନ ଚେତନାଧର୍ମୀ ଜନସାଧାରଣ ଖୁବ୍ ସଂସ୍କୃତିମନସ୍କ ଏବଂ ଇଂରେଜମାନଙ୍କ ଏକଚାଟିଆ ଶାସନକୁ ପ୍ରତ୍ୟକ୍ଷଭାବେ ନ ହେଲେ ବି ପରୋକ୍ଷଭାବେ ପୌରାଣିକ ଆଖ୍ୟାୟିକାକୁ ପାଥେୟ କରି ବିଭିନ୍ନ ସମୟରେ ନୃତ୍ୟ–ଗୀତ–ନାଟକ ପରିବେଷଣ କରୁଥିଲେ । ସେହି ପରିପ୍ରେକ୍ଷୀରେ କଳା ସୃଜନର ସ୍ୱାକ୍ଷର ବହନ କରି ଆସିଲା ଧନୁଯାତ୍ରା ଏକ ଖୋଲା ମଞ୍ଚରେ ।

ଶ୍ରୀକ୍ଷେତ୍ର ପୁରୀର ରଥଯାତ୍ରା, କଟକର ଐତିହାସିକ ବାଲିଯାତ୍ରା, ସମ୍ବଲପୁରର ପ୍ରସିଦ୍ଧ ଶୀତଳଷଷ୍ଠୀ ଯାତ୍ରା, ପ୍ରୟାଗର କୁମ୍ଭମେଳାଠାରୁ ଧନୁଯାତ୍ରା ଏକ ସ୍ୱତନ୍ତ୍ର ଶୈଳୀର ଯାତ୍ରା ରୂପେ ଅଭିହିତ । ଡକ୍ଟର ଗୌରାଙ୍ଗ ଚରଣ ଦାଶଙ୍କ ମତରେ 'ଏହା ଏକ ଭିନ୍ନ ପଦ୍ଧତି ଓ ଭିନ୍ନ ସ୍ୱାଦର ଲୋକ ନାଟକ ।' ସାଧାରଣତଃ ଗ୍ରାମର ଖୋଲା ପଡ଼ିଆ, ମନ୍ଦିରର ପ୍ରଶସ୍ତ ଅଗଣା ଲୋକ ନାଟକ ପ୍ରଦର୍ଶନର ଉତ୍କୃଷ୍ଟ ଭିତ୍ତିଭୂମି । ବିଶ୍ୱର ସର୍ବବୃହତ ଖୋଲା ମଞ୍ଚ ନାଟକ ଭାବେ ଏହା ଗିନିଜ୍ ବୁକ୍ ଅଫ ରେକର୍ଡ଼ସ୍‌ରେ ସ୍ଥାନ ପାଇଛି ।

ଅତୀତକୁ ବିଶ୍ଳେଷଣ କଲେ ଜଣାପଡ଼େ ଯେ ଜ୍ୟୋସ୍ନା ପୁଲକିତ ରଜନୀରେ ବରଗଡ଼ରେ ୧୯୧୫ ଏବଂ ୧୯୧୬ରେ ଦୁଇବର୍ଷ ଧରି ଧନୁଯାତ୍ରା ପାଳିତ ହୋଇଥିଲା । ସ୍ୱର୍ଗତଃ ଲକ୍ଷପତି ଦାଶ ଗୌନ୍ତିଆ ଥିଲେ ଜଣେ ଶୀକୃଷ୍ଣ ପ୍ରେମୀ । ଶ୍ରୀକୃଷ୍ଣ ଲୀଳାରେ ତାଙ୍କର ଅଗାଧ ପାଣ୍ଡିତ୍ୟ । ସେ କବିରାଜ ଥିଲେ ଏବଂ ରୋଗୀଙ୍କ ସେବା କରି ଆଦରଣୀୟ ହୋଇପାରି ଥିଲେ । ତାଳପତ୍ର ପୋଥିରେ ରଚିତ ଶ୍ରୀକୃଷ୍ଣଲୀଳା ଗାନ କରୁଥିଲେ ଏବଂ ଚରିତ୍ର ଅନୁଯାୟୀ ଅଭିନୟ କରୁଥିଲେ ।

ପୁନଶ୍ଚ ୧୯୪୭ ମସିହା (ଡିସେମ୍ବର ମାସ) ପୌଷ ଶୁକ୍ଳ ପଞ୍ଚମୀର ମଧ୍ୟରାତ୍ରିରେ ରାମଜୀ ମନ୍ଦିର ଭିତରେ କୃଷ୍ଣଜନ୍ମ ସହିତ ଧନୁଯାତ୍ରା ଆରମ୍ଭ ହୋଇଥିଲା ଏବଂ ୧୯୪୮ ମସିହା (ଜାନୁଆରୀ ମାସ) ପୌଷମାସ ପୂର୍ଣ୍ଣିମା ତିଥିରେ ସମାପ୍ତି ହୋଇଥିଲା । ସେ ଦୁଇବର୍ଷ ଯାତ୍ରା ଷୋହଳ ଦିନ ପର୍ଯ୍ୟନ୍ତ ପାଳିତ ହେଉଥିଲା । ପରେ ଚଉଦ ଦିନ ଏବଂ ଆଜିକାଲି ଏଗାର ଦିନ ଧରି ଯାତ୍ରାର ଅବଧି ରହିଛି ।

ସେତେବେଳେ କୃଷ୍ଣ ଓ ବଳରାମ ଭୂମିକାରେ ଅଂଶ ଗ୍ରହଣ କରିଥିବା କଳାକାର ଥିଲେ ସ୍ୱର୍ଗତ ପ୍ରାଣକୃଷ୍ଣ କର ଓ ସ୍ୱର୍ଗତ ମୁରାରୀ ମିଶ୍ର । ଏ ଦୁଇ ଜଣଙ୍କ ସହିତ ଆଉ ତିନିଜଣ ଘନିଷ୍ଠ ବନ୍ଧୁ ତଥା କଳାକାର ଥିଲେ କାଙ୍ଗାଳି ନାୟକ, ପାଣ୍ଡବ ପ୍ରଧାନ ଓ ଅର୍ଜୁନ ଦାଶ । ଏମାନଙ୍କ ମଧ୍ୟରେ ଭଲ ଯୋଗସୂତ୍ର ରହୁଥିଲା । ୧୯୪୮ରେ ଧନୁଯାତ୍ରାର ଉଦ୍ୟୋକ୍ତାମାନେ ହେଲେ କାଙ୍ଗାଳି ନାୟକ, ବିପିନ ସରାଫ୍, ଗୋପାଳ ସରାଫ୍, କୃଷ୍ଣ ଚନ୍ଦ୍ର ନାୟକ, ତିଲ ପ୍ରଧାନ, ଋଷଭ କର, ଲଖ ପ୍ରଧାନ, ଅପର୍ତ୍ତି ପାଣିଗ୍ରାହୀ, ବୃନ୍ଦାବନ ବିଶି, ମୁନୁ ବାରିକ, କିଶନ ଡ୍ରାଇଭର, କପିଳେଶ୍ୱର ଦାଶ, ରଘୁମଣି ଦାଶ, ବସନ୍ତ ଦାଶ, ରତନ ଦର୍ଜୀ, ବିପିନ ସାହୁ, ଶଙ୍କର ଦାଶ, ଚନ୍ଦ୍ରମଣି ଦାଶ, ଧନ ପ୍ରଧାନ, ଭୁଲ୍‌କୁ ସାହୁ, ଛାଳ ମାଷ୍ଟ୍ରେ, ନରେନ୍ଦ୍ର ସରାଫ୍, ରାହାସ ସରାଫ୍, ରାକ୍ଷୀ ସାହୁ, ରାମକୃଷ୍ଣ ହୋତା, ଶିବ ବଢ଼େଇ, ଲଳିତ ମୋହନ ସାହୁ, ଲଳିତ ମୋହନ ଦାଶ, ଧନପତି ବିର୍ତ୍ତିଆ, ନିଳମଣି ପୂଜାରୀ, ସଦାଶିବ ଷଡ଼ଙ୍ଗୀ, ବିଷ୍ଣୁ ପ୍ରଧାନ, ରାମ ଭୋଇ, ରତନ ପୋଢ଼, ଘାସିରାମ ପ୍ରଧାନ । ରାମଜୀ ମନ୍ଦିରରେ ଅନୁଷ୍ଠିତ 'ମଥୁରା ବିଜୟ' ନାଟକ ହିଁ ଧନୁଯାତ୍ରାର ଭିତ୍ତିଭୂମି ବୋଲି ବିବେଚନା କରାଯାଏ । ଏହି ନାଟକରେ କାଙ୍ଗାଳି ନାୟକଙ୍କ ସୁପୁତ୍ର ତ୍ରିବିକ୍ରମ ନାୟକ 'କଂସ'

ଓ ପୁତୁରା ଡୋଳାମଣି ନାୟକ ଅକ୍ରୁର ଭୂମିକାରେ ଅଭିନୟ କରିଥିଲେ ।

କଂସ ମହାରାଜ ରାମଜୀ ମନ୍ଦିରରୁ ବାହାରି ହାଟପଦାର ଧର୍ମରାଜ ସିଂ ଓ ଯୁଗଳ ସିଂଙ୍କ ଘର ସାମ୍ନାରେ ଥିବା ମଞ୍ଚରେ ଅଭିନୟ କରୁଥିଲେ । ୧୯୮୧ ମସିହାରେ ଗୋପପୁରରେ

ସ୍ୱର୍ଗତ ନୀଳମଣି ପୂଜାରୀଙ୍କ ଦୁଇ ନାତି ଗୋପାଳ ପୂଜାରୀ ଓ ଭବାନୀ ଶଙ୍କର ପୂଜାରୀଙ୍କୁ କୃଷ୍ଣ ଓ ବଳରାମ ଅଭିନୟ ଖୁବ୍ ଦର୍ଶକମାନଙ୍କର ଚିତ୍ତ ବିନୋଦନ କରିପାରି ଥିଲା ।

ଦୋରା ଧର୍ମଶାଳାରେ ଭୋଜନର ଆୟୋଜନ ହେଉଥିଲା । ନରେନ୍ଦ୍ର ସରାଫ୍, ଲଳିତ ମୋହନ ସାହୁ, ରଙ୍ଗମଣି ଦୋରା କଳାକାରମାନଙ୍କୁ ରଙ୍ଗପାଉଡ଼ର ବୋଲି ସୁସଜ୍ଜିତ କରାଉଥିଲେ । ଗଙ୍ଗାଧର ନଗରର ଘାସିରାମ ସାହୁ କଂସାସୁରର ପୋଷାକ, ମୁକୁଟ ତିଆରି କରିବା ସହ ବିଭିନ୍ନ କଳାକାରମାନଙ୍କ ପୋଷାକ ମଧ୍ୟ ତିଆରି କରି ଆସୁଛନ୍ତି ।

ଆଜି ପର୍ଯ୍ୟନ୍ତ କଂସ ଭୂମିକାରେ ଅଭିନୟ କରିଥିବା କଳାକାର ହେଲେ:

୧. ସ୍ୱର୍ଗତ ବୃନ୍ଦି ରଥ (ଦେଏଗାଁ) ବରଗଡ଼– ୧୯୪୮ ରୁ ୧୯୪୯
୨. ସ୍ୱର୍ଗତ ଭୀମସେନ ତ୍ରିପାଠୀ, ବରଗଡ଼– ୧୯୫୦
୩. ସ୍ୱର୍ଗତ ଯୁଧିଷ୍ଠିର ଶତପଥି, ବରଗଡ଼– ୧୯୫୭ ରୁ ୧୯୭୧
୪. ସ୍ୱର୍ଗତ ରାଧେଶ୍ୟାମ ଦାଶ, ବରଗଡ଼– ୧୯୭୩
୫. ସ୍ୱର୍ଗତ ଯୁଧିଷ୍ଠିର ଶତପଥି, ବରଗଡ଼– ୧୯୭୪ ରୁ ୧୯୮୦
୬. ଦେବେନ୍ଦ୍ର ବିଶ୍ୱାଳ, ହିର୍ଲିପାଲି, ଅତାବିରା– ୧୯୮୧
୭. ନୀଳାଞ୍ଚଳ ଦାଶ, ସୋହେଲା– ୧୯୮୨ ରୁ ୧୯୮୩
୮. ଗୋପାଳ ସାହୁ (ଏଲି), ବଲାଙ୍ଗୀର– ୧୯୮୨ ରୁ ୧୯୯୮
୯. ଭୁବନେଶ୍ୱର ପ୍ରଧାନ, ସରଲା, ବରଗଡ଼– ୧୯୯୯ ରୁ ୨୦୦୦
୧୦. ହୃଷିକେଶ ଭୋଇ, ତିରେଲି, ବରଗଡ଼– ୨୦୦୯ ରୁ ୨୦୧୪
୧୧. ହୃଷିକେଶ ଭୋଇ, ତିରେଲି, ବରଗଡ଼– ୨୦୧୪

ଭଚଳିତ ବର୍ଷ ପାଇଁ ଶ୍ରୀ ପ୍ରଦୀପ କୁମାର ପଣ୍ଡା– ମହାମନ୍ତ୍ରୀ ସାତ୍ୟକୀ ।

ସ୍ୱର୍ଗତ ଶ୍ରୀ ନନ୍ଦୀ କେଶରୀ ମହାପାତ୍ର– ମନ୍ତ୍ରୀ ।

ସ୍ୱର୍ଗତ ଶ୍ରୀ ରାମ ନାରାୟଣ ପଣ୍ଡା (ସମ୍ବଲପୁର)– ଅକ୍ରୁର ।

ସ୍ୱର୍ଗତ ଶ୍ରୀ ଶ୍ରେୟାଂଶ ମହାପାତ୍ର– ଶ୍ରୀକୃଷ୍ଣ ।

ସ୍ୱର୍ଗତ ଶ୍ରୀ ଆୟୁଷ କୁମାର ଦାସ (ବରପାଲି)– ବଳରାମ ।

ସ୍ୱର୍ଗତ ଶ୍ରୀ ପଞ୍ଚାନନ ବିର୍ତ୍ତିଆ– ମଧୁମଙ୍ଗଳ ।

ସ୍ୱର୍ଗତ ଶ୍ରୁତି ବିର୍ତ୍ତିଆ– ରାଧା ।

ଏମାନଙ୍କ ମଧ୍ୟରେ ଲାଳିତ୍ୟପୂର୍ଣ୍ଣ ସଂଳାପ, ଉଚ୍ଚକୋଟୀର ଅଭିନୟ, ବଳିଷ୍ଠ ଚେହେରା, ଭୋଜପୁରୀ, ହିନ୍ଦୀ ଭାଷାରେ ପାଣ୍ଡିତ୍ୟ ଏବଂ ପ୍ରତ୍ୟେକ ଦିନ ନୂଆ ନୂଆ ପୋଷାକଧାରୀ କଂସାସୁର ଭ୍ଭ ଯୁଧିଷ୍ଠିର ଶତପଥୀ କାଳକାଳକୁ ସ୍ମରଣୀୟ । ୧୯୮୦ ମସିହାରୁ କିଛିବର୍ଷ ଉଗ୍ରସେନ ଭୂମିକାରେ ବ୍ରହ୍ମା ପ୍ରଧାନ ନିଖୁଣଭାବେ ଅଭିନୟ କରି ଆସୁଥିଲେ । ସେ କହନ୍ତି– ସେତେବେଳେ ବିଜୁଳିବତୀ ବଦଳରେ ପେଟ୍ରୋମାକ୍ସ ଲାଇଟ୍‌ରେ ଏବଂ ବିନା ପାରିଶ୍ରମିକରେ କଳାକାରମାନେ ଜୀବନ୍ତ ଅଭିନୟ କରୁଥିଲେ ।

୧୯୫୬ ରୁ ୧୯୮୫ ମସିହା ପର୍ଯ୍ୟନ୍ତ ସ୍ୱର୍ଗତଃ ନାଟ୍ୟଗୁରୁ ହରେକୃଷ୍ଣ ପୂଜାରୀଙ୍କ ଏକାମ୍ରବୋଧ ଅକ୍ରୁର ଭୂମିକା ଆଜି ପର୍ଯ୍ୟନ୍ତ ସମସ୍ତ ଦର୍ଶକଙ୍କୁ ବାନ୍ଧି ରଖିଛି । ଯମୁନାର ଶୁଭ୍ରବାଲିରେ ଶ୍ରୀକୃଷ୍ଣଙ୍କ ପାଦଚିହ୍ନ ଦେଖି ପ୍ରଭୁଙ୍କ ପ୍ରତି ତଲ୍ଲୀନ ଭକ୍ତି ଭାବରେ ବୁଡ଼ିଯାଇ ଥିଲେ । ସେଥିପାଇଁ ଦର୍ଶକମାନେ ଅକ୍ରୁରଙ୍କୁ ଦେଖିବା ପାଇଁ ବ୍ୟାକୁଳ ହୋଇପଡୁ ଥିଲେ । ତାଙ୍କ ସ୍ମୃତିଚାରଣରୁ ଗୋଟିଏ ଦୃଶ୍ୟ ଏବେ ବି ଲୋକମାନଙ୍କ ପାଖରେ ଆବୋରି ରହିଛି । ଘଟଣାଟି ଥିଲା ଏହିପରି– ରାୟଗଡ଼ ଜିଲ୍ଲାର ଏକ ପଲ୍ଲୀ ଗାଁ ରୁ ଦଳେ ସ୍ତ୍ରୀ ଓ ପୁରୁଷ ଚାଉଳ, ଡାଲି ଧରି ଯାତ୍ରା ଦେଖିବାକୁ ଗୋପପୁର ଯାଇଥିଲେ । କୋଳରେ ସିଧାସଳଖ ଛିଡ଼ା ହୋଇପାରୁ ନଥିବା ଶିଶୁଟିଏ । କଷ୍ଟ ପାଉଥିଲା ଯେମିତି । ଗୋପପୁରରେ ନାଟକ ଚାଲିଥିଲାବେଳେ ଶ୍ରୀକୃଷ୍ଣଙ୍କ ଆସନ ପାଖରେ ଶିଶୁପୁତ୍ରକୁ ଗଡ଼େଇ ତା ମା' ବିକଳରେ ଭୋ..... ଭୋ..... ହୋଇ କାନ୍ଦିଲା । ଦର୍ଶକମାନଙ୍କ ଆଖିରୁ ବି ଅନବରତ ଲୁହ ଗଡ଼ି ଆସିଲା । ବାଳକ ଶ୍ରୀକୃଷ୍ଣ ହେଲେ ବି ସେତେବେଳକୁ ନିଜେ ଭଗବାନ ହୋଇଯାଇଥିଲେ । ସଙ୍ଗେ ସଙ୍ଗେ ନିଜ ଆସନରୁ ଠିଆ ହୋଇଗଲେ । କୃଷ୍ଣ ଓ ବଳରାମ ଅଇଁଠା ଫଳ ସେହି ଶିଶୁଟିକୁ ଖୁଆଇଦେଲେ । ଶିଶୁଟି ଅଇଁଠାଫଳ ଖାଇଲା । ଶ୍ରୀକୃଷ୍ଣଙ୍କ ସଖା 'ମାଳ' ଶିଶୁକୁ କାନ୍ଧରେ ବସେଇ ନୃତ୍ୟ କଲେ । ଦର୍ଶକମାନେ ବି ନାଚିଲେ ।

ତହିଁ ଆରବର୍ଷ ସେହି ସ୍ତ୍ରୀ ଲୋକଟି ଶିଶୁପୁତ୍ରକୁ ଧରି ଗୋପପୁରରେ ପହଞ୍ଚିଲା ସକାଳ ୧୦ ଘଣ୍ଟା ସମୟରେ । ସୁସ୍ଥ

ହୋଇଯାଇଥିବା ଶିଶୁକୁ ଦେଖିବା ପାଇଁ ସମସ୍ତେ ଆଶ୍ଚର୍ଯ୍ୟ ଭାବେ ରୁଣ୍ଡ ହୋଇଗଲେ ଯାତ୍ରାରେ । କିଏ କାଖେଇ ନେଲା ତ କିଏ କୋଳକୁ ନେଇ ଗେଲ କରୁଥିଲା । ସେହି ସ୍ତ୍ରୀ ଲୋକଟି ଶ୍ରୀକୃଷ୍ଣଙ୍କ ପ୍ରତି କୃତ୍ୟକୃତ ହୋଇଗଲା । ମନେ ମନେ ବିଚାରୁ ଥିଲା ନାଟକ ହେଲେ ବି ଶ୍ରୀକୃଷ୍ଣ ସତରେ ମଣିଷ (ବାଳକ) ଦେହକୁ ଆସି ଯାଇଛନ୍ତି । ତେଣୁ ଏଥିରୁ ଜଣା ପଡୁଥିଲା ସେତେବେଳର ଅଭିନୟରେ ସମସ୍ତେ ନିଜକୁ ଭୁଲିଯାଇ ଅଭିନୟର ଚରିତ୍ରକୁ ଦର୍ଶକ ପାଖରେ ପହଞ୍ଚେଇ ପାରୁଥିଲେ ।

ପୁତନା ଭୂମିକାରେ ଅଭିନୟ କରିଥିବା ସ୍ୱ ଦୂତୀ କେଉଁଟନ୍‌ଙ୍କ ଆବେଦନାତ୍ମକ ସଂଳାପ ଏବେ ବି ଲୋକ ମୁହଁରୁ ପାଶୋରି ହୋଇନି । ଗୋପପୁର (ଅମ୍ବାପାଲି)ର ଘରଘର ବୁଲି ସେ କହୁଥିଲେ – ''କୁଳର ଛୁଆ ମରିଯାଇଛେଁ ଯେ ମୋର୍ ଥନ, ଥନ୍ ଥନେଇ ଯାଉଛେ । ମୁଇଁ ମଥୁରାନୁ ଆଇଛେଁ । କେନ୍ ଭୁଆସେନ କେ ଗୁରସ୍ ନାଇଁ ହେବାର ଜେ କହିନିଅ ଘାଏ । ମୋର୍ ନାଁ ପୁତନା ଆଏ ଲୋ ।'' ଗାଁ ଦାଣ୍ଡରେ ଛୁଆ ଧରି ଯାଉଥିବା କୌଣସି ସ୍ତ୍ରୀଲୋକଙ୍କୁ ଦେଖିଲେ ଛୁଆକୁ ପାଇବା ଆଶାରେ ସେ କହୁଥିଲା– ''ବଡ଼ା ସୁନ୍ଦର ଛୁଆ ଟେ ରେ । ହଏରେ ଭୁଆସେନ୍, ଦେକ୍ ତ ଜେ ଇ ଛଆର୍ ପେଟ୍ ଲକ୍‌ଲକେଇଁ ଜାଉଛେ । ଭୁଖେଁ ହେଲାନ । ଗୁରସ୍ ଟିକେ ପିଏଇ ନେସିଁ ।''

ସ୍ତ୍ରୀଲୋକଟି ନାସ୍ତିବାଚକ ଶୁଣେଇ କହୁଥିଲା – ''ନାଇଁ ଗୋ ନାଇଁ । ଆମର୍ ଛୁଆକେ ଗୁରସ୍ ନାଇଁ ପିଏଇ ବଲୁଁ ।'' ପୁତନା ଉତ୍ତର ଦେଲା– ତୋର୍ ଦିହେଁ ଦୟା ମାୟା ଟିଖେ ନାଇଁ ନ କାଏଁ ଲୋ ଭୁଆସେନ୍? ଦେଖ୍ ତ ଇ ଛୁଆ ଭୁଖେଁ କେନ୍ତା ଗୁଲଗୁଲା ହଇଗଲାନ । ଦେ ତ, ଏଖେଇ ପାନେ ପିଏଇ ନେମି ।

ବାସ୍ତବିକ ଏହି ଦୃଶ୍ୟ ବାକ୍ୟାଳାପର ଅଭିନୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଏବଂ ମର୍ମସ୍ପର୍ଶୀ ।

ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦିବଂଗତ ବିଜୁ ପଟ୍ଟନାୟକ ଧନୁଯାତ୍ରା ସମୟରେ ମହାରାଜ କଂସର ନଗର ପରିକ୍ରମଣ ସମୟରେ ଆଦେଶ ମୁତାବକ ଏକଲକ୍ଷ ଟଙ୍କା ଜୋରିମାନା ଦେଇଥିଲେ । ସେହିପରି ହିନ୍ଦୀ ଚଳଚ୍ଚିତ୍ରର ବିଶିଷ୍ଟ ଅଭିନେତ୍ରୀ ନର୍ଗିସଙ୍କ ଭାଇ ଅନୱାର ହୁସେନ ମଧ୍ୟ ପାଞ୍ଚଶହ ଟଙ୍କା ଜୋରିମାନା ଦେଇଥିଲେ ବୋଲି ନଜିର ଅଛି ।

ଡାକ୍ତର ଯୋଗେଶ ଚନ୍ଦ୍ର ପାଢ଼ୀଙ୍କ ମତରେ ସେତେବେଳେ ୨ଟି ମଞ୍ଚ ବ୍ୟବସ୍ଥା ତତ୍କାଳୀନ ଯାତ୍ରା କମିଟି ସଂପାଦକ ଆଡ଼ଭୋକେଟ ବିଭୁତି ପାଢ଼ୀଙ୍କ ସମୟରୁ ଆରମ୍ଭ ହୋଇଥିଲା । ବି.ବି. ରେଡିଓ, ଇଣ୍ଡିଆ ଟୁଡେ ଓ ସୁରଭି ପ୍ରସାରଣ ଟିମ୍ ବରଗଡ଼କୁ ଆସି ଯାତ୍ରାର ବିବରଣୀ ସୂଚେଇ ଦେଇଥିଲେ ।

ଶିକ୍ଷକ ପ୍ରସନ୍ନ କୁମାର ଦାଶ ଅଭିଜ୍ଞତାକୁ ସାମ୍ନାରେ ଥୋଇ କୁହନ୍ତି ଯେ ଆଧାତ୍ମିକ ଦୃଷ୍ଟିକୋଣରୁ ଧନୁଯାତ୍ରାର ବ୍ୟାପକ ଗୁରୁତ୍ୱ ଥିଲା । ୧୯୭୩ ରୁ ୧୯୮୩ ପର୍ଯ୍ୟନ୍ତ କୃଷ୍ଣ ଭୂମିକାରେ ନିଜକୁ ପରଖିଥିବା କଳାକାର ଶ୍ରୀଯୁକ୍ତ ରବିନ୍ଦ୍ର ରଞ୍ଜନ ପୂଜାରୀ ବକ୍ତବ୍ୟ ବାଢ଼ନ୍ତି ଯେ ଗୋପପୁରର କଳାକାରମାନେ ବିଭିନ୍ନ ଦୃଶ୍ୟାବଳୀକୁ ଉପଭୋଗ୍ୟ କରିପାରୁ ଥିଲେ ।

ଧନୁଯାତ୍ରାର ନାମକରଣ ପଛରେ ଏକ ରୋଚକ କଥାର ଅବତାରଣା କରାଯାଇପାରେ । ୧୯୪୪ ମସିହାରେ ପ୍ରାକ୍ ସ୍ୱାଧୀନତା କାଳରେ ଭଟଲି ଗାଁରେ ଏହି ଯାତ୍ରାର ପ୍ରାଥମିକତା ଉପଲବ୍ଧି ହୋଇଥିଲା । ଉଦ୍ୟୋକ୍ତା ଥିଲେ ପାଟଣାଗଡ଼ର ଶ୍ରୀ ବିଦ୍ୟାଧର ନାୟକ ଜଣେ ନାମକରା କବିରାଜ । ସେହି ସମୟରେ ପାଟଣାଗଡ଼ର ଧନିକ ମେନା ମେହେର ନାମକ ଜଣେ କୁଷ୍ଠରୋଗୀ ଚିକିତ୍ସାଧୀନ ହୋଇ ଆରୋଗ୍ୟଲାଭ କରିଥିଲେ । ଉପକୃତଜନିତ କବିରାଜଙ୍କୁ ପାଟ, ପାଛୋଡ଼ା ଓ ଚଉଦଶହ ରୋପ୍ୟମୁଦ୍ରା ଦାନ କରିଥିଲେ । ଏମିତି ଏକ ଦୁର୍ଯୋଗ ଆସି ପହଞ୍ଚିଲା ଯେ କବିରାଜଙ୍କ ସାତବର୍ଷର ପୁତ୍ର 'ଧନୁର୍ଜୟ' ଅକାଳରେ ମୃତ୍ୟୁବରଣ କଲା । ତେଣୁ ଏ ଦାରୁଣ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ କବିରାଜ ଏବଂ ଧର୍ମକାର୍ଯ୍ୟରେ ନିଜକୁ ନିୟୋଜିତ କରିବା ପାଇଁ କୃଷ୍ଣଚରିତର ମାଧୁର୍ଯ୍ୟଭରା ଧନୁଯାତ୍ରା ଆୟୋଜନ କରିଥିଲେ ଭଟଲିରେ । ସଂଚାର କଳାକାର, ନାଟ୍ୟଦଳ, ଲୋକନୃତ୍ୟ ଦଳ ଏଥିରେ ଅଂଶ ଗ୍ରହଣ କରିଥିଲେ ।

କେତେକ ଗବେଷକଙ୍କ ମତରେ – ଶ୍ରୀଚୈତନ୍ୟ ମହାପ୍ରଭୁ ପଶ୍ଚିମବଂଗର ଦୀୟା ଦ୍ୱୀପରୁ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶା ଆଗମନ କରିଥିଲେ । ଓଡ଼ିଶା ଓ ପୂର୍ବ ମଧ୍ୟପ୍ରଦେଶର ବୈଷ୍ଣବ ଧର୍ମର ଭକ୍ତମାନଙ୍କ ମଧ୍ୟରୁ କତିପୟ କଳାକାର ସଞ୍ଚାର ମୃଦଙ୍ଗ ବାଦନ ସହିତ ଗୀତ ଓ ନୃତ୍ୟ ମାଧ୍ୟମରେ କୃଷ୍ଣଲୀଳାମୃତକୁ ପାନ କରେଇବା ଅଭିପ୍ରାୟ ନେଇ ବାହାକ୍ ଯାତ୍ରା ଆରମ୍ଭ କରିଥିଲେ । ଏହି ଯାତ୍ରା ପରେ ଧନୁଯାତ୍ରାର ଜନ୍ମଦାତା ବୋଲି ଅଭିହିତ ରହିଛି ।

ପୌଷମାସରେ ଧନୁଯାତ୍ରା ଅନୁଷ୍ଠିତ ହେବାର ତାତ୍ପର୍ଯ୍ୟ ହେଲା– କୃଷି ପ୍ରଧାନ ବରଗଡ଼ ଜିଲ୍ଲାର ଅଧିବାସୀମାନେ ଧାନ ଅମଳ କରି ପୌଷ ମାସରେ ବିଶ୍ରାମ ନେବା ପୂର୍ବକ ଆନନ୍ଦ

ଉଲ୍ଲସିତ ରୁହନ୍ତି । ଏ ମାସରେ ମଧ୍ୟ ବିବାହ କାର୍ଯ୍ୟସୂଚୀ ନଥାଏ, ଆମୋଦ ଦାୟକ ପାଣିପାଗରେ ଯାନି-ଯାତ୍ରା, ମେଳା-ଉତ୍ସବକୁ ଆଦରି ନିଅନ୍ତି । କୃଷ୍ଣ ହେଉଛନ୍ତି ଗୋପାଳନ ଓ ଗୋରକ୍ଷକ । ବଡ଼ଭାଇ ବଳରାମ ହେଉଛନ୍ତି ହଳଧାରୀ । କୃଷକମାନେ କୃଷିବର୍ଷର ଶେଷରେ ଏହି ଦୁଇ ପ୍ରତୀକ ଦେବତାଙ୍କୁ ପୂଜା କରିଥାନ୍ତି । କୃଷ୍ଣ ଏଗାର ବର୍ଷ ବୟସରୁ ଗୋପପୁରରୁ ମଥୁରାପୁରକୁ ଆସିଥିଲେ । ମାତ୍ର ପୌଷ ମାସରେ ନୁହେଁ । ତେଣୁ ଏଗାର ବର୍ଷର ବାଲ୍ୟଲୀଳା ଏହି ପୌଷମାସରେ ଏଗାରଦିନ ମଧ୍ୟରେ ଆୟୋଜନ କରାଯାଇଥାଏ, ଯାହାକି ଧନୁଯାତ୍ରାର ସଞ୍ଜ୍ଞାକୁ ସୂଚେଇ ଥାଏ ।

ବରଗଡ଼ ସହର ନିକଟରେ ଅମ୍ବାପାଲି ଗାଁ ପାଲଟିଯାଏ ଗୋପପୁର । ଶ୍ରୁତିଗୋଚର ଯେ ଏହି ଗାଁରେ ବିର୍ତ୍ତିଆ ପରିବାର ବାସ କରନ୍ତି । ବିର୍ତ୍ତିଆ ବା ବିରତିଆ ଶବ୍ଦଟି ବିରତି (ବିଶ୍ରାମ) ଶବ୍ଦରୁ ନିଃସୃତ । ଶ୍ରୀକ୍ଷେତ୍ର ଧାମ ପୁରୀ ଏବଂ ଦୂରଦୂରାନ୍ତରୁ ଆସୁଥିବା ପର୍ଯ୍ୟଟକମାନେ ଅମ୍ବାପଲ୍ଲୀର ବିରାଟ ଆମ୍ର ବୃକ୍ଷ ଛାୟା ତଳେ ବିଶ୍ରାମ ନେଉଥିଲେ । ବିପଣୀ ସାରି ଅନେକ ଜଗନ୍ନାଥ ପ୍ରେମୀ ଭକ୍ତ ବି ଏହି ସ୍ଥାନରେ ସମୟ ଅତିକ୍ରାନ୍ତ କରି ନିଜ ଅଂଚଳକୁ ପ୍ରସ୍ଥାନ କରୁଥିଲେ । ବିରାଟ ଆମ୍ର ବୃକ୍ଷର ଉପସ୍ଥିତି ଯୋଗୁଁ ଅମ୍ବାପାଲିର ନାମକରଣ ଏବଂ ବିର୍ତ୍ତିଆ ପରିବାର ଏହି ଦର୍ଶନାର୍ଥୀମାନଙ୍କୁ ଆତିଥ୍ୟ ପ୍ରଦାନ କରି ପ୍ରସିଦ୍ଧି ଅର୍ଜନ କରିଥିବାର ନଜିର ରହିଛି । ଜରାବ୍ୟାଧି ପୁଣ୍ୟତୋୟା ନଦୀର ନା ଜୀରା, ଯାହାକି ଧନୁଯାତ୍ରା ଅବସରରେ 'ଯମୁନା' ନାମରେ ଶୋଭାପାଏ ।

ଧନୁଯାତ୍ରାର କଥାବସ୍ତୁ ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧର ଗୋପଲୀଳା, ଅଚ୍ୟୁତାନନ୍ଦଙ୍କ ହରିବଂଶ ପୁରାଣ ଉପରେ ପର୍ଯ୍ୟବସିତ । ଶ୍ରୀକୃଷ୍ଣଙ୍କ ଚତୁର୍ବିଧ ଲୀଳା ମଧ୍ୟରୁ ଗୋପଲୀଳା ଓ ମଥୁରାଲୀଳା ଆହ୍ଲାଦ ଦାୟକ ପ୍ରେମଭକ୍ତି ରସାମୃତ ଲୀଳା ଏହି ଧନୁଯାତ୍ରାର ପ୍ରାଣ କହିଲେ ଭୁଲ ହେବନି ।

ଗୋପପୁର (ଅମ୍ବାପାଲି)ରେ ରହିଛି କଦମ୍ବ ବୃକ୍ଷ, ଯାହାକି ଶ୍ରୀକୃଷ୍ଣଙ୍କ ବସ୍ତ୍ରହରଣ ଦୃଶ୍ୟକୁ ଲୋକମାନଙ୍କ ଭିତରେ ପ୍ରେମ ଉଦ୍ଦୀପନା ସୃଷ୍ଟି କରେ । ଶ୍ରୀକୃଷ୍ଣଙ୍କ କେଳିକଦମ୍ବର ଦୃଶ୍ୟାଭିନୟ ମଧ୍ୟ ନାଟ୍ୟକଳାକୁ ରସାଣିତ କରେ । ଗ୍ରାମର ପୂର୍ବପଟେ ଥିବା ଫକୀରା ବନ୍ଧରେ କାଳୀୟଦଳନ, ବେଣୁ ବାବା ମଠ ସମ୍ମୁଖ ଶିବ ମନ୍ଦିରରେ ଯାମଳାର୍ଜୁନ ଭଞ୍ଜନ, ମଠ ପଡ଼ିଆରେ ଶ୍ରୀକୃଷ୍ଣ, ବଳରାମ ଓ ଗୋପୀ ଗୋପାଙ୍ଗନାମାନଙ୍କର ଆକର୍ଷଣୀୟ ବଣଭୋଜି ମନରେ ନିଆରା ଦୃଶ୍ୟପଟ୍ଟ ଆଙ୍କିଦିଏ । ବୃନ୍ଦାବନ ପଡ଼ିଆରେ ମହାରାଜା କଂସଙ୍କ ପ୍ରେରିତ ଅକ୍ରୁର ଆଗମନ ଯେତିକି ଆଲୋଡ଼ନ ତିଆରି କରେ, ଅମ୍ବାପାଲି ଛକରେ କୃଷ୍ଣ-ବଳରାମଙ୍କ ମଥୁରାକଟକ ଯିବାର ଦୃଶ୍ୟ ମାତା ଯଶୋଦା ଏବଂ ଗୋପପୁରବାସୀଙ୍କ ହୃଦୟରେ ଏକ ଦୁଃଖାତ୍ମକ ଭାବୋଦୀପକ ମନନଶୀଳତା ପରିବେଶ ରଚନା କରେ, ସେମାନଙ୍କ କଣ୍ଠରୁ ମୂର୍ଚ୍ଛନା ଶୁଭେ– 'ଆରେବାବୁ ଶ୍ୟାମଘନ ତୁ ଗଲେ ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବିରେ ଜୀବଧନ, ତୋ ବିହୁନେ ନିତି ଝୁରୁଥିବିରେ ଜୀବଧନ ।'

ଅମ୍ବାପାଲି ଗାଁର ନନ୍ଦମଣ୍ଡପରେ କୃଷ୍ଣ ବଳରାମଙ୍କ ବାଲ୍ୟଲୀଳା ସଂଘଟିତ ହେବା ସହ ପୁତନା, ବକାସୁର, ଶକଟାସୁରଙ୍କ ନିଧନ ମଧ୍ୟ ଦର୍ଶକମାନଙ୍କୁ ଛୁଇଁଥାଏ ।

ମଥୁରାନଗରୀ (ବରଗଡ଼)ରେ କଂସ ଦରବାର, ରଙ୍ଗମହଲ ଖୁବ୍ ଆକର୍ଷଣୀୟ ଦିଶେ । ନିଶାମଣି ହାଇସ୍କୁଲ ପଡ଼ିଆରେ କଂସ ମହାରାଜାଙ୍କ ବାକ୍ୟାଳାପରେ ବିମୁଗ୍ଧ ହୋଇପଡ଼ନ୍ତି । କେବଳ ସ୍ଥାନୀୟ କଳାକାର ନୁହନ୍ତି । ପଡ଼ୋଶୀ ରାଜ୍ୟର ଲୋକନୃତ୍ୟ ଏବଂ ବିଦେଶୀ ଲୋକନୃତ୍ୟର ଏକ ନିଆରା ଅଫୁରନ୍ତ ଆନନ୍ଦ ମନ ଭିତରେ ଭରିଦିଏ । ୫୦ ଫୁଟ ଉଚ୍ଚତା ଏବଂ ୭୦ ଫୁଟ ଉଚ୍ଚତା ବିଶିଷ୍ଟ ଏହି ସୁସଜ୍ଜିତ ରଂଗ ମଞ୍ଚରେ ପ୍ରତି ସନ୍ଧ୍ୟାରେ ଓଡ଼ିଶା, ଭାରତ ଏପରିକି ବିଦେଶର ବିଶିଷ୍ଟ କଳାକାରଙ୍କ କଳାନୈପୁଣ୍ୟ ପ୍ରଦର୍ଶିତ ହୋଇଥାଏ, ଯାହାକି ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଆମୋଦ-ପ୍ରମୋଦର ଖୋରାକ ଯୋଗାଇଥାଏ । ସଂସ୍କୃତିକ ବିଭବକୁ ମଜଭୁତ କରିବା ସହ ହଜିଲା ଲୋକ ସାଂସ୍କୃତିକୁ ମନେ ପକାଇଦିଏ ।

ହାଟପଦାରେ କଂସ ମହାରାଜଙ୍କ ଦରବାରର ଉଚ୍ଚତା ୭୦ ଫୁଟ ଏବଂ ଚଉଡ଼ା ୧୨୦ ଫୁଟ । କେନ୍ଦ୍ରସ୍ଥଳରେ ମହାରାଜଙ୍କ ସିଂହାସନ । ମଞ୍ଚରେ ଶିବଙ୍କ ମନ୍ଦିର । ପୂଜାଅର୍ଚ୍ଚନା କରି କଂସ ମହାରାଜ ନିଜର ଭାବ ବ୍ୟକ୍ତ କରନ୍ତି । ନୃତ୍ୟ, ଗୀତମନସ୍କ କଳାକାରଙ୍କୁ ପ୍ରୋତ୍ସାହନ ଦେବା ଆଳରେ ସେମାନଙ୍କୁ କଳା ପ୍ରଦର୍ଶନ କରିବାକୁ ମହାମନ୍ତ୍ରୀଙ୍କୁ ଆଦେଶ ଦିଅନ୍ତି । ନିଜ ସଂଳାପରେ ଧୂରୀଣ କଂସ ମହାରାଜଙ୍କ ଅଭିନୟ ଚାତୁରୀ ବାସ୍ତବିକ ହୃଦୟସ୍ପର୍ଶୀ । ଦଣ୍ଡେ ଠିଆ ହୋଇ ନ ଦେଖିଲେ ବିଶ୍ୱାସ କରି ହେବନି ।

ଭରତମୁନିଙ୍କ ନାଟ୍ୟଶାସ୍ତ୍ର ଆଧାରରେ ଧନୁଯାତ୍ରାର ନିର୍ଦ୍ଦେଶକ ନିଖୁଣ ଭାବରେ ନିର୍ଦ୍ଦେଶନା ଦିଅନ୍ତି । ମଥୁରା ନଗରୀ ଓ ଗୋପପୁରରେ ଅନୁଷ୍ଠିତ ଅଭିନୟକୁ ପୃଥକ ଭାବେ ନିର୍ଦ୍ଦେଶନା ଦିଅନ୍ତି ନିର୍ଦ୍ଦେଶକ ସୁଲଭ ଢ଼ଙ୍ଗରେ । ଜୀବନ୍ତ ରୂପରେ । କଳାକାରମାନେ ପାରିଶ୍ରମିକ ଅପେକ୍ଷା ସୁଚାରୁରୂପେ ଅଭିନୟ

କରି ଦର୍ଶକମାନଙ୍କୁ ବିମୋହିତ କରିଦିଅନ୍ତି ଏବଂ ଆସନ୍ତା ଥର ଉପଭୋଗ କରିବାର ଅଭୀପ୍ସାକୁ ଚେତେଇ ଦିଅନ୍ତି ।

ପୌଷମାସ ଶୁକ୍ଳ ପଞ୍ଚମୀରେ ଧନୁଯାତ୍ରାର ଅୟମାରମ୍ଭ । କଂସର ନିର୍ଦ୍ଦେଶରେ ଦେବକୀ–ବସୁଦେବଙ୍କ ବିବାହ, କଂସଙ୍କ ଦ୍ୱାରା ପିତା ଉଗ୍ରସେନଙ୍କ ଗାଦିଚ୍ୟୁତ, କଂସଙ୍କ ରାଜ୍ୟାଭିଷେକ ପଦରୁ ଆରମ୍ଭ ହୁଏ ଧନୁଯାତ୍ରା ଖୋଲା ରଂଗମଞ୍ଚରେ । ସେଇଭଳି ଗୋପପୁର (ଅମ୍ବାପାଲି)ରେ ମଧ ବଳରାମ ଓ ନନ୍ଦରାଣୀଙ୍କ ଭାଗବତ ପ୍ରାପ୍ତି ସକାଶେ ପୂଜାର୍ଚ୍ଚନା, ସନ୍ଧ୍ୟାରେ ଯମୁନା ଆଳତିର ମଧୁର ମୂର୍ଚ୍ଛନା ଶୁଭେ । ଶ୍ରୀକୃଷ୍ଣଙ୍କ ଗୋପଲୀଳା, ରାଧା ଗୋପାଙ୍ଗନା ସହିତ ରାସକ୍ରୀଡ଼ା, ଅସୁର ନିଧନ, ମଥୁରାକଟକ ଆଗମନ, କୁବୁଜା ଉଦ୍ଧାର, ସୁଦାମାଙ୍କଠାରୁ ମାଳା ଗ୍ରହଣ, କୁବଳୟା, ଚାଣୁର, ମୁଷ୍ଟିକ ନିଧନ, ଧନୁଭଗ୍ନ ଏବଂ ପରିଶେଷର କଂସର ମଞ୍ଚାରୁ ପଡ଼ି ମୃତ୍ୟୁ ଘଟଣାର ଦୃଶ୍ୟକୁ ନିଖୁଣ ଭାବେ ଅଭିନେତା / ଅଭିନେତ୍ରୀ ମାନେ ଦୃଶ୍ୟାଭିନୟରେ ପ୍ରଦର୍ଶନ କରିଥାନ୍ତି । ଏହି ଦୃଶ୍ୟ ସମୂହ କେତେବେଳେ ନଦୀକୂଳରେ, ବୃନ୍ଦାବନରେ, କଦମ୍ବ ବୃକ୍ଷ ମୂଳରେ, ପୁଷ୍କରିଣୀ, ଦେବଦେବୀ ମନ୍ଦିରରେ, ଗ୍ରାମ ମଣ୍ଡପ, ଜନପଦ ଆଦି ସ୍ଥାନରେ ଅଭିନୀତ ହୋଇଥାଏ । ରାସ୍ତା ଏବଂ ପ୍ରଦର୍ଶିତ ସ୍ଥାନରେ ଚତୁଃପାର୍ଶ୍ୱରେ ଉପସ୍ଥିତ ହୋଇ ଦର୍ଶକମାନେ ଆତ୍ମତୃପ୍ତି ପାଆନ୍ତି ।

କାଳୀୟ ଦଳନ ଦୃଶ୍ୟପଟ୍ଟରେ ବାଲ୍ୟକୃଷ୍ଣଙ୍କ ମହିମାମୟ ନୃତ୍ୟନାଟିକା ସାଧାରଣ ମଣିଷ ପକ୍ଷେ ସମ୍ଭବ ନୁହେଁ । ଗୋପପୁରବାସୀ ନିବିଷ୍ଟ ଚିତ୍ତରେ ଏ ଆଧ୍ୟାତ୍ମିକ ସଂରଚନାକୁ ଉପଲବ୍ଧି କରୁଥାନ୍ତି । କଂସ ମହାରାଜ ନିଜର ବିଶ୍ୱସ୍ତ ମଲ୍ଲଯୋଦ୍ଧାଙ୍କ ନିଧନର ଖବର ପ୍ରାପ୍ତିରେ ଅକ୍ରୁରଙ୍କୁ ଗୋପପୁର ପ୍ରେରଣ କରନ୍ତି । ଅକ୍ରୁର ନିର୍ଦ୍ଦେଶ ମାନି ଗୋପପୁରରେ ପ୍ରବେଶ କରନ୍ତି ଓ ମାତ୍ର କୃଷ୍ଣ–ବଳରାମଙ୍କୁ ଚିହ୍ନି ପାରନ୍ତିନି ସହଜରେ । କାରଣ ସେ ସାଧାରଣ ମଣିଷ । କୃଷ୍ଣ–ବଳରାମ କିନ୍ତୁ ନିଜର ଈଶ୍ୱର ସତ୍ତାକୁ ପ୍ରକଟାଇ ଅକ୍ରୁରଙ୍କ ଦର୍ଶନ ଦିଅନ୍ତି ଈଶ୍ୱରୀୟ ଢ଼ଙ୍ଗରେ ।

ଅକ୍ରୁର ଦେଖି ବିଚାରଇ । ରାମ ଗୋବିନ୍ଦ ନ ଚିହ୍ନଇ ॥
ସର୍ବେ ଦିଶନ୍ତି ଏକ ପରିମତେ । ମୁଁ ଅବା ଜାଣିବି କେମନ୍ତେ ॥
ଦାସବତ୍ସଳ ଭଗବାନ । ଜାଣିଲେ ଅକ୍ରୁରର ମନ ॥
ତକ୍ଷଣେ ନିଜ ରୂପ ହୋଇ । ଗାଈ ଦୁହନ୍ତି ବେନିଭାଇ ॥
(୧୦ମ ସ୍କନ୍ଦ ଭାଗବତ, ୪୧ ଅଧ୍ୟାୟ)

ସାଧାରଣ ବାଳକ ହେଲେ ମଧ କୃଷ୍ଣ–ବଳରାମଙ୍କ ପୋଷାକ ସଜ୍ଜିତ ନିଖୁଣ ଅଭିନୟ ଗୋପପୁରବାସୀଙ୍କୁ ଆହ୍ଲାଦିତ କରିବା ସହ ବିଷ୍ଣୁପ୍ରେମରେ ଉବୁଟୁବୁ କରାଏ । ଗୋପପୁରର ସମସ୍ତ ଲୀଳା ସମାପ୍ତି କରି ମଥୁରା ନଗରୀରେ ପ୍ରବେଶ କଲାପରେ ଏ ଦୁଇଭାଇଙ୍କୁ ଜନସାଧାରଣ ଭକ୍ତିପୂତ ଭାବରେ ପୂଜା ଅର୍ଚ୍ଚନା କରିଥାନ୍ତି । ସତେ ଯେପରି ସ୍ୱୟଂ ଭଗବାନଙ୍କୁ ପାଖରେ ପାଇଛନ୍ତି । କୁବ୍‌ଜା କଂସ ମହାରାଜଙ୍କ ପାଇଁ ଉଦ୍ଦିଷ୍ଟ ସୁଗନ୍ଧ ଚନ୍ଦନ ବିଷ୍ଣୁପ୍ରେମରେ ପାଗଳିନୀ ହୋଇ କୃଷ୍ଣ ବଳରାମ ଦୁଇଭାଇଙ୍କ ଶରୀରରେ ଲେପନ କରିବା ଏବଂ ସୁନ୍ଦରୀ ତରୁଣୀରେ ରୂପାନ୍ତରିତ ହେବାର ଦୃଶ୍ୟ ଦର୍ଶନାର୍ଥୀମାନଙ୍କ ମନରେ ଆଧ୍ୟାତ୍ମିକ ଭାବ ଉଦ୍ରେକ କରିଥାଏ । କଂସ ପରି ଅତ୍ୟାଚାରୀ, ବଳିଷ୍ଠ ରାକ୍ଷସରୂପୀ ମଣିଷର ନିଧନ କରିବାରେ ଦୁଇ ବାଳୁତ କୁମାରଙ୍କ ଭୂମିକା ଏକ ଆଧ୍ୟାତ୍ମିକ ଅଲୌକିକ ବୋଲି ମନେ ହୁଏ । ଏଣୁ ଧନୁଯାତ୍ରାର ପ୍ରତିଟି ଅଧ୍ୟାୟରେ ପରବ୍ରହ୍ମଙ୍କ ଲୀଳା ପ୍ରକଟିତ ହୋଇଥାଏ ଓ ସାଧାରଣ ମଣିଷ ଏ ସମସ୍ତ ଦୃଶ୍ୟରାଜିକୁ ଉପଭୋଗ କରି ଐଶ୍ୱରିକ ଭାବନାରେ ତଲ୍ଲୀନ ହୋଇଯିବା ନିଶ୍ଚିତ ଭାବେ ଆଧ୍ୟାତ୍ମିକତାର ପରିଚୟ ଦିଏ । 'ମଥୁରା ମଙ୍ଗଳ' କାବ୍ୟର ଛାୟାରେ ଲିଖିତ ସୁନ୍ଦର ଏବଂ ସାବଲୀଳ ଭାବସ୍ପର୍ଶୀ ସଂଳାପଗୁଡ଼ିକ କୃଷ୍ଣୋନ୍ମନୋଭାବାପନ୍ନ ହୋଇ ପଥଭ୍ରଷ୍ଟ ଜନତାକୁ କଂସରୂପୀ ସ୍ୱେଚ୍ଛାଚାରିତା ଗୁଣରୁ ରହିତ ହେବା ପାଇଁ ସୂଚେଇ ଦେବା ହିଁ ମହୋତ୍ସବର ଉଦ୍ଦେଶ୍ୟ ।

ସାମାଜିକ ଦୃଷ୍ଟି ପକାଇଲେ ଜଣାପଡ଼େ କଂସ ଯେଉଁଭଳି ଅନୀତି, ଅନ୍ୟାୟ ଅବିଚାରକୁ ପାଥେୟ କରି ରାଜ୍ୟକାର୍ଯ୍ୟ ତୁଲାଉଥିଲେ ନିରୀହ ପ୍ରଜାମାନଙ୍କୁ ଅତ୍ୟାଚାର କରୁଥିଲେ, ସ୍ୱଚ୍ଛାଚାରିତା ଭାବେ ଆଦେଶ ଦେଇଥିଲେ, ତାହାର ନିଖୁଣ ଛାପ ସାମ୍ପ୍ରତିକ ସମାଜରେ ପ୍ରତିଫଳିତ ହୋଇଚାଲିଛି । ଅମଣିଷ ହେଇଯାଇଛି ଅତ୍ୟାଚାରୀ ମଣିଷ । 'ଜୋର ଯା'ର, ମୁଲକ ତାର'ର ସଜ୍ଞାକୁ ନିଜର କରି ବାହୁବଳ ପ୍ରୟୋଗ କରିଚାଲିଛି । ଅମାନୁଷିକ ଭାବେ ସେହି ପରିପ୍ରେକ୍ଷୀରେ ଧନୁଯାତ୍ରାର ଆୟୋଜନ ବର୍ଷକୁ ଥରେ ହେଲେ ବି କଂସର ନଗର ପରିଭ୍ରମଣ ସମୟର ବାକ୍ୟାଳାପ ଏବଂ ଦୁଷ୍ଟ ମଣିଷ ସୁଧୁରିବାର ପରିକଳ୍ପନା ପ୍ରକୃତରେ ପ୍ରଶଂସାର୍ହ । ଏହି ଯାତ୍ରାର ବିଶେଷତଃ, କଂସ ମହାରାଜ ବିଭିନ୍ନ ପଡ଼ା ଭ୍ରମଣ କଲାବେଳେ, ସହରର ସମସ୍ତ ଅଧିକାରୀମାନେ ବି ନିରବି ଯାଆନ୍ତି । ଯାହାକୁ ଯାହା ଆଦେଶ ଦିଅନ୍ତି ଆଜ୍ଞାଧୀନ ହୋଇପଡ଼ନ୍ତି ଅବିଳମ୍ବେ । କାହାକୁ ଗୁରୁଦଣ୍ଡ ତ କାହାକୁ ଲଘୁ ଦଣ୍ଡ । ସ୍ୱାସ୍ଥ୍ୟ ପରିମଳ, ପାନୀୟ ଜଳଯୋଗାଣ ସଡ଼କ ପରିବହନ, ଜନସାଧାରଣଙ୍କ ସମସ୍ତ ଅସୁବିଧାକୁ ହୃଦୟଙ୍ଗମ କରନ୍ତି । ଆଦେଶ ଦିଅନ୍ତି ସେହି ସଂସ୍ଥାର ଅଧିକାରୀମାନଙ୍କୁ ଏବଂ ଯଥୋଚିତ ସ୍ୱର୍ଣ୍ଣମୁଦ୍ରା ଜୋରିମାନା ପ୍ରଦାନ କରିବାକୁ । ହସ୍ତୀପୃଷ୍ଠରେ କଂସ ମହାରାଜାଙ୍କ ଏ ପ୍ରକାର ଆଚରଣ ବିଶୃଙ୍ଖଳିତ ଅଧିକାରୀଙ୍କ ମନରେ ଭୀତି

ସଞ୍ଚାର କରେ ଏବଂ ନିଜକୁ ସଂଶୋଧିତ ହେବାର ବାଟ ଦେଖାଏ । ସାମାଜିକ ବ୍ୟବସ୍ଥା ସୁଧୁରିଯାଏ । ଆଧ୍ୟାତ୍ମିକ ମଣିଷ ମନରେ ଈଶ୍ୱର ଭାବନା ଜାଗ୍ରତ କରାଏ । ବିଶ୍ୱାସେ ମିଳଇ ହରି / ତର୍କେ ବହୁଦୂରେ । ବାସ୍ତବିକ୍ ଏ ମହାନ ଉକ୍ତି ଜାଗତିକ ଚୈତନ୍ୟକୁ ସଜାଗ କରେ । ଈଶ୍ୱର ପ୍ରାପ୍ତି ହୃଦୟରେ ରସାଣିତ ହୁଏ । ଧନୁଯାତ୍ରାର ବିଭିନ୍ନ ଅଭିନୟରେ ମଧ ଏହି ଆଧ୍ୟାତ୍ମିକତା ପରିସ୍ଫୁଟନ ହୋଇଥାଏ । ବନ୍ଦୀଶାଳାରେ କୃଷ୍ଣଙ୍କ ବାଳରୂପର ପ୍ରଦର୍ଶନ, ବସୁଦେବ–ଦେବକୀଙ୍କ ପରି ସାଧାରଣ ମନୁଷ୍ୟ ପାଇଁ ଏକ ଅଲୌକିକ ଘଟଣା ପାଲଟିଯାଏ । ବୈରଭାବ ପୋଷଣ କରୁଥିବା ପୁତନାକୁ ଶ୍ରୀକୃଷ୍ଣ କୌଶଳକ୍ରମେ ନିଧନ କରିବା ମଧ୍ୟ ଏକ ଅଲୌକିକ ରହସ୍ୟର ଉନ୍ମୋଚନ । କୃଷ୍ଣ–ବଳରାମ ନିଜ ସଖାଙ୍କ ସହିତ ବଣଭୋଜିରେ ଯେଉଁ ଅପୂର୍ବ ଲୀଳା ପ୍ରଦର୍ଶନ କରିଥାନ୍ତି, ଦୂରଦୂରାନ୍ତରୁ ଆସିଥିବା ଭକ୍ତମାନଙ୍କ ମନରେ ଈଶ୍ୱରପ୍ରାପ୍ତିର ମହାର୍ଘ ସନ୍ଦେଶ ବାରି ହୋଇପଡ଼େ । ବାସ୍ତବିକ୍ ବରଗଡର ଲୋକନାଟକ ଧନୁଯାତ୍ରା, କଳା ଓ ସଂସ୍କୃତିର ଶ୍ରେଷ୍ଠ ନିଦର୍ଶନ ଏହା ସ୍ୱୀକାର୍ଯ୍ୟ । ସମସ୍ତେ ଏକତ୍ରିତ ହୋଇ ଉପଭୋଗ କରି କଳାକାରମାନଙ୍କୁ ଉତ୍ସାହିତ କରିବା ସହ ସଂସ୍କୃତିକୁ ବଞ୍ଚେଇ ରଖିବା ।

ଜଳ ବିଭାଜିକା କାର୍ଯ୍ୟାଳୟ
ବରଗଡ–୭୬୮୦୨୮



## ‘ଖଦୀ’ ହେଉଛି ଶ୍ରେଷ୍ଠ ପରିବେଶ ଉପଯୋଗୀ ଶିଳ୍ପ

ପରିବେଶ ଉପଯୋଗୀ ଶିଳ୍ପମାନଙ୍କ ମଧ୍ୟରେ ଖଦୀ ହେଉଛି ଶ୍ରେଷ୍ଠ । ନିରନ୍ତର ବିକାଶ ପାଇଁ ଖଦୀ ସବୁଠାରୁ ଭଲ ମାଧ୍ୟମ । ଆଜି ବିଶ୍ୱରେ ପରିବେଶ, ପ୍ରଦୁଷଣ ଓ ଜଳବାୟୁ ପରିବର୍ତ୍ତନ ପାଇଁ ସବୁ ଦେଶ ଚିନ୍ତା କରୁଥିବା ବେଳେ, ଖଦୀ ଶିଳ୍ପ ଏକ ପରିବେଶ ଉପଯୋଗୀ ଶିଳ୍ପ ଭାବେ ସବୁ କ୍ଷେତ୍ରରୁ ସହଯୋଗ ପାଇବା ଉଚିତ୍ । ନୂଆ ଟେକ୍ନୋଲୋଜି ଓ ଡିଜାଇନ୍‌ର ପ୍ରୟୋଗ ଦ୍ୱାରା ଖଦୀର ପ୍ରସାର କରାଯିବା ଉଚିତ୍ । ସ୍ଥାନୀୟ ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡର ପରିସର ମଧ୍ୟରେ ଆୟୋଜିତ ଖଦୀ ପ୍ରଦର୍ଶନୀ ‘ଖଦୀହାଟ’କୁ ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏହା କହିଛନ୍ତି ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଛନ୍ତି ଯେ ସ୍ୱାଧୀନତା ଆନ୍ଦୋଳନ ସମୟରେ ଗାନ୍ଧିଜୀ ଖଦୀକୁ ସ୍ୱରାଜ୍ୟର ଏକ ଅସ୍ତ୍ର ଭାବେ ବ୍ୟବହାର କରିଥିଲେ । ଖଦୀ ଦ୍ୱାରା ସେ ଆମକୁ ଆତ୍ମନିର୍ଭରଶୀଳ ହେବା ପାଇଁ ବାର୍ତ୍ତା ଦେଇଥିଲେ । ସ୍ୱାଧୀନତାର ଅନେକ ବର୍ଷ ପରେ ଖଦୀ ଏକ ‘ଫାସନ୍’ ଭାବରେ ଧୀରେ ଧୀରେ ଲୋକପ୍ରିୟ ହେଉଛି । ଓଡ଼ିଶାରେ ଖଦୀ ଓ ଗ୍ରାମୋଦ୍ୟୋଗର ପ୍ରସାର ପାଇଁ ଖଦୀ ବୋର୍ଡ ଭଲ ଉଦ୍ୟମ କରୁଛି ଏବଂ ଏହି ଉଦ୍ୟମକୁ ଆହୁରି ଜୋରଦାର କରିବା ପାଇଁ ମୁଖ୍ୟମନ୍ତ୍ରୀ ଆହ୍ୱାନ ଦେଇଥିଲେ ।

# ଓଡ଼ିଆ ଭାଷାର ବିନ୍ଧାଣୀ –କଥା ସମ୍ରାଟ୍ ଫକୀର ମୋହନ ସେନାପତି

ଡକ୍ଟର ବସନ୍ତ କୁମାରୀ ନନ୍ଦ

ଓଡ଼ିଆ ଭାଷାର ଜନକ ଫକୀରମୋହନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏଥିରେ ପ୍ରଥମ ପୁରୋଧା ଥିଲେ ବାରିଷ୍ଟର ମଧୁସୂଦନ ଦାସ । ଏତଦ୍‌ବ୍ୟତୀତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଲଢ଼ିଥିବା ବୀରମାନେ ହେଲେ– କବି ଗଙ୍ଗାଧର ମେହେର, ଗୋପବନ୍ଧୁ ଦାସ, ରାଧାନାଥ ରାୟ, ରାଜା ରାମଚନ୍ଦ୍ର ଭଞ୍ଜଦେଓ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ହରେକୃଷ୍ଣ ମହତାବ ଓ ଆହୁରି ଅନେକ । ଏମାନେ ହେଲେ ଆଧୁନିକ ଓଡ଼ିଶାର ନିର୍ମାତା ।

ଓଡ଼ିଶା ଓ ଓଡ଼ିଆ ଭାଷାର ପ୍ରଗତି ଲାଗି ଉପରୋକ୍ତ ମହାପୁରୁଷମାନଙ୍କ ଦାନ ଓ କର୍ମ ଅତୁଳନୀୟ ।

ଫକୀରମୋହନଙ୍କ ଭାଷାରେ–  
ଧନ୍ୟ ଧନ୍ୟ ଧନ୍ୟ ମଧୁସୂଦନ  
ଉତ୍କଳ ମାତାର ଯୋଗ୍ୟ ନନ୍ଦନ  
ଦେଲ ଉତ୍କଳକୁ ନବ ଜୀବନ  
ଶିଖାଇଲ ଲୋକେ ଜାତି ବନ୍ଦନ ॥

ଏଥିରୁ ଓଡ଼ିଆ ଜାତିର ଗୌରବମୟ ଇତିହାସକୁ ସ୍ମରଣ କରି ନିଜକୁ ଗୌରବାନ୍ୱିତ ମନେ କରିବାକୁ ହୁଏ । ଉତ୍କଳୀୟ ସଂସ୍କୃତି, ମାନବିକ ମୂଲ୍ୟବୋଧ, ଆଧ୍ୟାତ୍ମିକ ଚେତନା, ଆଦର୍ଶ ଜୀବନଯାପନ ଧାରା ପୃଥିବୀକୁ ଶିଖାଇଛି ଉତ୍କଳ । ଶିଳ୍ପ, କୃଷି, ବାଣିଜ୍ୟ, ଭାଷା, କଳା, ସଂଗୀତ, ବିଜ୍ଞାନ ସବୁ କ୍ଷେତ୍ରରେ ଉତ୍କଳ ଶ୍ରେଷ୍ଠ । ଏକ ବୀର ଜାତି ଓଡ଼ିଆ ଜାତି । ସୀମା ସୁରକ୍ଷା ସମସ୍ତଙ୍କ ପ୍ରତି ସ୍ନେହ, ଐକ୍ୟସ୍ଥାପନ, ଅହିଂସା ଆଚରଣ, ସତ୍ୟ ଧର୍ମ ପଥ ଅନୁସରଣ ସବୁ କିଛି ଏହି ଓଡ଼ିଆ ଜାତିର ଓଡ଼ିଆ ଭାଷାରେ ଭରପୂର । ଏହାର ସାମାଜିକ ସଂସ୍କାର ଓ ପରମ୍ପରା ଅନନ୍ୟ । ଭାଷା ବଞ୍ଚିଲେ ଜାତି ବଞ୍ଚିବ । ଜାତି ବଞ୍ଚିଲେ ରାଜ୍ୟବାସୀଙ୍କର ସ୍ୱତନ୍ତ୍ର ସତ୍ତା ବଞ୍ଚି ରହେ । ଏହାହିଁ ପ୍ରମାଣ କରିଛି ଉତ୍କଳ ସମ୍ମିଳନୀର ଧାରାବାହିକ ପ୍ରଚେଷ୍ଟା, ସଞ୍ଚାରିତ କରି ପାରିଛି ଜାତୀୟ ଜୀବନର ପ୍ରବହମାନ ଧାରା, ସର୍ବଭାରତୀୟ ଏକତା, ଜାତୀୟ ସଂହତି, ସର୍ବଭାରତୀୟ ଭାଷା, ସଂସ୍କୃତି, ଧର୍ମ ଓ ପରମ୍ପରାକୁ ସମ୍ମାନ ଦେଇ ଓଡ଼ିଆ ଭାଷା ସଂସ୍କୃତିର ଅଭିବୃଦ୍ଧି ଓ ପ୍ରସାର କରିବା ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ତଥା ଉଦ୍ଦେଶ୍ୟ ।

ଆସନ୍ତୁ ଜାଣିବା ଓଡ଼ିଆ ଭାଷାକୁ ବଞ୍ଚାଇ ତା'ର ପ୍ରସାର ଘଟାଇଥିବା କେତେଜଣ ମହାରଥୀଙ୍କ ମଧ୍ୟରୁ ଜଣଙ୍କୁ କବି ସମ୍ରାଟ ଫକୀରମୋହନଙ୍କୁ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଭାଷାର ଘୋର ସଂକଟ ସମୟରେ ଏ ଭାଷାର ସ୍ଥିତି ଓ ସତ୍ତାକୁ ରକ୍ଷା କରିବା ପାଇଁ ଯେଉଁ କତିପୟ ମହାପୁରୁଷ ସ୍ୱୀୟ ମସୀ ଦ୍ୱାରା ପ୍ରଚଣ୍ଡ ସଂଗ୍ରାମ କରିଥିଲେ, କଥା ସମ୍ରାଟ ଫକୀର ମୋହନ ଥିଲେ ସେମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ତାଙ୍କ ଆତ୍ମ ଜୀବନୀ ଓଡ଼ିଆ ସାହିତ୍ୟର ଇତିହାସ କହିଲେ ଭୁଲ ହେବ ନାହିଁ । ଓଡ଼ିଆ ଭାଷା ସଙ୍କଟଜନକ ସ୍ଥିତିରେ ଗତି କରୁଥିବା ବେଳେ ମହାପୁରୁଷ ଫକୀର ମୋହନ ଜନ୍ମ ହୁଅନ୍ତି ୧୮୪୩ ମସିହା ଜାନୁଆରୀ ମାସ ମକର ସଂକ୍ରାନ୍ତିରେ । ବାଲେଶ୍ୱର ଜିଲ୍ଲାର ମଲ୍ଲୀକାଶପୁର ଗ୍ରାମ ତାଙ୍କ ଜନ୍ମଭୂମି । ପିତା ଲକ୍ଷ୍ମଣ ସେନାପତି ଓ ମାତା ତୁଳସୀ ଦେବୀଙ୍କ କୁଳନନ୍ଦନ । କିନ୍ତୁ ଭାଗ୍ୟର ବିଡ଼ମ୍ବନା କିଏ ବା ଆନ କରିପାରିବ ? ବାଲ୍ୟତ କାଳରୁ ବାଳକ ଫକୀର ମୋହନ ହରାଇଲେ ପିତାମାତାଙ୍କୁ । ଫକୀର ମୋହନଙ୍କୁ ମାତ୍ର ଦେଢ଼ ବର୍ଷ ବୟସରେ ପିତାମାତାଙ୍କ ଅକାଳ ମୃତ୍ୟୁ ଘଟିଲା । ଜେଜେମା କୋଶଳା ଦେଈ ଲାଳନପାଳନ କଲେ । ଚିର ରୁଗ୍‌ଣ ଥିଲେ ଫକୀର ମୋହନ, ପିଲାଦିନ ନାମ ବ୍ରଜମୋହନରୁ ସେ ହେଲେ ଫକୀର ମୋହନ । ପୀରଙ୍କ ନିକଟରେ ପ୍ରାଣଭିକ୍ଷା କରି ଜେଜେମା ନାମ ରଖିଲେ ଫକୀରମୋହନ । ସମୟ ବଡ଼ ବଳବାନ– ବହି ଚାଲିଲା ତା'ର ସ୍ୱଭାବ ସୁଲଭ ଢ଼ଙ୍ଗରେ । ଆଉ ବଢ଼ି ଚାଲିଲେ ଫକୀର ମୋହନ । ବିଦ୍ୟାଶିକ୍ଷା କଲେ ଚାଟଶାଳୀ ପରେ ବାଲେଶ୍ୱର ବାରବାଟୀ

ସ୍କୁଲରେ । ଭଲ ପଢୁଥିଲେ ମଧ୍ୟ ଆର୍ଥିକ ସଙ୍କଟ ତାଙ୍କ ଶିକ୍ଷା ଗ୍ରହଣରେ ବାଧା ସୃଷ୍ଟି କଲା । ତେଣୁ ପାଠପଢ଼ା ବନ୍ଦ ହେଲା । କ୍ରମେ ସେ ସେହି ସ୍କୁଲରେ ପରେ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ଶିକ୍ଷକତା ସହ ବିଭିନ୍ନ ସଂସ୍କୃତ କାବ୍ୟ ପାଠ କଲେ । କିଛିଦିନ ପରେ ମିଶନ ସ୍କୁଲରେ ଶିକ୍ଷକତା କଲେ ଓ ହେଡ୍‌ପଣ୍ଡିତ ହେଲେ ।

ସେତେବେଳେ ଓଡ଼ିଆ ଓ ବଙ୍ଗାଳୀଙ୍କ ମଧ୍ୟରେ ଭାଷା ବିବାଦ ଲାଗିଥାଏ । ବଙ୍ଗଳାର କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ କହିଲେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନଏ । ସେ ମଧ୍ୟ ଏହି ନାମରେ ଏକ ବହି ପ୍ରକାଶ କଲେ । ଜାତିପ୍ରାଣ ଫକୀର ମୋହନଙ୍କୁ ଏ କଥା ଅତ୍ୟନ୍ତ ବାଧିଲା । ସେ ଏହାର ଘୋର ବିରୋଧ କଲେ । ତେଣୁ ଓଡ଼ିଆ ଭାଷାର ସ୍ୱତନ୍ତ୍ର ପରିଚୟ ଓ ସୁରକ୍ଷା ପାଇଁ ସେ ଓଡ଼ିଆରେ ଲେଖିଲେ ଭାରତର ଇତିହାସ, ସରଳ ବ୍ୟାକରଣ, ଅଙ୍କମାଳା ପ୍ରଭୃତି । ଏହା ଓଡ଼ିଆ ପୁସ୍ତକର ଚାହିଦା ମେଣ୍ଟାଇଲା । ସେ ବାଲେଶ୍ୱରରେ ଗୋଟିଏ ଛାପାଖାନା ବସାଇଲେ ଓ ସେହି ପ୍ରେସ୍‌ରୁ ପ୍ରକାଶ କଲେ ବୋଧଦାୟିନୀ ପତ୍ରିକା, ବାଲେଶ୍ୱର ସମ୍ବାଦ ବାହିନୀ ପତ୍ରିକା । ଦିନରେ କଲେ ଶିକ୍ଷକତା । ରାତିରେ କଲେ ପ୍ରେସ୍ କାର୍ଯ୍ୟ । ମଧୁବାବୁଙ୍କ ଆହ୍ୱାନ, ଗୋପବନ୍ଧୁ ଦାସଙ୍କ ପ୍ରେରଣା ଓ ଅନ୍ୟାନ୍ୟ ବନ୍ଧୁଙ୍କ ସାହାଯ୍ୟରେ ରେମୁଣାରେ ଭର୍ଣ୍ଣାକୁଲାର ସ୍କୁଲ ସ୍ଥାପନ କରି ଓଡ଼ିଆ ଭାଷାର ପ୍ରଚାର ପ୍ରସାରରେ ଲାଗି ପଡ଼ିଲେ। ମାତ୍ର ୧୩ ବର୍ଷ ବୟସ । ମାଣିକଖମ୍ବ ଗ୍ରାମର ଲୀଳାବତୀ ନାମକ ଝିଅକୁ ବିବାହ କଲେ । କିଛି ବର୍ଷ ପରେ ଗୋଟିଏ କନ୍ୟା ଜନ୍ମ ପରେ ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁ ହେଲା ଓ ସେ କୃଷ୍ଣାକୁମାରୀଙ୍କୁ ବିବାହ କଲେ । ତାଙ୍କର ଗୋଟିଏ ପୁତ୍ର ମୋହିନୀ ମୋହନ ଓ ଗୋଟିଏ କନ୍ୟା ସରୋଜିନୀ ଜନ୍ମି ଥିଲେ । ବାଲେଶ୍ୱର କଲେକ୍ଟରଙ୍କ ସୁପାରିଶ୍‌ରେ ସେ ନୀଳଗିରି ରାଜାଙ୍କ ଦେବାନ ରୂପେ ନିଯୁକ୍ତି ପାଇଲେ । ସେଠାରେ ରାଣୀଙ୍କ ନାମରେ ଏକ ସଂସ୍କୃତ ଟୋଲ୍ ବସାଇ ଶିକ୍ଷାର ପ୍ରସାର କଲେ । ତା'ପରେ ସେଠାରୁ ଆସିଲେ ଢ଼େଙ୍କାନାଳ । ଫକୀରମୋହନଙ୍କୁ ଅସୁସ୍ଥତା ଲାଗିରହିଲା । ଭଲହେବା ପରେ ଆସିଲେ ଦେବାନ ହୋଇ । ଓକିଲ ମଧୁସୂଦନ ଦାସଙ୍କ ଦ୍ୱାରା ବହୁ ଉପକୃତ ହେଲେ । ଦ୍ୱିତୀୟ ଥର ଦେବାନ ହେଲେ ଡ଼ମପଡ଼ାରେ। ଏହି ସମୟରେ ପତ୍ନୀଙ୍କ ବିୟୋଗ ହେଲା । ଏଥିରେ ଦୁଃଖିତ ହୋଇ ସେ ଲେଖିଲେ ଶୋକ କବିତା ଉପହାର ।

ତା'ପରେ ଆସିଲେ କଟକ ବାଖରାବାଦ ଓ ଗୋଟିଏ ଗୃହ ନିର୍ମାଣ କରି ସାହିତ୍ୟ ସାଧନାରେ ମନୋ ନିବେଶ କଲେ । ଉତ୍କଳ ସାହିତ୍ୟରେ ରୀତିମତ ଲେଖିଲେ । ଛ'ମାଣ ଆଠଗୁଣ୍ଠ, ଲଛମା, ରେବତୀ, ନନାଙ୍କ ପାଞ୍ଜି ପ୍ରଭୃତି ରଚନା କରି ଓଡ଼ିଆ ସାହିତ୍ୟକୁ ଅମର କଲେ । ତାଙ୍କ ପୁତ୍ର ମୋହିନୀ ମୋହନ ସବ୍-ଡ଼େପୁଟି ହୋଇ ବାଲେଶ୍ୱର ଚାଲିଯିବାରୁ ଫକୀର ମୋହନ ନିଜ ଜନ୍ମସ୍ଥାନ ମଲୀକାଶପୁର ଫେରିଗଲେ । ବାଲେଶ୍ୱର ରହଣି କାଳରେ ବହୁତ ଗଳ୍ପ, ଉପନ୍ୟାସ ଲେଖିଲେ । ଗଳ୍ପସ୍ୱଳ୍ପ ପୁସ୍ତକ ନାମରେ ଏହାର କାଳଜୟୀ ଲେଖା 'ମାମୁଁ' ଉପନ୍ୟାସ ରଚନା କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କଲେ । ପ୍ରାୟଶ୍ଚିତ ଉପନ୍ୟାସ ପରେ ଗଳ୍ପସ୍ୱଳ୍ପରେ ସଭ୍ୟ ଜମିଦାର, ବଗଲା ବଗୁଲୀ, ବିରେଇବିଶାଳ, ପେଟେଣ୍ଟ ମେଡ଼ିସିନ୍, ରାଣ୍ଡିପୁଅ ଅନନ୍ତା, ଡ଼ାକମୁନ୍‌ସୀ, ସୁନା ବୋହୂ, ମାଧ ମହାନ୍ତିଙ୍କ କନ୍ୟାସୁନା ତାଙ୍କର ଲୋକପ୍ରିୟ ଗଳ୍ପ ଭାବରେ ଖ୍ୟାତି ଅର୍ଜନ କରିଛି । ରେବତୀ ଗଳ୍ପ ମାଧ୍ୟମରେ ନାରୀ ଶିକ୍ଷାର ପ୍ରଗତି ପାଇଁ ଓ ସମାଜ ସଂସ୍କାର ପାଇଁ ଉଦ୍ୟମ କରିଛନ୍ତି । ଛ'ମାଣ ଆଠଗୁଣ୍ଠ ଆଜି ବିଜ୍ଞାନ ଯୁଗରେ ମଧ୍ୟ ଚିର ଭାସ୍ୱର ଓ କାଳଜୟୀ । ଏହି ଉପନ୍ୟାସ କଥାବସ୍ତୁ ଦ୍ୱାରା ସେ ଜମିଦାରମାନଙ୍କ ଅତ୍ୟାଚାର, ତତ୍କାଳୀନ ସାମାଜିକ ବ୍ୟବସ୍ଥାକୁ ଲୋକ ଲୋକଚନକୁ ଆଣି ସଂସ୍କାରିତ କରିଛନ୍ତି । ସେତେବେଳେ ଇଂରେଜ ଶିକ୍ଷାର କୁପ୍ରଭାବରେ ସମାଜର ସବୁ ଦିଗକୁ ସେ ଚିତ୍ରଣ କରି ତା'ର ସମାଧାନ ଦିଗକୁ ଦର୍ଶାଇଛନ୍ତି । ତାଙ୍କର ଅନେକ ମହତ ଗୁଣ ଥିଲା । ଜୀବନ ଦେଇ ଓଡ଼ିଶା ଓ ଓଡ଼ିଆ ଭାଷାକୁ ସେ ଭଲ ପାଉଥିଲେ । ଓଡ଼ିଆ ଗଦ୍ୟ ସାହିତ୍ୟର ସେ ସ୍ରଷ୍ଟା । ହାସ୍ୟ ରସର ସ୍ରଷ୍ଟା । ତାଙ୍କର ବ୍ୟଙ୍ଗ ରଚନା ଆଜି ବି ଚିର ଜାଜ୍ୱଲ୍ୟମାନ । ବାସ୍ତବିକ୍ ଉତ୍କଳ ଜନନୀଙ୍କର ସେ ଯୋଗ୍ୟ ସନ୍ତାନ । ଓଡ଼ିଆ ଜାତି, ଭାଷା ସଂଗ୍ରାମର ସେ ପ୍ରକୃତ ସେନାପତି । ୧୯୧୮ ମସିହା ରଜ ସଂକ୍ରାନ୍ତିରେ ଏହି ସଂକ୍ରାନ୍ତି ପୁରୁଷଙ୍କର ମହାପ୍ରୟାଣ ଘଟିଥିଲା । ପଦ୍ୟ ସାହିତ୍ୟ ଓ ଗଦ୍ୟ ସାହିତ୍ୟ ବ୍ୟତୀତ ସେ ଅନେକ କାବ୍ୟକୁ ଅନୁବାଦ କରିଛନ୍ତି । ତାଙ୍କ ଅମର ଲେଖନୀ ନିଃସୃତ କାବ୍ୟ କବିତା ତାଙ୍କୁ କଥାସମ୍ରାଟ, ବ୍ୟାସକବିର ସମ୍ମାନରେ ଭୂଷିତ କରି ତାଙ୍କୁ ଉତ୍କଳମାତା ଶ୍ରେଷ୍ଠ ସନ୍ତାନ ଭାବେ ପ୍ରତିପାଦିତ କରିପାରିଛି । ଓଡ଼ିଆ ସାହିତ୍ୟର ଏହି ସେନାପତିଙ୍କ ବିୟୋଗରେ ଯଥାର୍ଥରେ ଗଙ୍ଗାଧର ମେହେର ଲେଖିଥିଲେ–

ଆହା ଫକୀର ମୋର ରଙ୍କୁଣୀ ଧନ
କିମ୍ପା ରହିଲୁ ପଡ଼ି ମୁଦି ନୟନ
ଆକୁଳେ ଡ଼ାକୁଅଛି ମୁଁ ତୋ ଜନନୀ
କିମ୍ପା ନଉଠୁ ଏତ ନୁହେଁ ରଜନୀରେ ॥

ତାଙ୍କ ସାରସ୍ୱତ କୃତି ହିଁ ଉତ୍କଳ ଜନନୀଙ୍କ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛି ଓ ଓଡ଼ିଆ ଜାତି, ଭାଷା ପାଇଁ ତାଙ୍କର ସ୍ମୃତି ଚିରଦିନ ପାଇଁ ସାଇତା ହୋଇ ରହିଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ସେ ମରି ମଧ୍ୟ ଆଜି ଅମର ।

ଶିଖରପୁର, ଗୌଡସାହି
କଟକ–୭୫୩୦୦୩

# ଲୌହ ମାନବୀ

**କୃଷ୍ଣପ୍ରିୟା ଦାସ**

ବଜ୍ର ଗମ୍ଭୀର କଣ୍ଠସ୍ୱର ପ୍ରସରି ଆସିଥିଲା......'ମୁଁ ସେମାନଙ୍କ ସହିତ ସାକ୍ଷାତ କରିବି, ମିଶିବି, ଭଲମନ୍ଦ ବୁଝିବି ଆଉ ବୁଝାଇବି । ତେଣିକି ଯଦି ସେମାନେ ମୋତେ ମାରିଦେବେ ମାରନ୍ତୁ । ଥରେ ଜନ୍ମ, ଥରେ ମୃତ୍ୟୁ । ଏଥିରେ ଭୟ କରିବାର କ'ଣ ଅଛି.... ?'

ଏପରି ବଜ୍ର ଘୋଷଣା ଥିଲା, ଜଣେ ଉତ୍କଳୀୟ ମହୀୟସୀ ମହିଳା ଲୌହମାନବୀ ନନ୍ଦିନୀ ଶତପଥିଙ୍କର ।

ଯେତେବେଳେ ସତୁରୀ ଦଶକରେ ଆନ୍ଧ୍ର ସରକାରଙ୍କ କୋପ ଦୃଷ୍ଟି ନକ୍ସଲାଇଟ୍‌ମାନଙ୍କ ଉପରେ ପଡ଼ିଥିଲା ଓ ଅକଥନୀୟ ଅତ୍ୟାଚାରରେ ଅତି ଅଳ୍ପ ବୟସର ଯୁବକମାନଙ୍କୁ ଧାଡ଼ିକରି ଗୁଳିଚାଳନା କରାଯାଉଥିଲା । ଫଳରେ ଆନ୍ଧ୍ରରୁ ନକ୍ସଲାଇଟ୍‌ମାନେ ଖସିଆସି ସୀମାନ୍ତ ଜିଲ୍ଲା କୋରାପୁଟ ଜଙ୍ଗଲ ଭିତରେ ଆତ୍ମଗୋପନ କରି ରହି ସଂଘ ବିସ୍ତାର କରିଚାଲିଲେ । ଏମାନଙ୍କ ମଧ୍ୟରେ ଅଧିକାଂଶ ଆଦିବାସୀ ଓ ହରିଜନ ଶ୍ରେଣୀର । ସେତେବେଳେ ଜମିଦାରମାନଙ୍କ ଅତ୍ୟାଚାର ଓ ଶୋଷଣରେ ଅତିଷ୍ଠ ହୋଇ ଗରିବ ଅନାହାରୀମାନେ ନକ୍ସଲପନ୍ଥା ଅବଲମ୍ବନ କରି ସଂଗ୍ରାମ ଆରମ୍ଭ କରିଦେଇଥାନ୍ତି । ବିଶେଷ ଭାବେ କୋରାପୁଟ, ଶ୍ରୀକାକୁଲମ ଜିଲ୍ଲା ସୀମାନ୍ତରେ ଏମାନଙ୍କ ପ୍ରାଦୁର୍ଭାବ ଅଧିକ ମାତ୍ରାରେ ଦେଖାଯାଉଥିଲା ।

୧୯୫୩ ଓ ୫୪ ମସିହାରେ ତେଭାଗା ଆନ୍ଦୋଳନ ସୁଦୂର ପଶ୍ଚିମବଙ୍ଗଙ୍କୁ ଚହଲାଇ ଦେଇଥିବା ବେଳେ ଆନ୍ଧ୍ରରେ ତେଲେଙ୍ଗାନା ଆନ୍ଦୋଳନର ତୀବ୍ରତା ଆହୁରି ବଳବତ୍ତର ହୋଇ ଉଠିଥିଲା । ଏହି ଆନ୍ଦୋଳନ ଦ୍ୱୟକୁ ନନ୍ଦିନୀ ଦେବୀଙ୍କ ପୂର୍ଣ୍ଣ ସମର୍ଥନ ରହିଥିଲା । ସେଥିରୁ ହିଁ ଆରମ୍ଭ ହେଲା ଭୂଦାହ ଆନ୍ଦୋଳନ । ଗାନ୍ଧିବାଦୀ ନେତା ବିନୋବା ଭାବେ ଅହିଂସା ଆନ୍ଦୋଳନକୁ ଭୂଦାନ ଆନ୍ଦୋଳନରେ ପର୍ଯ୍ୟବସିତ କରାଇଥିଲେ । ଲକ୍ଷ୍ୟ ହେଉଛି ଜମି ମାଲିକମାନଙ୍କଠାରୁ କଳେ ବଳେ କୌଶଳେ ଜମି ହାସଲ କରି ଭୂମିହୀନ, ଗରିବ ଆଦିବାସୀ, ହରିଜନମାନଙ୍କ ମଧ୍ୟରେ ବଣ୍ଟନ କରିଦେବା । ନନ୍ଦିନୀଙ୍କ ମନ ତ ଗରିବୀ ହଟାଅ । ସେବା ସମର୍ଥନ ନ କରନ୍ତେ କିପରି ? ଯଦ୍ୱାରା ଧନୀ, ଗରିବ ସମସ୍ତେ ମୁଠାଏ ଖାଇ ଖଣ୍ଡିଏ ପିନ୍ଧି ଜୀବିକା ନିର୍ବାହ କରି ପାରିବେ ।

ସେହି ନନ୍ଦିନୀ ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଅଭିଷିକ୍ତ ହେଲେ ସେତେବେଳେ ତାଙ୍କୁ ଆହୁରି ସୁଯୋଗ ମିଳିଗଲା । ଯାହାକି ନିମ୍ନଶ୍ରେଣୀର ଲୋକମାନଙ୍କୁ ସାମାଜିକ ତଥା ଅର୍ଥନୈତିକ ସ୍ତରରେ ସାହାଯ୍ୟ ଦେଇ ଦେଶରୁ ଦୁର୍ବଳ ଶ୍ରେଣୀ ଦୂର କରିବା । ଏଥିପାଇଁ ଯତ୍‌ପରୋନାସ୍ତି ଚେଷ୍ଟା ଚାଲିଥାଏ ।

ଦିନେ ଅଫିସରମାନଙ୍କୁ ଡ଼କାଇ ବୈଠକରେ କହିଲେ, ମୁଁ ନକ୍ସଲାଇଟ୍‌ମାନଙ୍କ ସହିତ ଦେଖା କରିବି ।

ପୋଲିସ୍ ଅଫିସରମାନେ ଆଖି ଖୋସି ଦେଇ କହିଲେ– କି କଥା କହୁଛନ୍ତି ଆଜ୍ଞା । ଆପଣ ଜାଣି ନାହାନ୍ତି, ସେମାନେ ଜଣେ ଜଣେ ନରପିପାସୁ । ସେ ସ୍ଥାନ ମଧ୍ୟ ନିହାତି ଭୟଙ୍କର । ସେଠି କେବଳ ଅସ୍ତ୍ରଶସ୍ତ୍ର ଗୋଳାବାରୁଦ ବୋମା ବନ୍ଧୁକରେ କଥାବାର୍ତ୍ତା ହୁଏ । ଯିଏ ଯାଏ ସେ ଆଉ ଫେରସ୍ତ ଆସେନି । ଦୟା ମାୟା ତ ଦୂରର କଥା, ଦେଖୁ ଦେଖୁ ଗୁଳି କରିଦେବା ଛଡ଼ା ସେମାନେ ଆଉ କିଛି ବୁଝନ୍ତି ନାହିଁ ।

କର୍ମଯୋଗିନୀ ନନ୍ଦିନୀଙ୍କୁ ଏ ସମସ୍ତ କଥାର ପ୍ରଭାବ କାହିଁକି ପଡ଼ନ୍ତା । ଯାହାର ମନୋବଳ ପାହାଡ଼ ପରି ସୁଦୃଢ଼ ସେ କିପରି ଏମିତି ଛୋଟ ଛୋଟ କଥାରେ ଡରିଯିବେ । ସାମାନ୍ୟ ହସିଦେଇ କହିଲେ, ଜନ୍ମ ପଛରେ ପରା ମୃତ୍ୟୁ ଅପେକ୍ଷା କରି ରହିଛି । ଚାଲ ସମସ୍ତେ ପ୍ରସ୍ତୁତ ହୋଇଯାଅ । ଗୋଟିଏ କଥା ମନେରଖ, ମୁଁ

ସେମାନଙ୍କ ସହିତ ସାକ୍ଷାତକାର ହୋଇ କଥାବାର୍ତ୍ତା କଲାବେଳେ କେହିଜଣେ ସେଠାକୁ ଯିବ ନାହିଁ କି ସେମାନଙ୍କୁ ଭୟଭୀତ କରାଇ ବନ୍ଧୁକ ଚାଳନା କରିବ ନାହିଁ। ତେଣିକି ମୋ କାର୍ଯ୍ୟ ମୁଁ କରିବି।

ତାହାହିଁ ହେଲା। ନକ୍ସଲମାନଙ୍କ ଆଡ୍ଡା ସ୍ଥଳକୁ ନିର୍ଭୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀ ପ୍ରବେଶ କରି ସମସ୍ତଙ୍କୁ ସାଦର ନିମନ୍ତ୍ରଣ ଜଣାଇ ସଭା ଆରମ୍ଭ କରିଦେଲେ । ସଭାସ୍ଥଳ ପୂରା ଚୁପ୍‌ଚାପ୍ । ସମସ୍ତେ ବିଶ୍ୱାସ ଅବିଶ୍ୱାସ ଭିତରେ ଉବୁଟୁବୁ ହୋଇ ମୁଖ୍ୟମନ୍ତ୍ରୀଙ୍କ କଥା ଶୁଣିବାକୁ ଆଗ୍ରହ ପ୍ରକାଶ କରି ରହିଥାନ୍ତି ।

ନନ୍ଦିନୀଙ୍କ ଆଡ଼ୁ ପ୍ରଥମେ ଆରମ୍ଭ ହେଲା – ମୋର ପ୍ରିୟ ଭାଇ ଓ ଗୌରବମୟ ଓଡ଼ିଶାର ସନ୍ତାନଗଣ ! ଆଜି ତୁମମାନଙ୍କ ଗହଣରେ ଉପସ୍ଥିତ ହୋଇ ନିଜକୁ ମୁଁ ଧନ୍ୟ ମନେ କରୁଛି । ମୁଁ ଆସିଛି ତୁମମାନଙ୍କ ଯାହାକିଛି ଅଭାବ, ଅସୁବିଧା ରହିଛି ତାକୁ ପୂରଣ କରିବା ପାଇଁ ଆଲୋଚନା ମାଧ୍ୟମରେ ଏବଂ କିଛି କଥା ବୁଝାଇବା ପାଇଁ ଆଉ ବୁଝିବା ପାଇଁ । ତୁମେସବୁ ଯେଉଁ ହିଂସାତ୍ମକ ଆନ୍ଦୋଳନ ଚଳାଇଛ, ତାହା ଦେଶ ଯଶକୁ ମଙ୍ଗଳ ନୁହେଁ । ଯଦି ଭାବୁଥାଅ ପୁଞ୍ଜିପତିମାନଙ୍କ ବିନାଶରେ ତୁମମାନଙ୍କ ପଣ ପରିବର୍ତ୍ତନ ହୋଇଯିବ, ତାହା ନିହାତି ଭୁଲ୍ । ମାରି, ମାରି କେତେ ମାରିବ ? ସଂସାରରେ ତ ଅନେକ ଅଛନ୍ତି । ଜଣେ ମଲେ ଆଉ ଜଣେ ରକ୍ତବୀର୍ଯ୍ୟ ପରି ଉଠୁରି ଆସିବ । ତେଣୁ ବିନାଶର ପଥ ପରିତ୍ୟାଗ କରି ଶାନ୍ତିର ପଥକୁ ଖୋଜିନିଅ । ଯେଉଁଥିରେ ସମସ୍ୟାର ସମାଧାନ କରିହେବ । ସମାଜର ପରିବର୍ତ୍ତନ ଆଣିହେବ । ତୁମମାନଙ୍କ ସମସ୍ତ ଦାବି ପୂରଣ କରିବା ପାଇଁ ସରକାର ପ୍ରସ୍ତୁତ ଅଛନ୍ତି । କେବଳ ଏଥିପାଇଁ ତୁମମାନଙ୍କ ସାମାନ୍ୟ ସହଯୋଗ ମିଳିଲେ ହେଲା । ଦେଖିବ ଉନ୍ନତିର ମାର୍ଗରେ ତୁମ ପିଲାମାନେ କିପରି ହସି ଉଠିବେ ।

ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣରେ ସମସ୍ତ ନକ୍ସଲ ଏକ ସ୍ୱରରେ କହିଉଠିଲେ – ବେଠି ପ୍ରଥା ଆଗ ବନ୍ଦ କର ।

ନନ୍ଦିନୀ ଦେବୀ ସ୍ୱରରେ ସ୍ୱର ମିଳାଇ କହିଲେ, ଏଥିରେ ମୁଁ ଏକମତ । ବେଠି ପ୍ରଥା ଉଠିଯିବ ।

ସଂଗେ ସଂଗେ ସଭାସ୍ଥଳ ଶାନ୍ତ ପଡ଼ିଗଲା ନୁଆଁଣିଆ ଆଖିଟିମାନ ନନ୍ଦିନୀ ଦେବୀଙ୍କ ପାଦତଳକୁ ।

ପ୍ରତିଶ୍ରୁତି ଅନୁଯାୟୀ ନନ୍ଦିନୀ ଦେବୀ ସେମାନଙ୍କ ପାଇଁ ଅନେକ କିଛି କରିଥିଲେ । ଶିକ୍ଷାଠାରୁ ରୋଜଗାର ପର୍ଯ୍ୟନ୍ତ ସବୁଥିରେ ଆଗୁଆ ରଖାଯାଇଥିଲା । ଏପରିକି ଖାଦ୍ୟପେୟଠାରୁ ଔଷଧପତ୍ର ପର୍ଯ୍ୟନ୍ତ ।

ସେ କେବଳ ତେଭାଗା, ତେଲେଙ୍ଗାନା ଆନ୍ଦୋଳନରେ ସୀମିତ ନ ରହି ବହୁ ଆନ୍ଦୋଳନ ସହିତ ଜଡ଼ିତ ଥିଲେ । ତାଙ୍କ ଦ୍ୱିତୀୟ ମୁଖ୍ୟମନ୍ତ୍ରିତ୍ୱ କାଳ ୧୯୭୪ରେ ଯୌତୁକ ବିରୋଧ ଆଇନ ଆଗତ କରି ଯୌତୁକ ଦାବିକୁ କଡ଼ାକଡ଼ି ବନ୍ଦ କରି ନିୟମ ଲାଗୁ କରିଦେଲେ । ଏହାଛଡ଼ା ଓଡ଼ିଶାର ସମୃଦ୍ଧି ନିମନ୍ତେ ସତତ ଚେଷ୍ଟା ଚଳାଇ ବେକାରି ଦୂରୀକରଣ ପାଇଁ ପଞ୍ଚମ ଯୋଜନା ଦୃଢ଼ ଶିଳ୍ପାୟନ, କେନ୍ଦ୍ର ସ୍ତରରେ କଥା ଉଠାଇ ଓଡ଼ିଶା ରାଜ୍ୟକୁ ସାମିଲ କରାଇଥିଲେ ।

ପୁରପଲ୍ଲୀରୁ ଆରମ୍ଭ କରି ସହରାଞ୍ଚଳ ଯାଏ, ବିଧାନସଭାରୁ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ନେତୃତ୍ୱ ନେଇ ଆନ୍ଦୋଳନ କରିବା ବ୍ୟକ୍ତି ଆଉ କିଏ ଅଛି ? ଐତିହାସିକ ଭୂ-ସଂସ୍କାର ଆଇନକୁ କାର୍ଯ୍ୟକାରୀ କରି ବଡ଼ ବଡ଼ ଧନୀ, ଜମିଦାରମାନଙ୍କଠାରୁ ସିଲିଂ ବହିର୍ଭୂତ ଜମିଗୁଡ଼ିକୁ ଭୂମିହୀନ ଗରିବମାନଙ୍କ ଭିତରେ ବଣ୍ଟନ କରିବା ହେତୁ, ଅନେକ ସ୍ୱାର୍ଥାନ୍ୱେଷୀ ତାଙ୍କୁ ସମାଲୋଚନା କରିବାକୁ ଭୁଲି ନଥିଲେ । ସମସ୍ତଙ୍କ ବିକ୍ଷୋଦ୍‌ଗାରକୁ ଆକଣ୍ଠ ପାନ କରି ଆଗେଇ ଯିବା ଥିଲା ତାଙ୍କର ଧର୍ମ ।

ପରେ ପରେ ମହାଜନୀ କାରବାରକୁ ରଦ୍ଦ କରି ଅଧିକ ସୁଧ ଦାଉରୁ ଗରିବମାନଙ୍କୁ ସଚେତନ କରାଇଥିଲେ । ମହାଜନମାନେ ଚକ୍ରବୃଦ୍ଧି ହାରରେ ସୁଧ ନେଇ ଯେଉଁ ଶୋଷଣ ନୀତି ଚଳାଇଥିଲେ ସେମାନଙ୍କ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଏହା ଅତ୍ୟନ୍ତ ଲୋକପ୍ରିୟ କାର୍ଯ୍ୟ ହେଲେ ମଧ୍ୟ ମହାଜନ ସମ୍ପ୍ରଦାୟଙ୍କ ବିଷ ଦୃଷ୍ଟିରୁ ସେ ବାଦ୍ ଯାଇ ନଥିଲେ । ଏଥିପ୍ରତି ତିଳେହେଲେ ଭ୍ରୂକ୍ଷେପ ନକରି ଗ୍ରାମାଞ୍ଚଳ କିପରି ଉନ୍ନତି ଲାଭ କରିବ ଏହା ହିଁ ଥିଲା ତାଙ୍କ ଚିନ୍ତାର ପ୍ରଧାନ ବିଷୟ ।

ନନ୍ଦିନୀ ଦେବୀ ସ୍କୁଲ ଜୀବନରୁ ସଂଗ୍ରାମ ଆରମ୍ଭ କରି କଲେଜ ଜୀବନରେ ବହୁବାର କାରାବରଣ କରି ପୁଲିସ୍‌ର ଲାଠିମାଡ଼କୁ ତୁଚ୍ଛ ମନେକରି ଜନତା ଜନାର୍ଦ୍ଦନଙ୍କ ସେବାକୁ ମୁଖ୍ୟ ଭାବରେ ବରି ନେଇଥିଲେ । ପରେ ୧୯୬୨ ମସିହାରେ ରାଜ୍ୟସଭାକୁ ଯାଇ ଅଧିକ ସକ୍ରିୟ ହେବାକୁ ବିଳମ୍ବ ଲାଗନ୍ତା କାହିଁକି ? ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ପ୍ରସ୍ତାବ ଓ ପ୍ରେରଣାରେ ବିଜୟର ମାର୍ଗ ଆହୁରି ପ୍ରଶସ୍ତ ହୋଇଉଠିଲା ଯେ ଆଉ ପରାଜୟ କେବେ ବି ସ୍ପର୍ଶ କରି ପାରି ନଥିଲା ।

◆◆◆

ସେ ଏକାଧାରରେ ତିନି ଜଣ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ, ଲାଲ ବାହାଦୁର ଶାସ୍ତ୍ରୀ ଏବଂ ଇନ୍ଦିରା ଗାନ୍ଧୀଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲେ ।

ଘଟଣାବହୁଳ ଜୀବନ ତାଙ୍କୁ କଷଟିରେ କଷି କଷି ଶୁଦ୍ଧ ସୁବର୍ଣ୍ଣ ବୋଲି ପ୍ରମାଣିତ କରାଇ ଦେଇଛି । ତାଙ୍କ ଇତିହାସ ମନନ କଲାବେଳେ ରାଧାମୋହନ ଗଡ଼ନାୟକଙ୍କ ଏକ କବିତା 'ଅପଥଗାମୀ'ର କେଇ ପଙ୍‌କ୍ତି ସ୍ୱତଃ ଉଚ୍ଚାରିତ ହୋଇଯାଏ– ଯଥା:

'ଅପଥେ ମୁଁ ଯିବି ଅପଥେ ମୁଁ ଯିବି
କର ମୋତେ ପଛେ ତିରସ୍କାର
ନେପଥ୍ୟରେ ଅଛି ଯେତେ ଯାହା ସବୁ
କରିବି ମୁଁ ତାର ଆବିଷ୍କାର
ମଥା ପାତି ନେବି ମାନ ଅପମାନ
ବୁକୁପାତି ନେବି ଝଞ୍ଜା ତୋଫାନ
ସମୟ ଆସିବ ଯେଉଁଦିନ ତୁମେ
ଯାଚି ଦେବ ମୋତେ ପୁରସ୍କାର... ।''

ଏହି କବିତା ସହ ତାଙ୍କ ଜୀବନର ଅନେକାଂଶ ମେଳ ଖାଉଛି । ସେ ଯାହା ବିଚାର ଶକ୍ତି ଦ୍ୱାରା ଠିକ୍ କରନ୍ତି, ତାହା ଯେତେ ଦୁର୍ଗମ ହେଉ ପଛକେ, ହଟିବାର ନଥାଏ । ଏହି ଗଭୀର ବିଶେଷତ୍ୱ ନେଇ ଓଡ଼ିଶାବାସୀଙ୍କ ପାଖରେ ସେ ମନଛୁଆଁ 'ଲୌହ ମାନବୀ' ବା 'ଆଇରନ୍ ଲେଡି' ଭାବରେ ସୁପରିଚିତ ।

ଗଜପତି ନଗର, ୫୮
ମୈଥିଳୀ ନିବାସ, ପୁରୀ–୨



## କୃଷ୍ଣ ପ୍ରସାଦରେ ନୂଆ ଆଇଟିଆଇ

ପୁରୀ ଜିଲ୍ଲାର କୃଷ୍ଣପ୍ରସାଦ ବ୍ଲକ୍ ଅନ୍ତର୍ଗତ ଆଖଣ୍ଡଳେଶ୍ୱରଠାରେ ରାଜ୍ୟ ସରକାର ନୂଆ ଆଇଟିଆଇ ପ୍ରତିଷ୍ଠା କରିବାକୁ ନିଷ୍ପତ୍ତି ନେଇଛନ୍ତି । ଏଥିପାଇଁ ଚଳିତ ୨୦୧୪–୧୫ ଆର୍ଥିକ ବର୍ଷରେ ରାଜ୍ୟ ବଜେଟ୍‌ରେ ବ୍ୟବସ୍ଥା କରାଯାଇଛି । ରାଜ୍ୟରେ ଧନ୍ଦାମୂଳକ ଶିକ୍ଷାର ଉନ୍ନତି ତଥା ଯୁବକଯୁବତୀମାନଙ୍କ ଦକ୍ଷତା ବୃଦ୍ଧି ପାଇଁ ସରକାର ବହୁମୁଖୀ ଯୋଜନା କରୁଛନ୍ତି । ରାଜ୍ୟରେ ଦ୍ରୁତ ଶିଳ୍ପାୟନ ପରିପ୍ରେକ୍ଷୀରେ ଏହି ପ୍ରକାର ଅନୁଷ୍ଠାନର ଆବଶ୍ୟକତା ରହିଛି । କୃଷ୍ଣପ୍ରସାଦ ବ୍ଲକ୍‌ର ବେକାର ଯୁବକଯୁବତୀମାନଙ୍କ ପାଇଁ ଅନୁଷ୍ଠାନ ନିଯୁକ୍ତି ସାମର୍ଥ୍ୟ ସୃଷ୍ଟିରେ ସହାୟକ ହେବ ବୋଲି ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ, ନିୟୋଜନ, ବୈଷୟିକ ଶିକ୍ଷା ଓ ତାଲିମ ମନ୍ତ୍ରୀ ଶ୍ରୀ ସଞ୍ଜୟ ଦାସବର୍ମା ପ୍ରକାଶ କରିଛନ୍ତି ।



# ଆୟୁର୍ବେଦ ଶିରୋମଣି କବିରାଜ ଗୋପିନାଥ ମହାରଣା

ଡକ୍ଟର ତ୍ରୈଲୋକ୍ୟନାଥ ମହାରଣା

ରାଜ୍ୟରେ ଆୟୁର୍ବେଦ ଚିକିତ୍ସାର ପ୍ରସାର ପାଇଁ ଯେଉଁ କେତେଜଣ ମହାନ୍ ବୟୋଜ୍ୟେଷ୍ଠ ବ୍ୟକ୍ତିତ୍ୱଙ୍କ ନାମ ଆସେ ତନ୍ମଧ୍ୟରୁ ବାଲୁଗାଁର କବିରାଜ ଗୋପିନାଥ ମହାରଣା ଅନ୍ୟତମ । କେବଳ ଆୟୁର୍ବେଦ ବିଜ୍ଞାନରେ ନୁହେଁ, ଏକାଧାରରେ ସେ ଜଣେ ସାହିତ୍ୟିକ, କବି, ଲେଖକ, ନାଟ୍ୟକାର, ସଂଗୀତକାର, ନାଟ୍ୟ ନିର୍ଦ୍ଦେଶକ, ଧର୍ମ ପ୍ରବଚକ, ସୁ–ସଂଗଠକ, ସମବାୟ ଆନ୍ଦୋଳନର ପୁରୋଧା, ପରିବେଶବିତ୍, ସମାଜ ସଂସ୍କାରକ ଏବଂ ଜଣେ ଗାନ୍ଧିବାଦୀ ଚିନ୍ତକ । ଏହିପରି ବହୁମୁଖୀ ପ୍ରତିଭାର ସେ ଜଣେ ଅଧିକାରୀ । ସାଧାରଣ ମଣିଷ କିନ୍ତୁ ଅସାଧାରଣ ବ୍ୟକ୍ତିତ୍ୱ । ସର୍ବଦା ହସ ହସ ମୁହଁ । ଖୋଲା ହୃଦୟରେ ସମସ୍ତଙ୍କୁ ଆପଣାର କରନ୍ତି । ଅନେକ ପ୍ରତିଭାର ସେ ଅଧିକାରୀ ।

ସକାଳେ ରୋଗୀ ସେବା, ସନ୍ଧ୍ୟାରେ ଧାର୍ମିକ ପ୍ରବଚନ, ନ୍ୟାୟନିଶାପ, ଲେଖାଲେଖି, ପୁସ୍ତକ ଅଧ୍ୟୟନ ଏହିପରି ଜୀବନାଦର୍ଶ ନେଇ ବିନା ଆମ୍ ପ୍ରଚାରରେ ସମସ୍ତଙ୍କଠାରେ ଅତି ଆପଣାର ମଣିଷଟିଏ ସେ । ସେ ଅର୍ଦ୍ଧ ଶତାବ୍ଦୀ ହେଲା ବାଲୁଗାଁ–ବାଣପୁର ଅଞ୍ଚଳରେ ଆୟୁର୍ବେଦ ଚିକିତ୍ସାର ବିଜୟ ପତାକାକୁ ଉଡ଼ାଇ ରଖିଛନ୍ତି । ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଶହ ଶହ ରୋଗୀ ତାଙ୍କ ଚିକିତ୍ସା ଓ ପରାମର୍ଶ ପାଇଁ ଆସିଥାନ୍ତି । ଏହି ପ୍ରାତଃ ସ୍ମରଣୀୟ ମହାଶୟଙ୍କ ନିରଳସ କର୍ମମୟ ଜୀବନାଲେଖ୍ୟ ଉପରେ ଦୃଷ୍ଟି ଦେଲେ ଏକ ବିରାଟ ଗ୍ରନ୍ଥ ହେବ । କବିରାଜ ଗୋପିନାଥ ମହାରଣାଙ୍କ ଜନ୍ମ ୧୯୩୦ମସିହା ଜୁଲାଇ ୧୨ ତାରିଖ ଆଷାଢ଼ ପୂର୍ଣ୍ଣମୀ ବା ବ୍ୟାସ ଜୟନ୍ତୀ ତିଥିରେ ବାଲୁଗାଁର ପାଟଣା ସାହି ଗ୍ରାମରେ । ପିତାଙ୍କ ନାମ ସ୍ୱର୍ଗତ ପଣ୍ଡିତ କବିରାଜ ପୁରୁଷୋତ୍ତମ ମହାରଣା ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟର ଜଣେ ଲବ୍ଧ ପ୍ରତିଷ୍ଠିତ କବିରାଜ । ମାତାଙ୍କ ନାମ ପୂର୍ଣ୍ଣିମା ଦେବୀ । ୬ ଭଉଣୀ ଏବଂ ଜଣେ ଭାଇ  କବିରାଜ ରଘୁନାଥ ମହାରଣା । ପିଲାଟି ଦିନରୁ ତୁଳସୀ ଦୁଇପତ୍ରରୁ ବାସିଲା ପରି ସେ ବାଲୁଗାଁ କେନ୍ଦ୍ରୀୟ ବିଦ୍ୟାପୀଠରେ  ପାଠ ପଢ଼ିବା ସମୟରେ ବିଭିନ୍ନ ମହାପୁରୁଷଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଯୁବାବସ୍ଥାରେ କଳା ସାହିତ୍ୟ ଓ ଓଡ଼ିଶାର ସାଂସ୍କୃତିକ କ୍ରମବିକାଶ ପାଇଁ ବହୁ ସମୟ ଅତିବାହିତ କରିଥିଲେ । ଆମ ରାଜ୍ୟର ଲୋକନାଟ୍ୟକୁ ଜୀବନ୍ତ ରୂପ ଦେବାରେ ସେ ଥିଲେ ଅନ୍ୟତମ । ବିଭିନ୍ନ ସମୟରେ ଦଣ୍ଡନାଚ , ଦାସକାଠିଆ, ପାଲା, ରାସ ଆଦି ଉତ୍କଳୀୟ ସଂସ୍କୃତିର ଗୀତ ରଚନା, ସଂଗୀତ ପରିଚାଳନା କରି ସେସମୟର ନାଟ୍ୟ ପ୍ରେମୀଙ୍କୁ ମୁଗ୍ଧ କରିଥିଲେ । ସ୍ୱର୍ଗତ ନାଟ୍ୟକାର ପଦ୍ମ ଚରଣ ପଟ୍ଟନାୟକ, ସ୍ୱର୍ଗତ ପଦ୍ମଶ୍ରୀ ଭଗବାନ ସାହୁ ପ୍ରମୁଖଙ୍କ ସହ ମିଶି ପଶ୍ଚିମବଙ୍ଗର କଲିକତା, ହୁଗୁଳି, ମେଦିନାପୁର, ହାଓଡ଼ା, ଦମ୍ ଦମ୍, ବିହାରର ଟାଟା ନଗର, ଝାଡଖଣ୍ଡ ଆଦି ପ୍ରଦେଶରେ ନିଜ ଅଞ୍ଚଳର ପ୍ରସ୍ତୁତ ବିଭିନ୍ନ ଅପେରା ଗ୍ରୁପ୍‌କୁ ନେଇ ସେଠାରେ କଳା ପରିବେଷଣ କରି ଆମ ଓଡ଼ିଶାର କଳା ଓ ସଂସ୍କୃତିକୁ ସୁନାମ ଆଣି ଦେଇଥିଲେ ।  ରାଜ୍ୟ ବାହାରେ ନିଜ ରଚିତ ଓ ନିର୍ଦ୍ଦେଶିତ ବିଭିନ୍ନ ସାମାଜିକ ଓ ପୌରାଣିକ ନାଟକ ଯଥା–କାଳିଜାଇ ଗୀତିନାଟ୍ୟ, କୃଷକ ବିଦ୍ରୋହ, ଅସ୍ପୃଶ୍ୟ, ଶକୁନ୍ତଳା, ପ୍ରାୟଶ୍ଚିତ, ପାନାବାଈ, ସମାଧାନ, ଧର୍ମବୀର, ଧୀବର କନ୍ୟା, ଦାନବୀର, ରକ୍ତ ଆହୂତି, ଚନ୍ଦ୍ରହାସ, ସଂପୂର୍ଣ୍ଣ ମହାଭାରତ, ଭ୍ରାତୃସ୍ନେହ ଆଦି ବହୁ ନାଟକ ପରିବେଷଣ କରି ରାଜ୍ୟକୁ ଗୌରାବାନ୍ୱିତ ଓ ସମ୍ମାନିତ କରିଥିଲେ । ନାଟ୍ୟ ନିର୍ଦ୍ଦେଶନା ଓ ସଂଗୀତ ପରିଚାଳନା କରିବାରେ ମଧ୍ୟ ତାଙ୍କର ସୁନାମ ରହିଛି । ବିଭିନ୍ନ ବାଦ୍ୟଯନ୍ତ୍ର ଯଥା–ହାରମୋନିୟମ, କର୍‌ନେଟ୍, ବଂଶୀ. ବେଞ୍ଜୁ, ସିକ୍ସଫୋନ୍ ଆଦିକୁ ମଧ୍ୟ ସେ ହାତରେ ନିର୍ମାଣ କରି ସମସ୍ତଙ୍କୁ ଚମକୃତ କରି ଦେଉଥିଲେ । ଚିଲିକା ଅଞ୍ଚଳର ବହୁ ଗ୍ରାମରେ କଳା, ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ଗଠନ ପୂର୍ବକ ଅଂଶ ଗ୍ରହଣ କରି ଏହି ଅଞ୍ଚଳରେ ସାଂସ୍କୃତିକ ଓ ଧାର୍ମିକ ନବ ଜାଗରଣ ସୃଷ୍ଟି କରିଥିଲେ ।  ନିଜ ଅଞ୍ଚଳରେ ତଥା ରାଜ୍ୟର ବିଭିନ୍ନ ଲୋକନାଟ୍ୟ, ଡ୍ରାମା ଏବଂ

ଅନ୍ୟାନ୍ୟ କଳାତ୍ମକ ଓ ଗୁଣାତ୍ମକ ବିକାଶ ଦିଗରେ ତାଙ୍କର ଅବଦାନ ଚିରସ୍ମରଣୀୟ । ଆହୁରି ମଧ୍ୟ ଯୁବାବସ୍ଥାରେ ଗାନ୍ଧିବାଦୀ ସଂଗଠକ ଓ ସମାଜ ସେବାରେ ସେ ନିଜକୁ ଉତ୍ସର୍ଗ କରିଛନ୍ତି । ରାଜନୀତି କାର୍ଯ୍ୟରୁ ନିଜକୁ ଦୂରେଇ ରଖୁଥିଲେ ସେ । ନିଜର ବହୁମୁଖୀ ପ୍ରତିଭା ଦ୍ୱାରା ମାନବ ସେବାରେ ନିଜର ସମୟ ଓ ଶକ୍ତି ଯଥେଷ୍ଟ ଖର୍ଚ୍ଚ କରୁଥିଲେ । ବ୍ୟକ୍ତିଗତ ଜୀବନରେ ମହାତ୍ମାଗାନ୍ଧୀ ଓ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜୀବନାଦର୍ଶରେ ଅନୁପ୍ରେରିତ ହୋଇ କାର୍ଯ୍ୟ କରୁଥିଲେ । ଏଥିସହ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଆଦିଙ୍କ ଜୀବନାଦର୍ଶ ଏବଂ ସାନିଧ୍ୟ ଲାଭ କରିଥିଲେ । ଏଥିସହ ପୁରୀ ଜିଲ୍ଲା ଗୋପବନ୍ଧୁ ଦରିଦ୍ର ନାରାୟଣ ସେବାସଂଘ, କାଦୁଆ ଆଶ୍ରମ, ସାକ୍ଷୀଗୋପାଳରେ ଅନେକ ଦିନ ରହି ପୁରୁଖା ଅମ୍ବର ଚରଖାରେ ଦୈନିକ ସୂତା କାଟିବା, ଆଶ୍ରମ ସଫେଇ ଏବଂ ବନ୍ୟା ବାତ୍ୟାଞ୍ଚଳ ବୁଲି ନିଃସ୍ୱାର୍ଥପର ସେବାଦ୍ୱାରା ଆଦର୍ଶ ମଣିଷ ସୃଷ୍ଟି ହେବା ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ମାନବ ସେବାକୁ ଜୀବନର ବ୍ରତ ବୋଲି ଭାବୁଥିଲେ । ସେ ଥିଲେ ଶାନ୍ତ ଓ ସରଳ ବ୍ୟକ୍ତିତ୍ୱ । ପ୍ରଭୁ ଜଗନ୍ନାଥଙ୍କ ପ୍ରତି ତାଙ୍କର ଥିଲା ପ୍ରଗାଢ଼ ଶ୍ରଦ୍ଧା ଓ ବିଶ୍ୱାସ । ଗ୍ରାମବାସୀଙ୍କ ସ୍ୱାସ୍ଥ୍ୟ, ପ୍ରାଥମିକ ଶିକ୍ଷା, ଧର୍ମଚର୍ଚ୍ଚା, ଗ୍ରାମପଞ୍ଚାୟତ, ସମବାୟ ଆନ୍ଦୋଳନ ସାମାଜିକ ନ୍ୟାୟ ପ୍ରତିଷ୍ଠା, କୃଷି ଏବଂ ଗ୍ରାମ୍ୟ ଶିଳ୍ପ ଉପରେ ସେ ଗୁରୁତ୍ୱ ଆରୋପ କରୁଥିଲେ । ନାରୀ ଜାଗରଣ ପାଇଁ ଯୌତୁକ ପ୍ରଥା ଏବଂ ବାଲ୍ୟ ବିବାହ ପ୍ରଥା ବିଲୋପ ହେଲେ ନାରୀ ପ୍ରଗତି ସମ୍ଭବ ବୋଲି ସର୍ବଦା ଚିନ୍ତା ବ୍ୟକ୍ତ କରନ୍ତି । ସାମାଜିକ କୁ–ସଂସ୍କାର ଓ ଅନ୍ଧ ବିଶ୍ୱାସର ସେ ଦୃଢ଼ ପ୍ରତିବାଦୀ ଥିଲେ । ତାଙ୍କ ଜୀବନରେ ସେ କେବେ ପ୍ରଚାରଧର୍ମୀ ନ ଥିଲେ । ଆମ ଚିଲିକା ଅଞ୍ଚଳରେ ଗାନ୍ଧିବାଦୀ ଡ଼ାକ୍ତର ରାଧାଚରଣ ପଣ୍ଡାଙ୍କ ସହ, ସ୍ୱର୍ଗତ ମଙ୍ଗୁଳି ସେଠୀ, ସ୍ୱର୍ଗତ ବାନାମ୍ବର ପଣ୍ଡା, ସ୍ୱର୍ଗତ ପଦ୍ମ ପଟ୍ଟନାୟକ, ସ୍ୱର୍ଗତ ରାମଚନ୍ଦ୍ର ପ୍ରହରାଜ, ଖଲି ପଣ୍ଡା, ସନ୍ତୋଷ ରଣ ସିଂହ, ଗୋପିନାଥ ମହାରଣା, କପିଳ ସୁବୁଦ୍ଧି, ଉଲ୍ଲା ତିଆଡ଼ି, ହୃରୁଷି ପଲାଇ, ବାଞ୍ଛା ମହାରଣା, ଗୋଦାବରୀଶ ତ୍ରିପାଠୀ ଆଦି ବହୁ ଯୁବକ ମିଳିତ ହୋଇ ପ୍ରଥମେ 'ବାନର ସେନା' ଗଠନ କରି ଏ ଅଞ୍ଚଳରେ ରାସ୍ତାଘାଟ ନିର୍ମାଣ, ସଫେଇ, କୂଅ ପୋଖରୀକୁ ପ୍ରଦୂଷଣ ମୁକ୍ତ, ବାଲ୍ୟ ବିବାହ ପ୍ରଥା ବିରୋଧ, ରାସ୍ତା ଘାଟରୁ ମଡ଼, ମୁର୍ଦ୍ଦାର ସଫେଇ କରି ଶବ ସତ୍କାର ଆଦି ବିଭିନ୍ନ ସାମାଜିକ କାର୍ଯ୍ୟ କରୁଥିଲେ । ଗ୍ରାମର ଯୁବକମାନଙ୍କୁ ଏକତ୍ର କରିବା ପାଇଁ ଗୋପିନାଥ ମହାରଣା ଗୀତ ରଚନା କଲେ ତୁରନ୍ତ କବି ଖଲି ପଣ୍ଡା ତାକୁ ଗ୍ରାମେ ଗ୍ରାମେ ବୋଲି ଶୁଣାଇ ଯୁବକମାନଙ୍କୁ ସଂଗଠିତ କରୁଥିଲେ । ଗ୍ରାମ ମଧ୍ୟରେ ବୃକ୍ଷରୋପଣ, ପରିବେଶ ସୁରକ୍ଷା, ସ୍ୱାସ୍ଥ୍ୟ ସଚେତନତା କାର୍ଯ୍ୟକ୍ରମ କରି ଚିଲିକା ଅଞ୍ଚଳରେ ଅବିସ୍ମରଣୀୟ କାର୍ଯ୍ୟ କରିଥିଲେ । ଛାତ୍ରଛାତ୍ରୀ ଓ ଯୁବକମାନଙ୍କ ମଧ୍ୟରେ ଦେଶପ୍ରେମ ଜାଗ୍ରତ ପାଇଁ ଗୋପିନାଥ ମହାରଣା ଅଲିଭାଜ୍ୟୋତି ନାମକ ପୁସ୍ତକ ରଚନା କରି ବଣ୍ଟନ କରୁଥିଲେ । ଆମ ଅଞ୍ଚଳରେ ସମାଜ ସେବା, ସାମାଜିକ କୁ–ସଂସ୍କାର ଲୋପ, ସାମାଜିକ ନ୍ୟାୟ ପ୍ରତିଷ୍ଠା, କଳା, ସାହିତ୍ୟ ଓ ସାଂସ୍କୃତିକ ନବ ଜାଗରଣ ପାଇଁ ଗଠିତ ବାନର ସେନାରେ କବିରାଜ ଗୋପିନାଥ ମହାରଣା ଓ ସମ୍ମାନସ୍ପଦ ଡ଼ାକ୍ତର ରାଧାଚରଣ ପଣ୍ଡାଙ୍କ ନେତୃତ୍ୱ ଥିଲା ସର୍ବଶ୍ରେଷ୍ଠ । ସର୍ବଦା ଗୋପିନାଥ ମହାରଣା ମହାତ୍ମା ଗାନ୍ଧୀଙ୍କ ମହାପ୍ରୟାଣ ଦିବସ ଏବଂ ଗୋପବନ୍ଧୁଙ୍କ ଜୟନ୍ତୀ ପାଳନ କରିଥାନ୍ତି । ବଡ଼, ଭାଇ ରଘୁନାଥ ମହାରଣା ହଠାତ୍ ରୋଗୀ ସେବା ଓ ଚିକିତ୍ସା କରୁ କରୁ ଇହ ଜଗତରୁ ବିଦାୟ ନେବା ପରେ ପିତା କବିରାଜ ପୁରୁଷୋତ୍ତମ ମହାରଣାଙ୍କ ତୀକ୍ଷଣ ଦୃଷ୍ଟି ଓ ତାଗିଦ୍ ପରେ ଗୋପିନାଥ ମହାରଣା ସବୁ ଦାୟିତ୍ୱ ଛାଡ଼ି ଚିକିତ୍ସା ସେବାରେ ନିଜକୁ ସଂପୂର୍ଣ୍ଣ ନିୟୋଜିତ କଲେ । ଭୋର ସମୟରୁ ଉଠି ନିତ୍ୟ କର୍ମସାରି ଲେଖାଲେଖି ସହ ଭାଗବତ ପ୍ରାର୍ଥନା, ଯୋଗ, ପ୍ରାଣାୟାମ ସହ ପ୍ରତ୍ୟହ ରେଡ଼ିଓ ଶୁଣନ୍ତି । ସକାଳ ୮ଟା ମଧ୍ୟରେ ଚିକିତ୍ସାଳୟରେ ପହଞ୍ଚି ଚିକିତ୍ସାଳୟ ଓ ପରିବେଶ ମଧ୍ୟରେ ରୋଗୀ ସେବାରେ ନିଜକୁ ନିୟୋଜିତ କରନ୍ତି । ଅପେକ୍ଷା କରିଥିବା ଦୂରଦୂରାନ୍ତ ରୋଗୀମାନଙ୍କୁ ଡ଼ାକି ପ୍ରତ୍ୟେକଙ୍କ ରୋଗ ଓ ଲକ୍ଷଣମାନ ବୁଝି ବିଚାରି ଔଷଧ ବ୍ୟବସ୍ଥା ପତ୍ର ସହ ଆଚାର, ବିଚାର ଓ ଆଦର୍ଶ ଦୀନଚର୍ଯ୍ୟା ମଧ୍ୟରେ ବଞ୍ଚିବାକୁ ପରାମର୍ଶ ଦିଅନ୍ତି । ବଞ୍ଚିବା ପାଇଁ ଯେତିକି ଖାଦ୍ୟ ଦରକାର, ସେତିକି ଗ୍ରହଣ କରି 'ଖାଦ୍ୟ ସୁରକ୍ଷା' ପାଇଁ ପରାମର୍ଶ ଦିଅନ୍ତି । ରାଜ୍ୟର ଅନ୍ୟତମ ପ୍ରସିଦ୍ଧି ଲାଭ କରିଥିବା ଦ୍ୱ ପଣ୍ଡିତ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ମଧ୍ୟ କବିରାଜ ଗୋପିନାଥ ମହାରଣାଙ୍କ ଚିକିତ୍ସାଳୟକୁ ନିୟମିତ ଆସି ଦୁହେଁ ଏ ଅଞ୍ଚଳରେ ରୋଗୀ ସେବା କରି ପ୍ରସିଦ୍ଧି ଲାଭ କରିଥିଲେ । ଏଇ ଦୁଇ 'ଅମୃତ ହସ୍ତା' ଚିକିତ୍ସକଙ୍କ ଚିକିତ୍ସା ସେବା ପାଇଁ ରାଜ୍ୟର ପ୍ରତ୍ୟହ ବହୁ ରୋଗୀ ଏଯାବତ୍ ତାଙ୍କୁ ମନେ ପକାନ୍ତି । ଆଦର୍ଶ ଚିକିତ୍ସା ସେବା ସହ ତାଙ୍କର ଉଦାର ମାନବିକତା, ଆକର୍ଷଣୀୟ ବ୍ୟକ୍ତିତ୍ୱ, ନିରଳସ କର୍ମ, ସମୟାନୁବର୍ତ୍ତିତା ଅତୁଳନୀୟ । କବିରାଜ ଡ଼ାକ୍ତର ଗୋପିନାଥ ମହାରଣା ଏକାଧାରରେ ଜଣେ ସରକାରୀ ସ୍ୱୀକୃତି ପ୍ରାପ୍ତ ହୋମିଓ ପ୍ୟାଥିକ ଡ଼ାକ୍ତର । ସର୍ବଦା ଅନେକ ସମୟରେ ଅଭାବ ଗ୍ରସ୍ତ, ଦୀନ, ହୀନ ରୋଗୀଙ୍କୁ ମୁକ୍ତ ଭାବେ ହୋମିଓ ପ୍ୟାଥିକ ଔଷଧ ବିତରଣ କରୁଥିଲେ । ବାଲୁଗାଁ ଅଞ୍ଚଳର ବିଭିନ୍ନ ଗ୍ରାମରୁ ପ୍ରତ୍ୟହ ଶହ ଶହ ରୋଗୀ ତାଙ୍କର ହୋମିଓପ୍ୟାଥିକ୍ ଚିକିତ୍ସା ପାଇଁ ଚିକିତ୍ସାଳୟରେ ଭିଡ଼ ଜମାଉଥିଲେ । ବାସ୍ତବରେ ଏ ଅଞ୍ଚଳରେ ସେ ଅର୍ଦ୍ଧଶତାବ୍ଦୀ ଧରି ଆୟୁର୍ବେଦ ଓ ହୋମିଓପ୍ୟାଥିକ୍ ଚିକିତ୍ସାର ଜଣେ ସୁଦକ୍ଷ

ବ୍ୟବସ୍ଥାପକ ଥିଲେ । ଓଡ଼ିଆ ଭାଷା, ହିନ୍ଦୀ, ସଂସ୍କୃତ, ବଙ୍ଗଳା, ଇଂରାଜୀ ଭାଷାରେ ତାଙ୍କର ଦକ୍ଷତା ଥିଲା । ବାଲୁଗାଁ ଅଞ୍ଚଳରେ ସମବାୟ ଆନ୍ଦୋଳନ ଆରମ୍ଭ କରି ଚିଲିକା ବହୁମୁଖୀ ଶିଳ୍ପ ସମବାୟ ସମିତି ଗଠନ କରିଥିଲେ । ଏଥିରେ ବାଲୁଗାଁ– ବାଣପୁର ଅଞ୍ଚଳର ବିଭିନ୍ନ ଗ୍ରାମୀଣ କାରିଗର ସାବୁନ, ଚକ୍, କାଠ କାରିଗରୀ, ବେତ କାରିଗରୀ, ସିଲେଇ, ଚୁଡ଼ି ଆଦି ପ୍ରସ୍ତୁତ କରି ବୈଷୟିକ ତାଲିମ୍ ନେଇ ସରକାରଙ୍କ ସହାୟତାରେ ଜୀବିକା ନିର୍ବାହ କରୁଥିଲେ । ସରକାର ଏବଂ କାରିଗରଙ୍କ ମଧ୍ୟରେ ତାରତମ୍ୟ ନରହିବାରୁ ତାହା ଏବେ ବିପର୍ଯ୍ୟସ୍ତ ଭାବେ ପଡ଼ି ରହିଛି । ରାଜ୍ୟରେ ଆୟୁର୍ବେଦ ପ୍ରଚାର ଓ ପ୍ରସାର ପାଇଁ କବିରାଜ ଗୋପିନାଥ ମହାରଣା ବହୁ ବିଶିଷ୍ଟ ଆୟୁର୍ବେଦବିତ୍ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା, ପଣ୍ଡିତ କବିରାଜ ଭୀମସେନ ପାଢ଼ୀ, ପଣ୍ଡିତ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା, ପଣ୍ଡିତ କବିରାଜ ସତ୍ୟ ନାରାୟଣ ପାତ୍ର, ପଣ୍ଡିତ କବିରାଜ ଘନଶ୍ୟାମ ମିଶ୍ର ଆଦି ବହୁ କବିରାଜମାନଙ୍କ ସହିତ ମିଶି କାର୍ଯ୍ୟ କରିଛନ୍ତି । ତାଙ୍କର ମୁଖ୍ୟ ଉଦ୍ୟମରେ ବାଲୁଗାଁଠାରେ ନିଖିଳ ଉତ୍କଳ ବୈଦ୍ୟ ସମ୍ମିଳନୀର ୩୨ତମ ଅଧିବେଶନରେ ରାଜ୍ୟର ସହସ୍ରାଧିକ କବିରାଜ, ଆୟୁର୍ବେଦବିଦ୍ ବାଲୁଗାଁରେ ଯୋଗଦେଇ ରାଜ୍ୟର ଆୟୁର୍ବେଦର ଅଭ୍ୟୁଥାନ୍ ପାଇଁ ସଂକଳ୍ପ କରିଥିଲେ । ରାଜ୍ୟରେ ଆୟୁର୍ବେଦର ବ୍ୟାପକ ପ୍ରଚାର ଓ ପ୍ରସାର ପାଇଁ ତାଙ୍କୁ 'ଆୟୁର୍ବେଦ ଶିରୋମଣୀ' ଉପାଧିରେ ସମ୍ମାନିତ କରାଯାଇଛି । ୧୯୯୩ ମସିହାରେ ରାଜ୍ୟରେ ପ୍ରଥମ କରି 'ଏଡସ୍ ଏବଂ ଆୟୁର୍ବେଦ ନିରୂପଣ' ଗ୍ରନ୍ଥ ପ୍ରକାଶ କରି ସମଗ୍ର ଦେଶବାସୀଙ୍କୁ ଚକିତ କରିଥିଲେ । ଏଥିରେ ଦିଲ୍ଲୀସ୍ଥିତ ଏଲୋପ୍ୟାଥିକ ଗବେଷଣା ସଂସ୍ଥା 'ଇଣ୍ଡିଆନ୍ କାଉନସିଲ ଅଫ୍ ମେଡ଼ିକାଲ ରିସର୍ଚ' ନିର୍ଦ୍ଦେଶକ ଶ୍ରୀରାମ ପ୍ରସାଦ ତ୍ରିପାଠୀ, ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଭାରତର ଉଚ୍ଚତମ ନ୍ୟାୟାଳୟର ପୂର୍ବତନ ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ର ପୁସ୍ତକ ଉନ୍ମୋଚନ ଉତ୍ସବରେ ଯୋଗ ଦେଇ ତାଙ୍କର ଏହି ଉଦ୍ୟମକୁ ପ୍ରଶଂସା କରିଥିଲେ । ଏଥିସହ ରାଜ୍ୟର ତତ୍କାଳୀନ ରାଜ୍ୟପାଳ ବି.ସତ୍ୟନାରାୟଣ ରେଡ୍ଡି, ନ୍ୟାସନାଲ ଏଡସ୍ କଂଟ୍ରୋଲ୍ ବୋର୍ଡ଼, ସେଣ୍ଟ୍ରାଲ୍ କାଉନ୍‌ସିଲ୍ ଅଫ୍ ଇଣ୍ଡିଆନ୍ ମେଡ଼ିସିନ୍, ଦିଲ୍ଲୀ ପ୍ରମୁଖ ତାଙ୍କର ଏହି ଉଦ୍ୟମର ଭୂୟସି ପ୍ରଶଂସା କରିଥିଲେ । ଯେଉଁ ରୋଗ ପାଇଁ ଏଲୋପ୍ୟାଥିକ ଚିକିତ୍ସା ବିଜ୍ଞାନ ଚିନ୍ତିତ ରହୁଥିବା ସ୍ଥଳରେ ଆମ ଭାରତର ପାରମ୍ପରିକ ଚିକିତ୍ସା ବିଜ୍ଞାନ 'ଆୟୁର୍ବେଦ' ମଧ୍ୟରେ ଏ ରୋଗର ନିର୍ଣ୍ଣୟ, ଚିକିତ୍ସାଶୈଳୀ ଏବଂ ସର୍ବୋପରି ଜଣେ ଦକ୍ଷ ଗ୍ରାମୀଣ ସ୍ତରର ଆୟୁର୍ବେଦ ଚିକିତ୍ସକଙ୍କ ଏପରି ସୁ–ଉଦ୍ୟମ ଧନ୍ୱନ୍ତରୀ ତୁଲ୍ୟ ବୋଲି ସମସ୍ତେ ବିବେଚନା କରି ସମ୍ମାନିତ କରିଥିଲେ । ଚିକିତ୍ସା ସେବା ସହ ପରିବେଶ ସୁରକ୍ଷା ପାଇଁ ସେ ଅହରହ କାର୍ଯ୍ୟ କରି ସୁନାମ ଅର୍ଜନ କରିଛନ୍ତି । ରାଜ୍ୟ ସରକାରଙ୍କ ପକ୍ଷରୁ ତାଙ୍କୁ 'ପ୍ରକୃତି ବନ୍ଧୁ'ରେ ମଧ୍ୟ ସମ୍ମାନିତ କରାଯାଇଛି । ଔଷଧୀୟ ବୃକ୍ଷଲତାକୁ ସୁରକ୍ଷିତ ଓ ସଂରକ୍ଷିତ କରା ନ ଗଲେ ଆୟୁର୍ବେଦର ଉତ୍ତରାଧିକାରୀଙ୍କ ଭବିଷ୍ୟତ ଅନ୍ଧକାର ବୋଲି ସେ ମତ ପ୍ରକାଶ କରନ୍ତି । ନିଜର ସ୍ୱାସ୍ଥ୍ୟ ପ୍ରତିଷ୍ଠାନ 'ଶ୍ରୀ ପୁରୁଷୋତ୍ତମ ଆୟୁର୍ବେଦ ଚିକିତ୍ସା ମନ୍ଦିର' ଆନୁକୂଲ୍ୟରେ ପ୍ରତି ବର୍ଷ କୃଷ୍ଣ ତ୍ରୟୋଦଶୀରେ ଆୟୁର୍ବେଦ ପ୍ରବର୍ତ୍ତକ ଭଗବାନ ଧନ୍ୱନ୍ତରୀଙ୍କ 'ରାଜ୍ୟସ୍ତରୀୟ' ଉତ୍ସବ ତଥା ବିଶ୍ୱ ଆୟୁର୍ବେଦ ଦିବସ ବହୁ ବର୍ଷ ଧରି ପାଳିତ ହୋଇ ଆସୁଛି । ଏଥିରେ ରାଜ୍ୟର ବହୁ ପଦସ୍ଥ ଉଚ୍ଚ କର୍ମକର୍ତ୍ତା ଯୋଗ ଦେଇ ଆୟୁର୍ବେଦର ଉନ୍ନତି ପ୍ରଚାର ଓ ପ୍ରସାର ନେଇ ଆଲୋଚନା କରିଥାନ୍ତି । କବିରାଜ ଗୋପିନାଥ ମହାରଣାଙ୍କ ସୁ–ଉଦ୍ୟମ ଓ ଚେଷ୍ଟା ଦ୍ୱାରା ତାଙ୍କ ଅନୁଷ୍ଠାନ ମାଧ୍ୟମରେ ରାଜ୍ୟରେ ଆୟୁର୍ବେଦ ଚିକିତ୍ସାର ଉତ୍କୃଷ୍ଟତାର ପ୍ରଚାର ଓ ବିକାଶ ଦିଗରେ ନିରନ୍ତର ଚେଷ୍ଟା ଜାରି ରହିଛି । ବିଶୁଦ୍ଧ ଆୟୁର୍ବେଦ ଔଷଧ ପ୍ରସ୍ତୁତ କରିବା, ଉପଯୁକ୍ତ ମାତ୍ରା ନିର୍ଦ୍ଧାରଣ କରି ପ୍ରତିଦିନ ନିଜ ହସ୍ତରେ ଅସାଧ୍ୟ ରୋଗୀମାନଙ୍କୁ ପାଚନ ଅନୁପାତରେ ତାଙ୍କୁ ଖାଇବାକୁ ଦେଇ ନୈତିକ ଉପଦେଶ ଦେଉଥିଲେ । ରୋଗୀମାନଙ୍କ ପ୍ରତି ସଦାଚାର ଦେଖାଇବା ପ୍ରତି ଚିକିତ୍ସକର କର୍ତ୍ତବ୍ୟ ବୋଲି କହିଥାନ୍ତି । ଆକାଶବାଣୀ ଓ ଦୂରଦର୍ଶନ ପ୍ରସାରରେ ବହୁଥର ରାଜ୍ୟରେ ଆୟୁର୍ବେଦର ଉତ୍ଥାନ, ପ୍ରଚାର ଓ ପ୍ରସାର ପାଇଁ ସେ ବିଭିନ୍ନ ସୁଚିନ୍ତିତ ମତାମତ, ଆଲୋଚନା, ସାକ୍ଷାତକାର ଆଦି କାର୍ଯ୍ୟକ୍ରମରେ ଯୋଗ ଦେଇ ସମସ୍ତଙ୍କୁ ଉତ୍ସାହିତ କରିଥାନ୍ତି । ସୁନ୍ଦର ପରିବେଶ ସୃଷ୍ଟି ପାଇଁ ଚିଲିକା ଅଞ୍ଚଳର ବିଭିନ୍ନ ଗ୍ରାମରେ ବହୁ ସତ୍‌ସଙ୍ଗ ଅନୁଷ୍ଠାନ ଗଠନ କରିଛନ୍ତି, ଯାହାଦ୍ୱାରା ପ୍ରତ୍ୟେକ ଜନସାଧାରଣ ସଦ୍‌ଜ୍ଞାନ ଲାଭ କରି ଆଜି ତାଙ୍କୁ ମନେ ପକାନ୍ତି । ଶେଷରେ ୦୩.୧୧.୨୦୧୩ ରିଖ ପବିତ୍ର ଦୀପାବଳି ତିଥିରେ ଏହି ମହାନ୍ ବ୍ୟକ୍ତିତ୍ୱଙ୍କର ତିରୋଧାନ ହୋଇଯାଇଛି ।

ତାଙ୍କ ସାହିତ୍ୟ କୃତି–

ଅସ୍ପୃଶ୍ୟ, ସମାଧାନ, କୃଷକ ବିଦ୍ରୋହ, ଧର୍ମବୀର, ଧୀବର କନ୍ୟା, ବନବୀର, ରକ୍ତଆହୂତି, ଚନ୍ଦ୍ରହାସ ସଂପୂର୍ଣ୍ଣ ମହାଭାରତ, କାଳିଜାଇ, ଭ୍ରାତୃସ୍ନେହ, ଶକୁନ୍ତଳା, ହରିଶ୍ଚନ୍ଦ୍ର ପ୍ରାୟଶ୍ଚିତ ଇତ୍ୟାଦି ।

ପ୍ରକାଶିତ ପୁସ୍ତକ–

ପଞ୍ଚାମୃତମ୍, ଅଲିଭାଜ୍ୟୋତି, ଆୟୁର୍ବେଦ ଓ ପରିବେଶ, ଏଡସ୍ ଓ ଆୟୁର୍ବେଦ ନିରୂପଣ, ଆଧ୍ୟାତ୍ମ ଅନୁଭୂତି ଇତ୍ୟାଦି ।

ମାର୍ଫତ୍ – ଶ୍ରୀପୁରୁଷୋତ୍ତମ ଆୟୁର୍ବେଦିକ୍ ଚିକିତ୍ସା ମନ୍ଦିର
ଗାନ୍ଧୀ ଛକ, ବାଲୁଗାଁ, ଖୋରଧା–୭୫୨୦୩୦

# ସ୍ୱାଧୀନତା ସଂଗ୍ରାମୀ ଶତାବ୍ଦୀ ପୁରୁଷ ପୁରୁଷୋତ୍ତମ ନାୟକ

ଡକ୍ଟର ବାସୁଦେବ ଦାସ

ଶତାବ୍ଦୀ ପୁରୁଷ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପୁରୁଷୋତ୍ତମ ନାୟକଙ୍କ ଆବିର୍ଭାବ ଏକ ସନ୍ଧିକ୍ଷଣରେ । ୧୯୨୧ ମସିହାରେ ଗାନ୍ଧିଜୀ କଟକର କାଠଯୋଡ଼ି ବାଲିରେ ପୁରୀଘାଟଠାରେ ପ୍ରଥମେ ସ୍ୱାଧୀନତା ସଂଗ୍ରାମର ଅମର୍ଷୀବାଣୀ ଶୁଣାଇ ଥିଲେ । ସମଗ୍ର କଟକରେ ନିଷେଧାଦେଶ ଜାରି ହୋଇ ଥିବାରୁ ଗାନ୍ଧିଜୀ ପାଦ ଥାପିବା ପାଇଁ ହାତେ ମାତ୍ର ଜାଗା ମିଳି ନଥିଲା । ଜନୈକ ବ୍ୟବସାୟୀ କାଠଯୋଡ଼ି ବାଲି ପଠାକୁ ଲିଜ୍ ନେଇ ଥିବାରୁ ପ୍ରଥମ ଥର ପାଇଁ ସ୍ୱାଧୀନତା ସଂଗ୍ରାମର ବୀଜ ବପନ କରାଯାଇ ପାରିଲା । ବିହାର କଂଗ୍ରେସରୁ ଓଡ଼ିଶାକୁ ୧୯୨୦ ସେପ୍ଟେମ୍ବର କଲିକତା ଅଧିବେଶନରେ ଗୋପବନ୍ଧୁ ଦାସ ସ୍ୱତନ୍ତ୍ର ରୂପେ ବିବେଚନା କରାଇ ଥିଲେ ଏବଂ ସେ ହିଁ ଓଡ଼ିଶା କଂଗ୍ରେସର ପ୍ରଥମ ସଭାପତି ଓ ମୁକ୍ତି ଲଢ଼େଇର ପ୍ରଥମ ସେନାପତି ।

ଓଡ଼ିଶାର ଶିକ୍ଷାନୁଷ୍ଠାନ, ମଠ–ମନ୍ଦିର ସଂଗଠନର ଆଦିପୀଠ । ଏହି ସ୍ଥାନରେ ସବୁ ଅସହଯୋଗର ବାର୍ତ୍ତା ପହଞ୍ଚିଲା । ଏପରିକି ଛୋଟ ପିଲାମାନଙ୍କୁ ମାଟି ମାଆକୁ ବିଦେଶୀ ଶତ୍ରୁ କବଳରୁ ମୁକ୍ତ କରିବା ପାଇଁ ଚାହାଳୀର ଓଝାମାନେ ମଧ ମନ୍ତ୍ର ପଢ଼ାଉ ଥିଲେ । ସେହିପରି ଫକୀରାବାଦ ମାଇନର ସ୍କୁଲର ଜନୈକ ଶିକ୍ଷକ ମାୟାଧର ପଣ୍ଡା ପୁରୁଷୋତ୍ତମଙ୍କୁ ଦେଶର ପରିସ୍ଥିତି ବୁଝାଇ ଥିଲେ । ତମେ ବଡ଼ ହେଲେ ଗାନ୍ଧୀଙ୍କ କଥା ମାନି ଦେଶ ପାଇଁ ଲଢ଼ିବ । କୈଶୋର ଏକ ପରିବର୍ତ୍ତନର ସମୟ । ପ୍ରତ୍ୟେକ ବ୍ୟକ୍ତି ଏହି ସମୟରେ ବାଟ ବାଛି ନିଅନ୍ତି । ଶିକ୍ଷା ସହିତ ବିଚାର ସମତାଳରେ ଚାଲେ । ଛାତ୍ର ୧୪ ବର୍ଷର ବାଳକ ଦେଶ ବିଦେଶର କଥା ପଢ଼ିଲା । ଗାନ୍ଧୀ, ଗୋପବନ୍ଧୁଙ୍କ ବିଷୟ ଜାଣି ନିଜର ମନକୁ ସତେଜ ଓ ସକ୍ରିୟ କରିନେଲା । ଜାଲିଆନାୱାଲାବାଗ୍‌ର ସମୂହ ନର ସଂହାର କଥା ପୁରୁଷୋତ୍ତମଙ୍କ ପ୍ରାଣରେ ଗୁଳିବିଦ୍ଧର ଯନ୍ତ୍ରଣା ଆଣିଥିଲା । ଖୁଦିରାମର ଫାଶୀରେ ଅତିଷ୍ଠ ହୋଇ ଉଠିଥିଲେ ପୁରୁଷୋତ୍ତମ । ସମୟ କ୍ରମେ ପ୍ରତିଭାର ବିକାଶ ହୁଏ । ଉତ୍ତମ ବାତାବରଣକୁ ଏ ଚିତ୍ତ ଅପେକ୍ଷା କରିଥାଏ । ମଳୟ ସ୍ପର୍ଶରେ ପାଦପ କିଶଳୟ ଧରେ । ବଂଦେମାତରମ୍ ଧ୍ୱନି ପୁରୁଷୋତ୍ତମ ନାୟକଙ୍କ ପ୍ରାଣରେ ତୋଳିଥିଲା ଉଦ୍ଦାମତାର ସ୍ୱର । ଗାନ୍ଧିଜୀଙ୍କର ଆଗମନ ହୁଏ କେନ୍ଦ୍ରାପଡ଼ାକୁ । ଏହି ଐତିହାସିକ ଘଟଣା ପ୍ରବାହରେ ପୁରୁଷୋତ୍ତମ ସାମିଲ ହୋଇଗଲେ ଜାତୀୟ ସଂଗ୍ରାମରେ । ସେ ବର୍ଷା ବସନ୍ତ ଓ ବୈଶାଖକୁ ଭେଟି ଦେଇଥିଲେ କ୍ରାନ୍ତିର ପଥରେ ।

### ସନ୍ଥମାନଙ୍କର ଗାଁ

କେନ୍ଦ୍ରାପଡ଼ା ସଦର ମହକୁମାରୁ ମାତ୍ର ଦଶ କିଲୋମିଟର ଦୂରରେ ଡେରାବିଶ ବ୍ଲକ ଅନ୍ତର୍ଗତ ସଂଥପୁର ବୋଲି ଗାଁ ଖଣ୍ଡେ । ଉନବିଂଶ ଶତାବ୍ଦୀର ଶେଷ ଭାଗରେ ବୈଷ୍ଣବାଚାର୍ଯ୍ୟ ନିତ୍ୟାନନ୍ଦ ଗୋସ୍ୱାମୀଙ୍କର ଗୁରୁ ଗଦାଧର ଗୋସ୍ୱାମୀ (ଗୋସେଇଁ) ଏଠାରେ ଏକ ମଠ ସ୍ଥାପନ କରିଥିଲେ । ବୈଷ୍ଣବ ଧର୍ମର ପ୍ରଭାବ ସେ ଗ୍ରାମର ଲୋକମାନଙ୍କୁ ସଂଥର ଗୁଣ ଆଣି ଦେଇଥିଲା । ଗାଁର ପ୍ରସିଦ୍ଧ ମହାଦେବ ଗର୍ଭେଶ୍ୱର ଶିବଲିଙ୍ଗ କେଉଁ ଅଜଣା କାଳରୁ ପୂଜିତ । ବୌଦ୍ଧ ଅଧୁଷିତ ଅଂଚଳରେ ହିନ୍ଦୁ ସନାତନ ଧର୍ମର ପ୍ରଚାର ଓ ପ୍ରଚଳନ ପାଇଁ ବିଭିନ୍ନ ଦେବଦେବୀଙ୍କର ମୂର୍ତ୍ତି ସ୍ଥାପନ କରାଯାଇଥାଏ କିମ୍ବା ମୂର୍ତ୍ତିକୁ ଭିନ୍ନ ଏକ ନାମରେ ପରିଚିତ କରି ପୂଜା କରାଯାଏ । ଏଠାରେ ସିଦ୍ଧ ପୁରୁଷଙ୍କର ଅବସ୍ଥାନ ହେତୁ କାଳକ୍ରମେ ଗାଁର ନାମ ସନ୍ଥପୁର ହୋଇଥବା ବିଶ୍ୱାସ । ଏ ଗାଁ ନରଙ୍ଗ ପଞ୍ଚାୟତ ଅନ୍ତର୍ଗତ । ଏହି ଗାଁର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋରମ । ଦକ୍ଷିଣ ଦିଗରେ ନିରଗ କୁଟିଳା ଗୋବରୀ ନଦୀ ତୀରସ୍ଥ ଗଛଲତା ଗୁଳ୍ମର ପରିବେଶ ଶାନ୍ତ ଓ କାନ୍ତ । ଗାଁର ଲୋକେ ସାଧାରଣତଃ କୃଷିଜୀବୀ । ଶହେ ବର୍ଷ ତଳକୁ ଫେରିଗଲେ ଏଇ

ଗାଁର ସ୍ଥିତି ଘନବନ ବେଷ୍ଟିତ ଥିଲା । ଗମନାଗମନର ମାଧ୍ୟମ ହିଁ ନଥିଲା । ଗ୍ରାମବାସୀଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ଜୀବନ ଯାପନ ମୂଳ ଲକ୍ଷ୍ୟ ଥିଲା । ଗ୍ରାମଟି ଆଳି ରାଜା ବ୍ରଜ ସୁନ୍ଦର ଦେବଙ୍କ ଇଲାକା ଅନ୍ତର୍ଭୁକ୍ତ ଥିବାରୁ ରାଜ ପ୍ରଭାବ ଅଧିକ ଉପଲବ୍ଧ । ତାଙ୍କ ତାଡ଼ନାରେ ସମୟେ ସମୟେ ରାଜବିରୋଧୀ କାର୍ଯ୍ୟ ପାଇଁ ଦଣ୍ଡ ଭୋଗ କରିବାକୁ ପଡ଼ିଥାଏ । ସେମାନଙ୍କ ମଧ୍ୟରେ ନାୟକ ବଂଶର ଖ୍ୟାତି ଓ ପ୍ରତିପତ୍ତି ଥିଲା । ଆଦର୍ଶ କୃଷକ, ମମଲତି ବା ମୁରବିପଣରେ ସେମାନେ କାର୍ଯ୍ୟ କରି ଆସି ଥିବାରୁ ଏମାନଙ୍କୁ ନାୟକ ଉପାଧି ମିଳିଥିଲା । ପୁରୁଷୋତ୍ତମ ନାୟକଙ୍କ ନେତୃତ୍ୱରେ ଏ ଗାଁର ରୂପ, ରଂଗ, ସଭ୍ୟତା ଓ ସଂସ୍କୃତି ବଦଳିଛି । ମୌଳିକ ବିଦ୍ୟାଳୟ ମାଇନର ସ୍କୁଲ ଓ ନିଜ ପିତାଙ୍କ ନାମରେ କୃଷ୍ଣଚନ୍ଦ୍ର ହାଇସ୍କୁଲ ପ୍ରତିଷ୍ଠା ହୋଇ ପାରିଛି । ଆଧୁନିକ ସଛପୁର ଏକ ପର୍ଯ୍ୟଟନ କ୍ଷେତ୍ରରେ ପରିଣତ ହେବାକୁ ଯାଉଛି । ଏଇ ଗ୍ରାମରେ ସ୍ୱାଧୀନତା ସଂଗ୍ରାମୀ ପୁରୁଷୋତ୍ତମ ନାୟକ ଯେ ଜଣେ ଭାରତବର୍ଷର ଖ୍ୟାତି ସମ୍ପନ୍ନ ବ୍ୟକ୍ତି ଭାବେ ପରିଚିତ ହେବେ, ଏ କଥା କିଏ ଜାଣିଥିଲା ?

### ନାୟକ ବଂଶ

ସଛପୁର ଗାଁର ନାୟକ ପରିବାରର ନାଁ ଡାକ୍ । ସହଦେବ ନାୟକ ଥିଲେ ଖୁବ୍ ଜଣାଶୁଣା ମୁଖିଆ ଲୋକ । ହିନ୍ଦୁ ସଂଯୁକ୍ତ ପରିବାର ଆମ ସମାଜର ମୂଳଭିତ୍ତି । ବହୁ ସଂଯୁକ୍ତ ବା ଯୌଥ ପରିବାର ପରି ନାୟକ ପରିବାର । ସ୍ନେହ, ମମତା ଓ ଅତିଥି ପରାୟଣତାରେ ଏହି ପରିବାର ସ୍ୱର୍ଗ ସୁଖ ଦାନ କରିଥାଏ । ସହଦେବ ଓ ପତ୍ନୀ କେଲୁଣି ଦେବୀଙ୍କ ପାଞ୍ଚଝିଅ ଭିତରେ ଏକମାତ୍ର ପୁତ୍ର କୃଷ୍ଣଚନ୍ଦ୍ର । ବାଳଗୋବିନ୍ଦଙ୍କର ପୂଜା ଆରାଧନା କରି କୃଷ୍ଣଙ୍କୁ ସେ ଲାଭ କରିଥିଲେ । କୃଷ୍ଣଚନ୍ଦ୍ର ବାଲ୍ୟରୁ ଦେବାର୍ଚ୍ଚନା, ଭଜନ କୀର୍ତ୍ତନ ପ୍ରତି ଆକୃଷ୍ଟ ଥିଲେ । ନଦୀ ଉପତ୍ୟକା ବା ବନ ପ୍ରଦେଶର ସୁଶୀତଳ ପରିବେଶ ଭସା ବାଦଲକୁ ଘନୀଭୂତ କରି ଟାଣି ଆଣିବା ଭଳି – ୧୯୧୮ ମସିହାରେ ଶ୍ରୀଲ ବଡ଼ ବାବାଜି ରାଧାରମଣ ଦେବଙ୍କର ତୁଳସୀ କ୍ଷେତ୍ରକୁ ଆଗମନ । କେନ୍ଦ୍ରାପଡ଼ାର ପୁଣ୍ୟ ଶ୍ଳୋକ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ଉଆସରେ ବଡ଼ବାବାଜି ଅବସ୍ଥାନ କରୁଥାନ୍ତି । ଏଇ ଖବର କୃଷ୍ଣଚନ୍ଦ୍ର ଜାଣି ଉତ୍କଣ୍ଠାରେ ବିହ୍ୱଳ ହୋଇ ପଡ଼ନ୍ତି ।

ରାଧାଗୋବିନ୍ଦ ମନ୍ଦିର ପ୍ରାଙ୍ଗଣରେ ବଡ଼ବାବାଜିଙ୍କର ଉଦଣ୍ଡ ପ୍ରେମ କୀର୍ତ୍ତନରେ ଶ୍ରଦ୍ଧାଳୁମାନେ ଆତ୍ମହରା ହୋଇ ପଡ଼ୁଥାନ୍ତି । ଇତ୍ୟବସରରେ କୃଷ୍ଣଚନ୍ଦ୍ର ଚରଣାଶ୍ରିତ ହେବାକୁ ଆଗ୍ରହ ପ୍ରକାଶ କରନ୍ତି ଏବଂ ଶ୍ରୀଲ ଗୁରୁଦେବ ପରୀକ୍ଷା ପୂର୍ବକ ମାତ୍ର ପାଞ୍ଚଜଣଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ । ବଡ଼କୋଠା ଜମିଦାର ବିଶିଷ୍ଟ ସଂଗୀତଜ୍ଞ ବୃନ୍ଦାବନ ହରିଚନ୍ଦନ, ବାରିମୂଳ ଖଣ୍ଡ ସାହିର ଶରତ ଘୋଷ ଛାଞ୍ଚୁଣିଆ ଠାକୁର ହାଟର ବୃନ୍ଦାବନ ଦାସ, ସଂଥପୁର ନିବାସୀ କୃଷ୍ଣଚନ୍ଦ୍ର ନାୟକ ଓ କେନ୍ଦ୍ରାପଡ଼ାର ବନମାଳି ଷଡ଼ଙ୍ଗୀ ଦୀକ୍ଷିତ ହୋଇଥିଲେ ।

ଦୀକ୍ଷା ଗ୍ରହଣ ପରେ କୃଷ୍ଣଚନ୍ଦ୍ରଙ୍କର ହାବଭାବରେ ପରିବର୍ତ୍ତନ ଦେଖାଯାଏ । ସହଜେ ସେ ଧର୍ମ ଚେତନାର ବଶବର୍ତ୍ତୀ ଥାଇ କାର୍ଯ୍ୟ କରୁଥିଲେ । ଏବେ ସଂସାର ପ୍ରତି ଉଦାସୀନ ହୋଇ ପଡ଼ିଲେ । କିନ୍ତୁ ଗୃହସ୍ଥ ଧର୍ମ ତ୍ୟାଗ କରି ନଥିଲେ । କୃଷ୍ଣଚନ୍ଦ୍ର ପ୍ରତି ପୂର୍ଣ୍ଣମୀ ଓ ସଂକ୍ରାନ୍ତିରେ ବଳଦେବଜୀଉଙ୍କ ମନ୍ଦିର ସଂକୀର୍ତ୍ତନ ସହ ଦର୍ଶନରେ ଯାଆନ୍ତି । ପତ୍ନୀ ମାଳତି ଦେବୀ ଘର ଖବର ଓ ପିଲାଙ୍କ ଖବର ବୁଝାସୁଝା କରନ୍ତି ।

୧୯୧୧ ମସିହା ମାଘ ମାସ ଦ୍ୱାଦଶୀ ତିଥିର ମାହେନ୍ଦ୍ର ବେଳାରେ ନାୟକ ଦମ୍ପତି ଯେଉଁ ସନ୍ତାନ ଲାଭ କଲେ, ସେ ପୁରୁଷୋତ୍ତମ । ପରବର୍ତ୍ତୀ ସମୟରେ ଏହି ନାମର ସାର୍ଥକତା ହାସଲ କରି ଶତାୟୁ ପୁରୁଷ ରୂପେ ଶହେ ବର୍ଷ ୮ ମାସରେ ପ୍ରାଣତ୍ୟାଗ କଲେ । କୃଷ୍ଣଚନ୍ଦ୍ରଙ୍କର ସନ୍ତାନମାନଙ୍କ ମଧ୍ୟରେ ସତ୍ୟ, ପୁରୁଷୋତ୍ତମ, ନରେନ୍ଦ୍ର, ଶ୍ରୀଧର ଓ ଗୌରାଙ୍ଗ – ଏହିପରି ଗୋଟିଏ ଭଉଣୀ ଓ ଚାରି ଭାଇ ହୋଇଥିଲେ । ପ୍ରତ୍ୟେକ ଥିଲେ ସ୍ୱଭାବ ସୁନ୍ଦର ଉତ୍ତମ ମଣିଷ ।

### ଶୈଶବର ସ୍ୱପ୍ନ ଓ ଶିକ୍ଷା

ପୁରୁଷୋତ୍ତମଙ୍କ ଶୈଶବ ଥିଲା ଶ୍ରଦ୍ଧା ଓ ଆଦରରେ । ଅଜାନୁ ଲମ୍ବିତ ବାହୁ ଓ ଦୀର୍ଘ ଚେହେରା ଅନ୍ୟମାନଙ୍କଠାରୁ ତାଙ୍କୁ ବାରି ହେଉଥିଲା । ପୁଅର ପାଠପଢ଼ା ସମୟ ହେଲା । ଜ୍ୟୋତିଷଙ୍କ ମତରେ ଏ ଜାତକ ଶହେ ପ୍ରାଣୀ କୁଟୁମ୍ବ ପୋଷିବ । ଦେଶ ବିଦେଶରେ ଖ୍ୟାତ ହେବ । ତେଣୁ ଜ୍ୟୋତିଷ ଡକାଇ ବ ୪।୪।୪ ଦିନରେ ବିଦ୍ୟାରମ୍ଭ ହେଲା । ସ୍କୁଲ ବୋଲି ଯାହାକୁ କୁହାଯାଉଛି ତାହା କୌଣସି ଏକ ମେଲା ଘରେ ଅନୁଷ୍ଠିତ ହେଉଥିବା ଚାଟଶାଳୀ । ହୋମଯଜ୍ଞ ହେଲା । ୧୦୮ ନଡ଼ିଆ ଭଂଗାଗଲା । ଚାଟକୁ ଉପବୀତ ଦାନ କରାଗଲା । ସେଠାକାର ଚାଟଶାଳୀର ଗଦାଧର ମହାନ୍ତିଙ୍କଠାରୁ ବର୍ଣ୍ଣମାଳା ବା ଧାଡ଼ି, ଅଦଡ଼, ମିଶାଣ, ଫେଡ଼ାଣ ଓ କଡ଼ାଗଣ୍ଡା ପଣକିଆ ସହିତ ପସନ୍ଦ ଚୂଡ଼ାମଣି ପାଠ ଶେଷ କରାଯାଇଥିଲା । ମଣିପୁରା ପ୍ରାଥମିକ ବିଦ୍ୟାଳୟରେ ଆର୍ତ୍ତବଲ୍ଲଭ ଚକ୍ରବର୍ତ୍ତୀ ଓ ମୋହନ ଚାଟାର୍ଜୀଙ୍କ ପାଖରେ ଚାଟଶାଳୀ ପାଠ,

ମଧୁ ବର୍ଣ୍ଣବୋଧ, ସାହିତ୍ୟ ଓ ଇଂରାଜୀ ଶିକ୍ଷା ଲାଭ କରି ସୁଛାତ୍ରର ପରିଚୟ ଦେଇଥିଲେ । ପ୍ରଖର ସ୍ମରଣ ଶକ୍ତି ଯୋଗୁଁ ସେ ସହଜରେ ବହୁକଥା ମନେରଖି ପାରୁଥିଲେ ।

ଏହାପରେ ଫକିରାବାଦ ମଧ୍ୟ ବିଦ୍ୟାଳୟରେ ନାମ ଲେଖାଗଲା । ଏହି ବିଦ୍ୟାଳୟର ପଣ୍ଡିତ ମାୟାଧର ପଣ୍ଡାଙ୍କ ସଂସ୍ପର୍ଶରେ ଆସନ୍ତି । ପାଠପଢ଼ା ସହ ମାୟାଧର ଗୁରୁଜୀ ଦେଶର ବର୍ତ୍ତମାନ ସ୍ଥିତାବସ୍ଥା ସମ୍ପର୍କରେ ପିଲାଙ୍କୁ ଧାରଣା ଦିଅନ୍ତି । ଗାନ୍ଧୀ ମହାତ୍ମାଙ୍କର ଜୀବନ ସଂଗ୍ରାମ ଓ ଭାରତକୁ ସ୍ୱାଧୀନ କରିବାର ସଂକଳ୍ପ ପୁରୁଷୋତ୍ତମଙ୍କୁ କହନ୍ତି । ବ୍ରିଟିଶ ସରକାର ଆମ ଦେଶର ଧନରତ୍ନ ବୋହି ନେଇ ଯାଇଛନ୍ତି ବିଲାତ । ଆମ ଲୋକଙ୍କ ଉପରେ ଅତ୍ୟାଚାର ଚଳାଇଛି କିପରି ତାହାର ଉଦାହରଣ ଦିଅନ୍ତି । ସେଇଠି ତାଙ୍କ ପ୍ରାଣରେ ଦେଶପ୍ରୀତି ସଂଚାରିତ ହୁଏ ଏବଂ ଦୃଢ ପ୍ରତିଜ୍ଞା କରନ୍ତି ମୁଁ ଗାନ୍ଧିଜୀଙ୍କ ନୀତିରେ ବିଦେଶୀଙ୍କୁ ତଡ଼ିବାକୁ ଲଢ଼େଇ କରିବି ।

### ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ପୁରୁଷୋତ୍ତମ

ମହାତ୍ମା ଗାନ୍ଧୀ କାରାମୁକ୍ତ ହେବା ପରେ ହରିଜନ ପଦଯାତ୍ରା କରି ଭାରତବର୍ଷରୁ ଅସ୍ପୃଶ୍ୟତା ଦୂର କରିବାକୁ ପ୍ରତିଜ୍ଞାବଦ୍ଧ ଥିଲେ । ଓଡ଼ିଶା ଆଦିବାସୀ ହରିଜନମାନଙ୍କର ପ୍ରମୁଖ କ୍ଷେତ୍ର । ସାମନ୍ତବାଦ ତଳେ ଏପରି ଏକ ଘୃଣ୍ୟ ବ୍ୟବସ୍ଥାର ଉଚ୍ଛେଦ ନହେଲେ ଭାରତରେ ସ୍ୱାଧୀନତା ପ୍ରାପ୍ତି ଅସମ୍ଭବ । ମଣିଷ ଏକଜୁଟ ହେବା ପାଇଁ ସହୃଦୟତାର ଆବଶ୍ୟକ । ଏହି ମହାନ ଉଦ୍ଦେଶ୍ୟରେ ଓଡ଼ିଶାରେ ଆରମ୍ଭ ହେଲା ପଦଯାତ୍ରା ।

୧୯୩୪ ମସିହା ମେ ୯ ତାରିଖ ଭୋର ଘ୫.୩୦ ମିନିଟ୍‌ରେ ପୁରୀ ବଡ଼ଦାଣ୍ଡରୁ ଯାତ୍ରାରମ୍ଭ କରି ପାଞ୍ଚ ମାଇଲ ଆସି ହରିକୃଷ୍ଣପୁରଠାରେ ପହଞ୍ଚି ସଭା କରିଥିଲେ । ତା'ପରେ ୧୬ ତାରିଖରେ କଟକରେ ପହଞ୍ଚି ଭିକାରି ପଟ୍ଟନାୟକଙ୍କ ଅଭଙ୍ଗା କଣ୍ଢେଇ କାରଖାନା ପରିଦର୍ଶନ କରିଥିଲେ । ପାଟଣାଠାରେ କଂଗ୍ରେସ ଅଧିବେଶନ ଥିବାରୁ ଟ୍ରେନ ଯୋଗେ ଗାନ୍ଧିଜୀ ବିହାର ଅଭିମୁଖେ ଯାତ୍ରା କରିଥିଲେ ।

ପ୍ରତ୍ୟାବର୍ତ୍ତନ କରି ୨୧ ତାରିଖରେ ବଇରୀ ଷ୍ଟେସନରୁ ଓହ୍ଲାଇ ଛତିଆ ଦେଇ ଚମ୍ପାପୁର ନିକଟସ୍ଥ ଗୋବିନ୍ଦ ମିଶ୍ରଙ୍କ ଆଶ୍ରମରେ ରାତ୍ରିଯାପନ ପରେ ଆସିଲେ ଭେଡ଼ା, ୨୩ ତାରିଖରେ ମାଳ, ଲଗେନପୁର, ଗୋପୀନାଥପୁର, ସତ୍ୟଭାମାପୁର ମଧୁବାବୁଙ୍କ ଜନ୍ମସ୍ଥାନରେ ରାତ୍ରି ରହଣି ହେଲା । ୨୪ ତାରିଖ ଲକ୍ଷ୍ମୀ ନାରାୟଣପୁର, ବହୁକୁଦ, ଶିଶୁଆ, ୨୫ ତାରିଖ ପାଟପୁର ଓ ନିଶ୍ଚିନ୍ତକୋଇଲି ନିକଟସ୍ଥ ପଣସ ପଡ଼ିଆରେ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା ।

୨୬ ତାରିଖରେ କାକଡିଆ ଅସୁରେଶ୍ୱରରୁ କେନ୍ଦ୍ରାପଡ଼ାର ଅଭ୍ୟର୍ଥନାକାରୀ ଦଳ ସ୍ୱରାଜ ସଂଗୀତ ଗାଇ ରାମଧୁନ ଓ ଜୟଧ୍ୱନି ସହକାରେ ପାଛୋଟି ଆଣିଲେ । ଗାନ୍ଧିଜୀଙ୍କ ଗହଣରେ ବହୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ଇଂରେଜ ମହିଳା ମିସ୍ ସ୍ଲେଭ ଓରଫ ମୀରାବେନ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମଙ୍ଗଳା ସେନଗୁପ୍ତ, କୁମାରୀ ଗୋଦାବରୀ ଦାସ, କୁମାରୀ ଅନ୍ନପୂର୍ଣ୍ଣା ଚୌଧୁରୀ, ଶୋଭା ପଣ୍ଡା, ସୁଶୀଳା ସାମଲ, ମାଣିକ ଦେବୀ, ତୁଳସୀ ଦେବୀ, ବିନୋଦ କାନୁନଗୋ, ସୁରେନ୍ଦ୍ର ପଟ୍ଟନାୟକ, ମନମୋହନ ଚୌଧୁରୀ ଓ ରାଜକୃଷ୍ଣ ବୋଷ ପ୍ରମୁଖ ପଦଯାତ୍ରା ଦଳରେ ଅନ୍ତର୍ଭୁକ୍ତ ଥିଲେ । ଏମାନଙ୍କୁ ଦେଖି ଅଭ୍ୟର୍ଥନାକାରୀ ତଥା କେନ୍ଦ୍ରାପଡ଼ାର ଜନସାଧାରଣଙ୍କ ଭିତରେ ଖେଳିଯାଇଥିଲା ବୈଦ୍ୟୁତିକ ଝଲକ । ଉତ୍ସାହ ଓ ଉଦ୍ଦୀପନା ପୁରୁଷୋତ୍ତମଙ୍କୁ ଅଭିଭୂତ କରିଥିଲା । ରାମଧୁନ ଓ ସଂକୀର୍ତ୍ତନରେ ଗ୍ରାମ ନରନାରୀ ଭକ୍ତ–ଭଗବାନ ଭଳି ଅଭିନ୍ନ ହୃଦୟ ହୋଇଯାଇଥିଲେ ।

କେନ୍ଦ୍ରାପଡ଼ାରେ ଐତିହାସିକ ବୈଠକରେ ବ୍ୟବହାର ନିମନ୍ତେ ଚକ୍ରଧର ସେନାପତିଙ୍କ ଘରୁ ଟେବୁଲ ଅଣାଯାଇଥିଲା, ଯାହାକି ଅଦ୍ୟାବଧି ସୁରେଶଚନ୍ଦ୍ର ସେନାପତି ବା ଗାନ୍ଧୀ ବାବୁଙ୍କଘରେ ସାଇତା ହୋଇରହିଛି । ସୁରେଶ ଚନ୍ଦ୍ର ସେନାପତି ସେହିବର୍ଷ ଜନ୍ମ ହେବାରୁ ତାଙ୍କ ନାମ ରହିଲା ଗାନ୍ଧୀବାବୁ ।

ଗାନ୍ଧିଜୀଙ୍କ ଅଭ୍ୟର୍ଥନା ଉଦ୍ଦେଶ୍ୟରେ ଗଠିତ ମହିଳା ସମିତି ତରଫରୁ ଏକ ମାନପତ୍ର ସହିତ ୪୫୦ଟଙ୍କା ଓ ତେର ଅଣା ଦୁଇ ପଇସା ସଂଗ୍ରାମ ପାଣ୍ଠିକୁ ପ୍ରଦାନ କରାଯାଇଥିଲା । କେନ୍ଦ୍ରାପଡ଼ାର ମହିଳା ବଡ଼ ସଚେତନ ବୋଲି ଗାନ୍ଧିଜୀ ପ୍ରଶଂସା କରିଥିଲେ ।

ଏହି ସମୟରେ ଅନନ୍ତ ଚାଟାର୍ଜୀ ଓ ଅମରନାଥ ଚାଟାର୍ଜୀ ତାଙ୍କ ବାଡ଼ିରୁ ବଡ଼ ବଡ଼ ଅମୃତଭଣ୍ଡା ଆଣିଦେଇଥିଲେ । ଦୁଇଜଣ ବାଳକଙ୍କର ଏ ଉପହାର ମଧ୍ୟ ସାଧୁବାଦ ଆଣିଦେଇଥିଲା । କୋଡ଼ିଏଟି ଅମୃତଭଣ୍ଡା ନିଲାମ କରାଗଲା । ଯାହାକୁ ହୀରାଲାଲ ୪୦୦ ଟଙ୍କା ଦେଇ ନେଇଥିଲେ ଏବଂ ଉକ୍ତ ଟଙ୍କା ସ୍ୱାଧୀନତା ସଂଗ୍ରାମ ପାଣ୍ଠିକୁ ଯାଇଥିଲା ।

ଏଭଳି ଏକ ଐତିହାସିକ ସନ୍ଧିକ୍ଷଣରେ ବ୍ୟକ୍ତିଗତ ସ୍ୱାର୍ଥକୁ ପଛକୁ ପକାଇ ଆଗେଇ ଆସିଥିଲେ ଯଦୁମଣି ମଙ୍ଗରାଜଙ୍କ ସହିତ ରଘୁନାଥ ମହାନ୍ତି, ସଚ୍ଚିଦାନନ୍ଦ ମହାନ୍ତି (ଗରାପୁର), ସରସ୍ୱତୀ

ଦେବୀ, ଗୋପାଳ ଦାସ, ରାମକୃଷ୍ଣ ଦାସ, ବିଜ୍ଞାନ ଚାଟାର୍ଜୀ ପ୍ରମୁଖ ନେତୃବୃନ୍ଦ ଓ ଯୁବଗୋଷ୍ଠୀ ଗାନ୍ଧିଜୀଙ୍କ ଆହ୍ୱାନରେ ଗଲା ମାତ୍ରେ ଗାଳି, ଗୁଳି, କରାବାସ ଅଛି, ଏକଥା ଜାଣି ମଧ୍ୟ ବିପ୍ଳବର ବହ୍ନିକୁ ଏମାନେ ଝାସ ଦେଇଥିଲେ ।

ଆଳିର ବିପ୍ଳବୀ ଆନନ୍ଦ ଚନ୍ଦ୍ର ଜେନା, ସହଦେବ ଦାସ, ଦିବାକର ଶର୍ମା, ପଟାମୁଣ୍ଡାଇର କରୁଣାକର ନାୟକ ଓ ରାଜନଗରରୁ କେତେକ ଯୁବକ ଆସି ସଭା ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ । ପୁରୁଷୋତ୍ତମ ନାୟକଙ୍କ ବ୍ୟକ୍ତିତ୍ୱର ବିକାଶ ଏହି ଐତିହାସିକ ଘଟଣାରୁ ଉତ୍ତରଣ ଲାଭ କରିଛି । ସ୍ୱର୍ଣମଣିର ସଂସ୍ପର୍ଶରେ ଲୌହ ସୁବର୍ଣ୍ଣରେ ପରିଣତ ହେବା ଭଳି ଗାନ୍ଧିଜୀଙ୍କ ପଦଯାତ୍ରାରୁ ଏକ ସାମାଜିକ, ସାଂସ୍କୃତିକ ଓ ରାଜନୀତିକ ଆନ୍ଦୋଳନର ନବ ମୂଲ୍ୟାୟନ ଘଟିଥିଲା ।

କେନ୍ଦ୍ରାପଡ଼ାର ବିଶେଷତ୍ୱ ହେଲା ହିନ୍ଦୁ ଭାଇଭଉଣୀଙ୍କର ହରିବୋଲ ହୁଳହୁଳି ସହିତ ଡକ୍ଟର ଓ୍ୱାହିଦୁଲ୍ଲାଙ୍କ ନେତୃତ୍ୱରେ ମୁସଲମାନଙ୍କର ଆଲ୍ଲା ହୋ ଆକବର ଗାନର ଐକ୍ୟ ତାନରେ ସମନ୍ୱୟ ସମଭାଗିତା ଓ ସଂହତିର ସ୍ୱର ମିଳିଥିଲା । ଯୁବକ ପୁରୁଷୋତ୍ତମ ସଂଗଠନ ଓ ଅଭ୍ୟର୍ଥନା ଦାୟିତ୍ୱରେ ଥିଲେ । ପଣସ ପଡ଼ିଆରୁ ଗାନ୍ଧିଜୀଙ୍କ ପାଖେ ପାଖେ ଚାଲିଥିଲେ । ମନମୋହନ ଚୌଧୁରୀ ଫଟୋ ଉଠାଉଥିଲେ ଏବଂ ଗାନ୍ଧିଜୀଙ୍କ ହିନ୍ଦୀ ଭାଷଣର ଅନୁବାଦ କରୁଥିଲେ ରାଜକୃଷ୍ଣ ବୋଷ ।

୨୭ ତାରିଖରେ ବାଲିଆ, ଭାଗବତପୁର, ୨୮ ତାରିଖରେ ସୋମବାର କେନ୍ଦ୍ରାପଡ଼ା ତିନିମୁହାଣିରେ ବିରାଟ ସଭା କରି ଗରାପୁର ଡାକବଙ୍ଗଳାରେ ରହିଥିଲେ । କୌଣସି ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେତୁ ବଙ୍ଗଳାର ବିଶିଷ୍ଟ କଂଗ୍ରେସ ନେତା ତଥା ଚିକିତ୍ସକ ବିଧାନ ଚନ୍ଦ୍ର ରାୟ ଗାନ୍ଧିଜୀଙ୍କ ସହିତ ଆଳାପ ଆଲୋଚନା ପୂର୍ବକ ରାତ୍ରି ଅତିବାହିତ କରିଥିଲେ । ୨୮ ଓ ୨୯ ତାରିଖ ଦୁଇଦିନ ଥିଲା ଯଥାକ୍ରମେ ମୌନ ଦିବସ ଓ ହରିଜନ ଦିବସ । ମହାଡମ୍ବରରେ ପାଳନ କରାଯାଇଥିଲା । ଏହି ସମୟରେ ଶ୍ରୀଧର ସାହୁ, ଯଦୁମଣି ମଙ୍ଗରାଜ, ନଟବର ଜଗଦେବ, ଦିବ୍ୟସିଂହ ଦାସ, ନାରାୟଣ ବୀରବର ସାମନ୍ତ ପ୍ରମୁଖ ଯୋଗଦାନ କରିଥିଲେ । ଗାଁ ଗହଳିରୁ ହଜାର ହଜାର ପୁରୁଷ ନାରୀ ଛୋଟ ପିଲା ଓ ବୁଢ଼ାବୁଢ଼ୀ ମଧ୍ୟ ସଭାରେ ଯୋଗଦାନ କରିଥିଲେ । ଚୁଡ଼ା ଚାଉଳ ଧରି ଲୋକେ ଗାନ୍ଧିଜୀଙ୍କୁ ଦେଖିବା ପାଇଁ ଦୁଇଦିନ ପୂର୍ବରୁ ଆସି ପହଞ୍ଚିଥିଲେ ।

ଯୁବକ ପୁରୁଷୋତ୍ତମ ନାୟକଙ୍କ ବଳିଷ୍ଠ ସୌମ୍ୟ ରୂପ ଓ ଉଚ୍ଚା ଚେହେରା ଏକ ଭିନ୍ନ ବିଚାରର ବୋଧ ସୃଷ୍ଟି କରିଥିଲା । ସେ ଥିଲେ କର୍ମତତ୍ପର, ତାଙ୍କର ସଂଗଠନ ଓ ଲୋକ ସମ୍ପର୍କ ଗାନ୍ଧିଜୀଙ୍କ ପଦଯାତ୍ରାକୁ ମହାର୍ଘ କରିଥିଲା ।

ତାଙ୍କର ସ୍ମୃତି ପଖଳାରୁ ଜଣାଯାଏ – ମହାତ୍ମା ଗାନ୍ଧୀ ରହଣିକାଳର ଖର୍ଚ୍ଚ ପାଇଁ ହୀରାଲାଲ ମାରଓ୍ୱାଡ଼ି ବିଶିଷ୍ଟ ବ୍ୟବସାୟୀଙ୍କୁ କୁହାଯାଇଥିଲା । ସେ ଡରି ଡରି ନାସ୍ତିବାଣୀ ଶୁଣାଇଥିଲେ । ଲୁଚାଇ ଚାଉଳ ପରିବା ଦୁଇ ଶଗଡ଼ ପଠାଇଥିଲେ । ଗାନ୍ଧିଜୀଙ୍କୁ ତାଳସଜ ଖୁଆଇବା ପାଇଁ ସାଆନ୍ତ ସାଇର ଜଣେ ଚମାର ଦେଇଥିଲେ, ଯାହା ଗାନ୍ଧିଜୀଙ୍କୁ ଅଶେଷ ଶାନ୍ତି ଓ ଆନନ୍ଦ ପ୍ରଦାନ କରିଥିଲା । ପୁରୁଷୋତ୍ତମ ବାବୁଙ୍କର ଏହି ଆନ୍ତରିକତାକୁ ଗାନ୍ଧିଜୀ ସାଧୁବାଦ ଜଣାଇଥିଲେ ।

ଗରାପୁରରୁ ଗାନ୍ଧିଜୀ ଓ ସହଯାତ୍ରୀଗଣ ବାରିମୂଳ ନିକିରାଇଠାରେ ସଭା କରି ଇନ୍ଦୁପୁର ଗଲେ । ନଟବର ଜଗଦେବଙ୍କ ଘରେ ୨୯ ତାରିଖରେ ସଭା ଓ ହରିଜନ ପଂକ୍ତିଭୋଜନ କରାଇଥିଲେ । ପୁରୁଷୋତ୍ତମ ନାୟକ, ଅନାଦିଚରଣ ରାଉତ ପ୍ରମୁଖ ଏହି ପଂକ୍ତି ଭୋଜନ ବ୍ୟବସ୍ଥା ସୁଚାରୁରୂପେ ପରିଚାଳନା କରିଥିଲେ । ପରଦିନ ଅନ୍ୟାସପୁର ଦେଇ ଯାଜପୁର ଯାତ୍ରା କରିଥିଲେ । ଗାନ୍ଧିଜୀଙ୍କର ଏହି ଐତିହାସିକ ପଦଯାତ୍ରାର ଉଦ୍ଦେଶ୍ୟକୁ ସଫଳ କରିବା ନିମନ୍ତେ ବହୁ ଯୁବକର୍ମୀ ଶପଥବଦ୍ଧ ହୋଇଥିଲେ । ମୁକ୍ତି ପାଗଳ ପୁରୁଷୋତ୍ତମ ନାୟକଙ୍କର ଦଶଦିନ ଗାନ୍ଧିଜୀଙ୍କ ସଂସ୍ପର୍ଶରେ ଆସି ସଂସାର ଘର ପ୍ରତି ଅତି ଉଦାସୀନ ହୋଇପଡ଼ିଲେ । ବହୁ ରଚନାତ୍ମକ କାର୍ଯ୍ୟରେ ସାମିଲ ହେଲେ ।

**ସଂସାର ବନ୍ଧନ**

ପୁଅର ହାବଭାବ ଦେଖି କୃଷ୍ଣଚନ୍ଦ୍ର ତାଙ୍କୁ ଘରସଂସାରରେ ଛନ୍ଦି ଦେଲେ । ଯାହାର ପ୍ରାଣ ଦେଶ ଯଶ ପାଇଁ ସମର୍ପିତ ସେ ବା କିପରି ବାନ୍ଧି ହୋଇ ରହନ୍ତା । ଘର ସହିତ ସମାଜ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ । ପୁରୁଷୋତ୍ତମ ହେଲେ ଆଗଧାଡ଼ିର କଂଗ୍ରେସ କର୍ମୀ । ସାଇକେଲ ଧରିଲେ କଟକ ଯାଇ କାମ କରି ଫେରି ଆସିପାରନ୍ତି । ପରିବାରର ଧାନ, ମୁଗ, ବିରି ବା ପନିପରିବାର ଅଭାବ ନ ଥାଏ । ଭାଇ ଗୌରାଙ୍ଗ ତାଙ୍କର ସବୁ ବୁଝାଶୁଝା କରନ୍ତି । କୃଷ୍ଣଚନ୍ଦ୍ର ବି ଦେଖିଲେ – ପୁଅଙ୍କୁ ଚାରିଆଡ଼ୁ ଡାକରା ଆସୁଛି । ବଡ଼ ବଡ଼ ଲୋକ ଭଲମନ୍ଦରେ ଲୋଡ଼ୁଛନ୍ତି । ଏହା ମଧ୍ୟ ମହତ୍ କାମ । ସେତେବେଳକୁ ଗାନ୍ଧିଜୀ ଆଉ ମୋହନ ଦାସ କରମଚାନ୍ଦ ଗାନ୍ଧୀ ହୋଇ ରହି ନ ଥିଲେ । ମହାତ୍ମା ଗାନ୍ଧୀରେ ରୂପାନ୍ତରିତ ଏକ ମହାନ ସନ୍ଥ । ସ୍ୱାଧୀନତାର ଶଙ୍ଖ ବାଦକ ଭଗୀରଥ । ତାଙ୍କର ବୈଷ୍ଣବ ଜନତୋ ତେନେ କହି ହେ .. ଭଜନଟି

ଅତି ଲୋକପ୍ରିୟ ହୋଇସାରିଥିଲା । କୃଷ୍ଣଚନ୍ଦ୍ର ବୈଷ୍ଣବ ଥିବାରୁ ଦେଶପ୍ରୀତିର ଅଭାବ ତାଙ୍କ ପ୍ରାଣରୁ ଦୂର ହୋଇଗଲା । ବୋହୂକୁ ପାର୍ବତୀ ବୁଝାଇ ଦିଅନ୍ତି –ଦେଶ ବଂଚିଲେ ସମସ୍ତେ ବଂଚିବା । ବ୍ରିଟିଶ ରାଜା ସଂଗେ ପୁଅ ତ ଲଢ଼ୁଛି । ମହାତ୍ମା ଗାନ୍ଧୀଙ୍କ ଆଦେଶରୁ ଲଢ଼ୁ । କିନ୍ତୁ ଦୁର୍ଭାଗ୍ୟର କଥା ପୁରୁଷୋତ୍ତମ ଜେଲ୍‌ରେ ଥିବା ବେଳେ ତାଙ୍କ ଅନ୍ତଃସତ୍ତ୍ୱା ପତ୍ନୀ ଚିକିତ୍ସା ଅବହେଳାରେ ପ୍ରାଣ ହରାଇଥିଲେ ।

### ବ୍ୟକ୍ତିଗତ ସତ୍ୟାଗ୍ରହ ଓ କାରାବରଣ

୧୯୪୦ ବେଳକୁ ସମଗ୍ର ଦେଶରେ ଆରମ୍ଭ ହୋଇଗଲା ବ୍ୟକ୍ତିଗତ ସତ୍ୟାଗ୍ରହ । ଏହାର ଏକ ତାତ୍ତ୍ୱିକ ଅଭିବ୍ୟକ୍ତି ହେଲା – ପ୍ରତ୍ୟେକ ବ୍ୟକ୍ତି ନିଜକୁ ଏହି ମହା ସଂଗ୍ରାମରେ ସାମିଲ କରିନେଉ । ସଂଗ୍ରାମ ବ୍ୟାପକ ହେବ । ଇଂରେଜ ସରକାରଙ୍କ ହୃତ୍‌କମ୍ପନ ଜାତ ହେବା ମାତ୍ରେ କେତେଜଣ ନେତୃତ୍ୱ ନେଇ ଆନ୍ଦୋଳନ ଚଳାଇଛନ୍ତି । ଏ ପ୍ରକାର ପ୍ରଚାର ଲୋକଙ୍କୁ ବିଭ୍ରାନ୍ତ କରି ପାରିବ ନାହିଁ । ମହାତ୍ମା ଗାନ୍ଧୀଙ୍କ ଆନ୍ଦୋଳନ ବିଶ୍ୱରେ ସର୍ବପେକ୍ଷା ଥିଲା ସଂଗଠିତ, ଶୃଙ୍ଖଳିତ ଓ ଯୋଜନାବଦ୍ଧ । ଏଣୁ ଅସହଯୋଗ, ଲବଣ ସତ୍ୟାଗ୍ରହ, ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, କୁଟି ଖାଅ – କାଟି ପିନ୍ଧ ପର୍ଯ୍ୟାୟକ୍ରମେ ଚାଲିଥିଲା । ଆସିଲା ବ୍ୟକ୍ତିଗତ ଭାବେ ସତ୍ୟାଗ୍ରହର ଧାରା । ସରକାରଙ୍କର ନିଷେଧାଦେଶକୁ ପଣ୍ଡ କରିବାର ଏହା ଥିଲା ଅଭିନବ ଚିନ୍ତନ ।

ଓଡ଼ିଶାରେ ପୁରୁଷୋତ୍ତମ ନାୟକ ବ୍ୟକ୍ତିଗତ ସତ୍ୟାଗ୍ରହରେ ପ୍ରଥମ ଓ ପଦପ୍ରଦର୍ଶକ । ସେ କେନ୍ଦ୍ରାପଡ଼ାରେ ସାହସର ସହିତ ପ୍ରଦର୍ଶନ କଲାପରେ ଅନ୍ୟମାନେ ରାମକୃଷ୍ଣ ଦାସ, ଗୋପାଳ ଦାସ, ବ୍ରହ୍ମାନନ୍ଦ ରାଉତ, ସଚିଦାନନ୍ଦ ମହାନ୍ତି, ସରସ୍ୱତୀ ଦେଇ ପ୍ରମୁଖ ସତ୍ୟାଗ୍ରହରେ ବିପୁଳ ସଂଖ୍ୟାରେ ଅଂଶଗ୍ରହଣ କରିଥିଲେ । ତିନିଥର ବ୍ୟକ୍ତିଗତ ସତ୍ୟାଗ୍ରହ କରି ମୋଟ ୧୪ ମାସ ଜେଲ୍ ଯାଇଥିଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହଠାରୁ ଆରମ୍ଭ କରି ସମଗ୍ର ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ଦାୟିତ୍ୱ ସେ ତୁଲାଇପାରୁଥିଲେ । ସେ କହନ୍ତି–

ମୁଁ ପ୍ରଥମେ ନହଙ୍ଗ ଠାକୁରାଣୀ ପଡ଼ିଆରେ ସତ୍ୟାଗ୍ରହ କରିଥିଲି । ସେଠାରୁ ଗିରଫ ହୋଇ ତିନିମାସ ଜେଲ୍ ଭୋଗିବାକୁ ପଡ଼ିଥିଲା ଏବଂ ଶହେଟଙ୍କା ଜୋରିମାନା ଦେବାର ଆଦେଶ ହୋଇଥିଲା । ଯେଉଁମାନଙ୍କୁ ମହାତ୍ମା ଗାନ୍ଧୀ ଅନୁମୋଦନ କରିଥିଲେ, ଯେଉଁମାନେ ସତ୍ୟାଗ୍ରହୀ ଭାବେ କାରାବରଣ କରିଥିବେ, ଜେଲ୍‌ରୁ ମୁକ୍ତ ହେବା ମାତ୍ରେ ସେହି ସ୍ଥାନରେ ପୁନଶ୍ଚ ସତ୍ୟାଗ୍ରହ କରିବେ । ମୁକ୍ତ ହେବା ମାତ୍ରେ ପୁରୁଷୋତ୍ତମ କଟକ କଲେକ୍ଟରଙ୍କୁ ନୋଟିସ କରି ଆସି ନିଜ ଗ୍ରାମ ସଞ୍ଚପୁର ମହାଦେବଙ୍କ ମନ୍ଦିର ଆଗରେ ସତ୍ୟାଗ୍ରହ କରିଥିଲେ । ସେଠାରୁ ଗିରଫ ହୋଇ କୋର୍ଟ ଫରୱାର୍ଡ ହେଲେ । କେସ୍‌ରେ ବିଚାର କରି ୪ ମାସ ଜେଲ ଦଣ୍ଡ ଭୋଗିଲେ କେନ୍ଦ୍ରାପଡ଼ା ଏବଂ ତା'ପରେ କଟକରେ । ପୋଲିସ ଦୃଷ୍ଟିରେ ସେ ଏ ଥିଲେ ସଇତାନ ଓ ପ୍ରଭାବଶାଳୀ । ମଟରଗାଡ଼ି ନ ଥିବାରୁ ତାଙ୍କୁ ଚଲାଇ ଚଲାଇ କଟକ ନେଇଥିଲେ । ଫେରିଲା ବେଳେ କଟକ କଲେକ୍ଟରଙ୍କୁ ନୋଟିସ କରି ଆସିଲେ ଏବଂ କୋଶିଆପାଳ ଗ୍ରାମ ନୂଆହାଟଠାରେ ସତ୍ୟାଗ୍ରହ କରିବି ବୋଲି ଅବଗତ କରାଇଥିଲେ । ସତ୍ୟାଗ୍ରହରେ ବସିବା ପରେ ପୋଲିସ ଗିରଫ କରିନେଲେ ଏବଂ ବିଚାରପତି ୯ ମାସ ଜେଲ ଦେଲେ । ଗାନ୍ଧିଜୀଙ୍କ ଆନ୍ଦୋଳନ ତଥା ଆଦେଶ ମୁତାବକ ୬ ମାସ ପରେ ବ୍ୟକ୍ତିଗତ ସତ୍ୟାଗ୍ରହ ସ୍ଥଗିତ ରହିଲା ଏବଂ ବନ୍ଦୀ କାରାମୁକ୍ତ ହେଲେ ପୁରୁଷୋତ୍ତମ ମଧ୍ୟ ମୁକୁଳି ଆସିଲେ ।

### ସତ୍ୟାଗ୍ରହୀଙ୍କ ପ୍ରତି ଗାନ୍ଧିଜୀଙ୍କ ଆଦେଶ

ସ୍ୱାଧୀନତା ସଂଗ୍ରାମର ପ୍ରତ୍ୟେକ ରଥୀ ଓ ସାରଥୀ ସାଧାରଣ ଶୃଙ୍ଖଳାକୁ ମାନି ଚଳିବା ଏବଂ ଜାତୀୟ ଗୁଣର ବିକାଶ ଘଟାଇବା ଗାନ୍ଧିଜୀଙ୍କର ଉଦ୍ଦେଶ୍ୟ ଥିଲା । କାରଣ ଏହା ଆଧାତ୍ମିକ ଲଢ଼େଇ । ଏଠାରେ ଗୋପବନ୍ଧୁଙ୍କର କେତୋଟି ପଦ ଶିକ୍ଷଣୀୟ–

ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେ ପରାଣ ଆତଙ୍କେ ।
ଜାଣିଛି ଲାଗିଛି ଏ ଶାନ୍ତି ସମର
ନାହିଁ ଏଥି ତୋପ ହାତ ହତିଆର
ବଳ ବା ବିଭବ ନାହିଁ ଏଥି ଲୋଡ଼ା
ନାହିଁ ଲୋଡ଼ା ଯାନ ରଥ ହାତ ଘୋଡ଼ା
ଆଧାତ୍ମିକ ବଳେ ଲାଗିଛି ଲଢ଼ାଇ
ଭାଙ୍ଗିବାକୁ ପଶୁ ବଳର ବଡ଼ାଇ ।
ଅହିଂସା ବଳରେ ଯେହୁ ବଳୀୟାନ
ଏ ରଣ ପ୍ରାଙ୍ଗଣେ ତାର ଏକା ସ୍ଥାନ । (ବନ୍ଦୀର ଆତ୍ମକଥା)

ଗାନ୍ଧୀ ନୀତିର ଏହା ହିଁ ଥିଲା ପରମ ଆଦର୍ଶ ଓ ମାନବିକ ଦର୍ଶନ । ତେଣୁ କୌଣସି ସଂଗ୍ରାମୀ ନୀତିଭ୍ରଷ୍ଟ ହେଲେ ସେ ସତ୍ୟାଗ୍ରହୀ ହୋଇ ନ ପାରେ । ଏହି ପରିପ୍ରେକ୍ଷୀରେ ତାଙ୍କର ଆଦର୍ଶଗୁଡ଼ିକ ଲିପିବଦ୍ଧ ହୋଇଥିଲା । ଯେଉଁମାନେ ବ୍ୟକ୍ତିଗତ ସତ୍ୟାଗ୍ରହ କରିବେ, ସେମାନେ ଜେଲରେ ଜେଲ କର୍ମଚାରୀଙ୍କୁ ମାନି ଚଳିବେ । ଜେଲ୍ ପରିଚାଳକ ଯେଉଁ କାମ ଦେବେ କରିବାକୁ ତାକୁ ସୁଚାରୁ ପରିଚାଳନା କରିପାରିବେ । ଅମାନ୍ୟ କଲେ ସତ୍ୟାଗ୍ରହୀ ଚରିତ୍ରର ମୌଳିକ ତଥା ନୈତିକ ପ୍ରଭାବ ପଡ଼ିବ ନାହିଁ । ଯେଉଁ ଖାଦ୍ୟ ମିଳିବ (ଜେଲ୍‌ରୁ)

ତାହା ଆନନ୍ଦରେ ଗ୍ରହଣ କରିବେ । ଜେଲ୍‌ରେ ଥିବା ବେଳେ ଖଦି ଓ ବେଢ଼ଣ ପରିଧାନ କରିବେ ।

### କୁଟି ଖାଅ – କାଟି ପିନ୍ଧ – ଖଦି ଆନ୍ଦୋଳନରେ ସାମିଲ

ପୂର୍ବରୁ ଉଲ୍ଲେଖ ଅଛି ଯେ ଇନ୍ଦୁପୁରରେ ଗାନ୍ଧିଜୀ ଭକ୍ତି ବିନୋଦ ମଠ ପଡ଼ିଆରେ ଭାଷଣ ଦେଇ ଅପରାହ୍ନରେ ଇନ୍ଦୁପୁରଠାରେ ବ୍ରାହ୍ମଣୀ ନଦୀ ପାର ହୋଇ କାଇପଡା କଳାମାଟିଆ ଦେଇ ଅନ୍ୟାସପୁରରେ ରହଣି କଲେ । ପୁରୁଷୋତ୍ତମ ବାବୁ ସେହି ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ସହିତ ଥିଲେ । ମହାତ୍ମା ଗାନ୍ଧୀକି ଜୟ, ଭାରତ ମାତା କି ଜୟ ଧ୍ୱନିକୁ ମହାମନ୍ତ୍ର କରିନେଲେ । ତାଙ୍କ ଭାଷାରେ 'ମହାତ୍ମା ଗାନ୍ଧୀଙ୍କ ବାଣୀ ଶୁଣି ସେହି ଦିନଠାରୁ ଖଦଡ଼ ପିନ୍ଧିଲି, କପା ଚାଷ କଲି, ସୂତା କଟା ଶିଖିଲି ଓ ମାଦକ ତ୍ୟାଗ କଲି । ବରୀରେ ସେ ଯାଇ ତିନିଥର ଛଅ ମାସ ରହି ସୂତାକଟା, ତୂଳା ଭିଣା ଇତ୍ୟାଦି କାର୍ଯ୍ୟ ଶିଖିଥିଲି । ତା' ସହ ତନ୍ତ ଚାଲିବା ଓ ମହୁଚାଷ ମଧ୍ୟ ଶିକ୍ଷା କରିଥିଲି ।

ଯାହା ପୁରୁଷୋତ୍ତମ ଶିକ୍ଷା କରିଥିଲେ ତାହାକୁ ଅକ୍ଷରେ ଅକ୍ଷରେ କାମରେ ଲଗାଇଥିଲେ । କର୍ମ ହିଁ ଧର୍ମ । କର୍ମଯୋଗୀ ହୋଇ ନିଜେ କଲେ ନାହିଁ କେବଳ ଅଧିକନ୍ତୁ ଏହି ଆନ୍ଦୋଳନକୁ ବ୍ୟାପକ କରିବାରେ ଲାଗିଲେ । ନିଜେ କେବଳ କରିଯିବା ଗୋଟିଏ ସୀମିତ ପରିବେଶର କଥା ମାତ୍ର । ଏହାର ବିସ୍ତାର ହେବା ଦ୍ୱାରା ସମାଜର ବହୁ ଲୋକେ ସାମିଲ ହେବା ସହିତ ସ୍ୱାବଲମ୍ବୀ ହୋଇପାରନ୍ତି । ଆର୍ଥିକ ଦାସତ୍ୱ ପ୍ରଥମେ ବିବେକକୁ ଛୋଟ ଓ ସଂକୁଚିତ କରିପକାଏ । ଏଣୁ ମହାତ୍ମାଙ୍କର ଲକ୍ଷ୍ୟ ଥିଲା ଗରିବ ଲୋକେ ଦି'ପଇସା ପାଇବା ଭଳି କୁଟୀର ଶିଳ୍ପ ପ୍ରତିଷ୍ଠା ଆବଶ୍ୟକ । ସେହି ପଥର ଆଦର୍ଶ ପଥିକ ହେଲେ ପୁରୁଷୋତ୍ତମ ।

ଆଖପାଖରେ ଦଶଗୋଟି ସୂତାକଟା କେନ୍ଦ୍ର ଖୋଲିଥିଲେ । କୋଶିଆପାଳ, ଘନଶ୍ୟାମପୁର, ବାରିମୂଳ, ସଂଥପୁର, କୁରୁଙ୍ଗୋ, ଶଙ୍କରପୁର, ଛୋଟୀ, ଜହ୍ନିମୂଳ, ଗଇଦୁଆ ଓ ଉଚ୍ଛରପଡ଼ାରେ ସୂତାକଟା କେନ୍ଦ୍ର ଖୋଲି ସେଗୁଡ଼ିକର ତଦାରଖ କରିଥିଲେ । ଗୋଟିଏ କେନ୍ଦ୍ରରେ ଅନ୍ୟୂନ ଦଶଜଣ ଯେପରି ସୂତା କାଟନ୍ତି, ତାହାର ବନ୍ଦୋବସ୍ତ କରିଥିଲେ । ସୂତା ସଂଗ୍ରହ କରି କେନ୍ଦ୍ରକୁ ପଇସା ଦେବା ବା ବୁଣାଇ ଲୁଗା ପାଛୁଡ଼ା ପହଁଚାଇବା ଥିଲା ନିତ୍ୟନିୟମିତ କର୍ମ । ପ୍ରାୟ ଦଶ ପନ୍ଦର ବର୍ଷ ପର୍ଯ୍ୟନ୍ତ ସୂତ୍ର ଯଜ୍ଞ ଚଳାଇଥିଲେ । ଚରଖା ଓ ତକିଲ୍‌ର ଘରଘର ତାନ ଭିଣାର ତରଙ୍ଗାୟିତ ଶବ୍ଦ ଯେପରି ଗ୍ରାମ୍ୟ ଜୀବନରେ ସ୍ପନ୍ଦିତ ହେଲା, ତାହା ସ୍ୱାଧୀନତା ଆସିବାର ଏକ ଦୃଢ଼ ପ୍ରତିଶ୍ରୁତି ମନେହେଲା ।

### କର ବା ମର, ଜେଲ୍ ଭର, ୧୯୪୨

କ୍ରିପ୍‌ସ ଆଲୋଚନା ବିଫଳ ହେତୁ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ଉପରୁ ଗାନ୍ଧିଜୀଙ୍କର ଭରସା ତୁଟିଗଲା । ପରେ ଚରମ ନିଷ୍ପତ୍ତି ଗ୍ରହଣ କରିଲେ । ଗାନ୍ଧିଜୀଙ୍କ ଅହିଂସା ନୀତିର ଏକ ଉଗ୍ର ରୂପ ଦେଖିବାକୁ ମିଳିଲା । 'ଡୁ ଅର ଡାଇ' ଭଳି ବୋମାବର୍ଷଣକାରୀ ଶବ୍ଦ ଗାନ୍ଧିଜୀଙ୍କ ଠାରୁ ସ୍ଫୁରଣ ହେବ ଏ କଥା କାହାରି ମନରେ ନ ଥିଲା । ଏପରି ବୈପ୍ଳବିକ ଧ୍ୱନି ଭାରତବର୍ଷ କାହିଁକି ବିଶ୍ୱ ସ୍ତରରେ ମଧ୍ୟ ଚହଳ ସୃଷ୍ଟି କରିଥିଲା । ବିଶେଷତଃ ବେସାଲିସ ସଂଗ୍ରାମରେ ବିଶ୍ୱାସ କରି ଯେଉଁମାନେ ନେତାଜୀ ସୁଭାଷ ବୋଷଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ, ସେମାନେ ମଧ୍ୟ ଏହି ନିଷ୍ପତ୍ତିକୁ ସ୍ୱାଗତ ଜଣାଇଥିଲେ । ଦଳ ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକସ୍ୱରରେ କହିଲେ, ଆଉ ମୁହୂର୍ତ୍ତେ ଇଂରେଜମାନଙ୍କୁ ଭାରତ ମାଟିରେ ରହିବାକୁ ଦିଆଯିବ ନାହିଁ । ଗୋଟାଏ ସଂସ୍କୃତି ସମ୍ପନ୍ନ ଜାତିକୁ ପଥଭ୍ରଷ୍ଟ କରି ଅନ୍ଧକାର ଭିତରକୁ ଠେଲି ଦେଉଥିବା ଶତ୍ରୁକୁ ତୁରନ୍ତ ତଡ଼ିବା ପାଇଁ ପ୍ରାଣମୂର୍ଚ୍ଛା ଲଢ଼େଇ ଦରକାର ।

ନାହିଁ ଏଥି ଲୋଡ଼ା ବନ୍ଧୁକ କମାଣ
ହତିଆର ଏଠି ଏକା ତୁମ ପ୍ରାଣ
ତୁମ ରକ୍ତବିନ୍ଦୁ ଗୁଳି ବାରୁଦର
ଏହି ଅସ୍ତ୍ରେ ଆଜି ହୁଅ ହେ ହାଜର । (କୁନ୍ତଳା କୁମାରୀ)

କଥା ଏତେ ବାଟ ଗଲା କାହିଁକି ? କୃଷ୍ଣ କୃପାଳିନୀ ଏହି ସମସ୍ୟାକୁ ବେଶ୍ ଢଙ୍ଗରେ ପ୍ରତିପାଦନ କରିଅଛନ୍ତି – ବରଂ ଦେଶରେ ଅରାଜକତାକୁ ସେ ଗ୍ରହଣ କରିବେ, କିନ୍ତୁ ବ୍ରିଟିଶକୁ ନୁହେଁ । ବର୍ତ୍ତମାନ ତ ଦେଖା ଦେଇଥିବା ହତାଶା ନିଃସହାୟତା ଓ ତିକ୍ତତା ଏଭଳି ଅନୈତିକତା ଓ ପତନୋନ୍ମୁଖୀ ଅବସ୍ଥା ସୃଷ୍ଟି କରିଛି ଯେ ଏହାଠାରୁ ଆଉ ଅଧିକ ଶୋଚନୀୟ ଅବସ୍ଥା କିଛି ଥାଇ ନ ପାରେ । ବର୍ତ୍ତମାନର ଜନଅସନ୍ତୋଷ ଏବଂ ଅଧୈର୍ଯ୍ୟକୁ ଯଦି ଏକ ଯୋଜନାବଦ୍ଧ ସତ୍ୟାଗ୍ରହ ମାଧ୍ୟମରେ ଅହିଂସା ମାର୍ଗରେ ପ୍ରତିରୋଧ କରା ନ ଯାଏ, ତାହାହେଲେ ହୁଏତ ଦେଶରେ ବ୍ୟାପକ ବିଶୃଙ୍ଖଳା ଓ ହିଂସାକାଣ୍ଡ ଘଟିଯିବ ।

ତେଣୁ ଦିନେ ସୁନ୍ଦର ସକାଳେ ମୁଁ ନିଷ୍ପତ୍ତି ନେଲି ଯେ, ଭାରତର ତୁରନ୍ତ ସ୍ୱାଧୀନତା ପାଇଁ ଏହି ପବିତ୍ର ଦାବି କରିବି । ସେଥିପାଇଁ ଇଂରେଜମାନଙ୍କୁ କହିଲି, ଭଗବାନଙ୍କୁ ଦୁହାଇ ଦେଇ କହୁଛି । ଆପଣମାନେ ଭାରତକୁ ଏକା ରହିବାକୁ ଛାଡ଼ି ଦିଅନ୍ତୁ । ଆମେ ସ୍ୱାଧୀନତାର ନିଃଶ୍ୱାସ ପ୍ରଶ୍ୱାସ ନେଉ । କିନ୍ତୁ ଘଟଣା ଘଟିଲା ଭିନ୍ନ ପ୍ରକାର । ନୃଶଂସ ବ୍ରିଟିଶ ସରକାର ଅଗଷ୍ଟ ୯ ତାରିଖ

ଭୋରୁ ଗାନ୍ଧୀଙ୍କ ସହିତ ମୀରାବେନ, ସରୋଜିନୀ ନାଇଡୁ ଓ ମହାଦେବ ଦେଶାଇଙ୍କୁ ପୁନାର ଆଗା ଖାଁ ରାଜବାଟୀରେ କଡ଼ା ପହରା ସହିତ ବନ୍ଦୀ କରି ରଖିଲେ । ଏହି ସମ୍ବାଦ ବିଦ୍ୟୁତ୍ ବେଗରେ ଭାରତ ସାରା ଖେଳିଗଲା ।

ଅଗଷ୍ଟ ୧୦ ତାରିଖରେ ରେଭେନସା କଲେଜର ଦୁଇଜଣ ଛାତ୍ର ବିବୁଧେନ୍ଦ୍ର ମିଶ୍ର ଓ ସୁରଜ ମଲ୍ଲ ସାହାଙ୍କୁ ସୁଭାଷ ଚନ୍ଦ୍ର ବୋଷଙ୍କ ସହ ଗୁପ୍ତ ସମ୍ପର୍କ ରଖିବା ଅଭିଯୋଗରେ ଗିରଫ କରି ନିଆଗଲା । ସେ ଦୁହେଁ ବ୍ରହ୍ମପୁର ଜେଲରେ ଦୀର୍ଘଦିନ ଅଟକ ବନ୍ଦୀ ରହିଥିଲେ । ତାଙ୍କ ପରେ ଏହି କଲେଜର ବନମାଳି ପଟ୍ଟନାୟକ, ବଳରାମ ମହାନ୍ତି, ବିଶ୍ୱନାଥ ପଣ୍ଡିତ, ମନମୋହନ ମିଶ୍ର, ସତ୍ୟବାଦୀ ମିଶ୍ର ଓ ପାରେଶ୍ୱର ମହାନ୍ତି ପ୍ରମୁଖ ବନ୍ଦୀ ହୋଇ କାରାବରଣ କରିଥିଲେ, ଯାହାର ପଟାନ୍ତର ନାହିଁ ।

ଭାରତ ଛାଡ଼ ଆନ୍ଦୋଳନ ଓଡ଼ିଶାରେ ତୀବ୍ର ଆକାର ଧାରଣ କଲା । ବରୀ କଳାମାଟିଆ ଗୁଳିକାଣ୍ଡରେ ସାଉଁଟି ମଳିକ ସାନନ୍ଦ ସ୍ୱାଇଁ, ହାଡ଼ିବନ୍ଧୁ ପଣ୍ଡା, ମାୟାଧର ଭୂୟାଁ ପ୍ରାଣ ହରାଇବା ସହିତ ୧୯ ଜଣ ସଂଗ୍ରାମୀ ଆହତ ହୋଇଥିଲେ । ବରୀ ଆଶ୍ରମରୁ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ମାଳତୀ ଦେବୀ, ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ, ଶରତ ମହାରଣା ପ୍ରଭୃତି ଅଗଷ୍ଟ ବିପ୍ଳବ ଆରମ୍ଭ ମାତ୍ରେ ଗିରଫ ହୋଇ କାରାରୁଦ୍ଧ ହୋଇଥିଲେ ।

ଏହି ନାଦ ଓ ସମ୍ବାଦରେ କେନ୍ଦ୍ରାପଡ଼ାରେ ଫୁଟିଉଠିଲା ରକ୍ତିମ ଜବା । ଅଗ୍ରୀମ ସହରରୁ ଥାନା ଓ ଅଫିସ ଘେରାଉର ଉପକ୍ରମ ହେଲା । ଛାତ୍ରଛାତ୍ରୀ ଆଗେଇ ଆସିଲେ । ସ୍ୱାଧୀନତା ଆମର ଦାବି ଥିଲା ପ୍ରଥମ ମନ୍ତ୍ର । ଏହି ସମୟରେ ଆନ୍ଦୋଳନକୁ ଆଗେଇନେଇ ସହଦେବ ଦାସ, ବିପ୍ଳବୀ ଆନନ୍ଦ ଚନ୍ଦ୍ର ଜେନା, ଯଦୁମଣି ମଙ୍ଗରାଜ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ରଘୁନାଥ ମହାନ୍ତି, ପୁରୁଷୋତ୍ତମ ନାୟକ, ଦୁର୍ଯ୍ୟୋଧନ ପଣ୍ଡା, ଘନଶ୍ୟାମ ମିଶ୍ର, ଦୁଃଖୀଶ୍ୟାମ ଜେନା, ନଟବର ପ୍ରଧାନ, ନଟବର ଜଗଦ୍ଦେବ, ନାରାୟଣ ଦାସ, ଆନନ୍ଦ ହାଜରା, ନନ୍ଦକିଶୋର ଦାସ, ଦେଶବନ୍ଧୁ ଦାସ, କସ୍ତୁରୀ ଚରଣ ଦାସ, କିଶୁ ରାଉତ, ବିଦ୍ୟାଧର ସ୍ୱାଇଁ, ସଚିଦାନନ୍ଦ ମହାନ୍ତି, ପଞ୍ଚାନନ ରାଉତ, ବିଚିତ୍ରାନନ୍ଦ ମହାନ୍ତି, ବିମ୍ବାଧର ମୁଦୁଲି, ଧନେଶ୍ୱର ପ୍ରତିହାରୀ, ଲୋକନାଥ ମିଶ୍ର, ବ୍ରହ୍ମାନନ୍ଦ ରାଉତ ପ୍ରମୁଖ କର ବା ମର ଆହ୍ୱାନରେ କାରାବରଣ କରିଥିଲେ ଏବଂ ପୋଲିସଠାରୁ ଅକଥ୍ୟ ନିର୍ଯାତନା ଭୋଗ କରିଥିଲେ । ତାହା ହୁଏତ ଆଜି ବିଶ୍ୱାସ କରିହେବ ନାହିଁ ।

ନାରୀମାନଙ୍କ ମଧ୍ୟରେ ସରସ୍ୱତୀ ଦେବୀ, ପ୍ରଭାଦେବୀ, ସୁଭଦ୍ରା ଦେବୀ, ନବମଶ୍ରେଣୀ ଛାତ୍ରୀ ଜାନକୀ ମହାନ୍ତି, ଶୋଭାଦେଈ ଓ ଧୀରାମଣି ଦେବୀ ସ୍ୱାଧୀନତା ସଂଗ୍ରାମ ପଥକୁ ପବିତ୍ର ତୀର୍ଥ ମନେ କରିଥିଲେ । ପୁରୁଷୋତ୍ତମଙ୍କୁ ପୋଲିସ ଧରିବାକୁ ବହୁ ଚେଷ୍ଟା କରିଥିଲା । ତାଙ୍କୁ ଧରାଇଦେବା ନିମନ୍ତେ ସରକାର ଦଶହଜାର ଟଙ୍କା ପୁରସ୍କାର ଘୋଷଣା କରିଥିଲେ । ଦୁଇଜଣ ବନ୍ଧୁଙ୍କ ସହାୟତାରେ କିଶନ ନଗର ଯାଇ ସଂଗ୍ରାମୀ ତଥା ବିଶିଷ୍ଟ ଲେଖକ ବିନୋଦ କାନୁନଗୋଙ୍କ ଘରେ ଯାଇ ଆଶ୍ରୟ ନେଇଥିଲେ । ମାତ୍ର ନଭେମ୍ବର ମାସ ୧୬ ତାରିଖରେ ଧରାହୋଇ କେନ୍ଦ୍ରାପଡ଼ା ଓ କଟକ ବ୍ରହ୍ମପୁର ଜେଲକୁ ବାନ୍ଧି ନିଆଗଲା । ସେହି ଜେଲ୍‌ରେ ଓଡ଼ିଶାର ବହୁ ତୁଙ୍ଗ ନେତା ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାସ ପ୍ରମୁଖଙ୍କ ସଂସ୍ପର୍ଶରେ ପୁରୁଷୋତ୍ତମ ଆସି ନିଜକୁ ଧନ୍ୟ ମନେକଲେ ।

**କାରାମୁକ୍ତ**

ବ୍ରହ୍ମପୁର ଜେଲ୍‌ରେ ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାଶ, ନବକୃଷ୍ଣ ଚୌଧୁରୀ, ରୁଦ୍ର ସାମଲ, ପ୍ରତାପ ମହାନ୍ତି ଓ ମୁରଲିଧର ପଣ୍ଡାଙ୍କ ସମେତ ତ୍ରିରଙ୍ଗା ପତାକା ଉତ୍ତୋଳନ କରିଥିଲେ । ପୁରୁଷୋତ୍ତମ ଜେଲ୍‌ରେ ଥାଇ ଗାନ୍ଧୀ ସାହିତ୍ୟ ଓ ଇତିହାସ ଅଧ୍ୟୟନ କରିବା, ସେବା କରିବା ଆଦି କର୍ମତତ୍ପର ଥିଲେ । ବିଶିଷ୍ଟ ଗାନ୍ଧୀବାଦୀମାନେ ପୁରୁଷୋତ୍ତମଙ୍କ ଉଚ୍ଚାଟ ସ୍ୱର ଓ କର୍ମତତ୍ପରତା ଲାଗି ତାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ ।

ଜେଲ୍‌ଖାନାରେ ସଂଗ୍ରାମୀମାନଙ୍କୁ ବହୁ ନିର୍ଯାତନା ସହ୍ୟ କରିବାକୁ ପଡ଼ିଥିଲା । ଏଣେ ସ୍ତ୍ରୀଙ୍କର ବିୟୋଗ ତାଙ୍କ ମନର ଏକ ଗୋପନ ଯନ୍ତ୍ରଣା । ତଥାପି ଦେଶ ବଞ୍ଚିଲେ ଆମେ ବଂଚିବା ନ୍ୟାୟରେ ସକଳ ଦୁଃଖକୁ ସୁଖମଣି କାଳାତିପାତ କଲେ । ୧୯୪୪ ମସିହା ସେପ୍ଟେମ୍ବର ମାସରେ ଖଲାସ ହୋଇଆସିଲେ ।

ଯେଉଁମାନେ ବ୍ରିଟିଶ ଶାସନରେ ଜେଲ ଭୋଗୁଥିଲେ, ଆମ ଲୋକେ ଗୌରବ ମନେ ନ କରି ଅପରାଧ ବୋଲି ମନେ କରୁଥିଲେ । ତାହାଛଡ଼ା ବାରଜାତି ଓ ଧର୍ମର ଲୋକଙ୍କ ସହ ମିଳାମିଶା ଖିଆପିଆ କରିବା ଦ୍ୱାରା ସେ ନିଜର ଜାତି ହରାଇଛନ୍ତି । ସାମନ୍ତବାଦୀ ଲୋକମାନେ ଗାଁ ପଡ଼ିଶା ବା ଜାତିର ଲୋକଙ୍କୁ ଉସ୍କାଇ ଦେଇଥିଲେ । ଅଧିକାଂଶ ସଂଗ୍ରାମୀ ସାମାଜିକ ବାସନ୍ଦ କାରଣରୁ ଜାତି ହେବାକୁ ପଡ଼ୁଥିଲା । ଗୋବର ପାଣି ପିଇବା, ବ୍ରାହ୍ମଣ ନାୟକ ଶୁଚି କରିବେ । ପଇତା ଦେବେ ଏବଂ ଜ୍ଞାତି ଭୋଜନ ଦେବେ । ପୁରୁଷୋତ୍ତମଙ୍କ କ୍ଷେତ୍ରରେ ସେହି ପ୍ରଶ୍ନ ଉଠିଥିଲେ

ହେଁ ସେ ଥିଲେ ଦୃଢ଼ମନା ସଂସ୍କାରକ । ବାପା ମାଙ୍କ ସହିତ ଭାଇମାନଙ୍କୁ ବୁଝାଇ ଦେଲେ । ଜଗନ୍ନାଥଙ୍କ ମହାର୍ଘ ପାଇବାରେ ଆଗ୍ରହ ରହିଛି । ଜଗନ୍ନାଥ ଆମ ଉତ୍କଳୀୟ ଜାତୀୟ ଚେତନାର ପ୍ରତୀକ । କିନ୍ତୁ ଦେଶ ପାଇଁ ପ୍ରାଣପାତ କରି ଯେଉଁମାନେ ଆସୁଛନ୍ତି କାରାଗାରରୁ ଫେରୁଛନ୍ତି ସେମାନେ ସମ୍ବର୍ଦ୍ଧିତ ହେବାକଥା ଓ ହେଉଛନ୍ତି । ଦେଶ କାମ କଲେ ଲୋକେ କାୟମନୋବାକ୍ୟରେ ପବିତ୍ର ହୁଅନ୍ତି । ଚିତ୍ତଶୁଦ୍ଧି ସମାଜ ସେବାର ଫଳ । ଏଣୁ ପୁରୁଷୋତ୍ତମ ଏହାକୁ ସଂସ୍କାର ବିରୋଧରେ ସ୍ୱର ଉଠାଇ ସ୍ୱଗୃହକୁ ଫେରିଥିଲେ । ମାତା ପିତା ଦେଖି ଆନନ୍ଦିତ । କିନ୍ତୁ ବୋହୂଟିଏ ତାଙ୍କର ଲୋଡ଼ା । ପୁରୁଷୋତ୍ତମ ପ୍ରଥମେ ଅସ୍ୱୀକାର କରିଥିଲେ । ମା ବାପାଙ୍କ ମନରେ ଦୁଃଖ ନ ଦେଇ ସେ ବିବାହରେ ରାଜି ହୋଇଗଲେ । ଖଣ୍ଡସାହିର ରାଉତ ବଂଶ ଝିଅ ଧାରାମଣି କେନ୍ଦୁପାଟଣାରେ ଖଦୀକାମ କରୁଥିଲେ । ତାଙ୍କୁ ହିଁ ବିବାହ କଲେ ।

ଧୀରାମଣି ଦେବୀଙ୍କର ସମାଜସେବା, ରାଜନୀତି, କଂଗ୍ରେସ ସଂଗଠନ ଆଦି କ୍ଷେତ୍ରରେ ପ୍ରମୁଖ ଭୂମିକା ରହିଛି । ସେ ନାରୀ ଶିକ୍ଷାର ବିକାଶ ଉଦ୍ଦେଶ୍ୟରେ କେନ୍ଦ୍ରାପଡ଼ାରେ ତୁଳସୀ ମହିଳା ମହାବିଦ୍ୟାଳୟ ପ୍ରତିଷ୍ଠା କରିଛନ୍ତି ଯାହା ରାଜ୍ୟର ଏକ ପ୍ରଖ୍ୟାତ ମହିଳା ମହାବିଦ୍ୟାଳୟ ହୋଇପାରିଛି ।

୧୯୪୪ ମସିହା ସେପ୍ଟେମ୍ବର ମାସରେ କାରାମୁକ୍ତ ହେବା ପରେ ପୁରୁଷୋତ୍ତମ ବାବୁ ସେବା ଓ ରଚନାତ୍ମକ କାର୍ଯ୍ୟରେ ନିଜକୁ ସମର୍ପଣ କରିଦେଇଥିଲେ । ଗାନ୍ଧିଜୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ପରେ ତୃତୀୟ ଆଦର୍ଶ ବ୍ୟକ୍ତି ଥିଲେ କେନ୍ଦ୍ରାପଡ଼ା ନିବାସୀ ବିଶିଷ୍ଟ ଓକିଲ ଦୀନବନ୍ଧୁ ସାହୁ । ତାଙ୍କ ପ୍ରେରଣା ଓ ପଡିଆରାରେ ପୁରୁଷୋତ୍ତମ ବାବୁ ୧୯୫୩ରୁ ୧୯୫୮ ପର୍ଯ୍ୟନ୍ତ ବିଧାନସଭାର ସଦସ୍ୟ ଥିଲେ । ଏହି ସମୟରେ ୧୯୫୫ ମସିହାର ପ୍ରଳୟଙ୍କରୀ ବନ୍ୟାର ମୁକାବିଲା କରିବାକୁ ଯାଇ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସହିତ ୨୦ ମିନିଟ କାଳ ଟେଲିଫୋନରେ କଥା ହୋଇଥିଲେ । ଯାହା ଫଳରେ ୟୁଏନ ଧେବର ଓ ମନ୍ତ୍ରୀ ରାଧାନାଥ ରଥ କେନ୍ଦ୍ରାପଡ଼ାର ଦୁରବସ୍ଥା ଦର୍ଶନ କରି ବହୁ ରିଲିଫ ଯୋଗାଇଥିଲେ ।

ଫୋଡ଼ ଫାଉଣ୍ଡେସନର ସଦସ୍ୟ ଥାଇ ସମଗ୍ର କେନ୍ଦ୍ରାପଡ଼ାରେ ଉକ୍ତ ଅର୍ଥରେ ଦୁର୍ଗମ ଅଞ୍ଚଳକୁ ରାସ୍ତା ଓ ଶିକ୍ଷାର ବିକାଶ ନିମନ୍ତେ ୨୬ଟି ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରାଇଥିଲେ । ଗୋଟିଏ ବେସିକ୍ ସ୍କୁଲ, ୩ଟି ହାଇସ୍କୁଲ ଦୁଇଟି ଡାକ୍ତରଖାନା ତାଙ୍କର ଅଞ୍ଚଳ ପାଇଁ ଅବଦାନ ।

ରେଳବାଇ ବୋର୍ଡ ସଦସ୍ୟ ଥିବା ବେଳେ କଟକ ଭୁବନେଶ୍ୱର ରେଳଷ୍ଟେସନର ପ୍ରଶସ୍ତିକରଣ ଓ ଯାତ୍ରୀ ବିଶ୍ରାମାଗାର ପ୍ରତିଷ୍ଠା ପଛରେ ତାଙ୍କର ଉଦ୍ୟମ ନିହିତ ।

୧୯୫୫-୫୬ ମସିହାରେ ବିନୋବାଜୀଙ୍କର ପଦଯାତ୍ରା ସହିତ କେନ୍ଦ୍ରାପଡ଼ାରେ ଭୂଦାନ ଯଜ୍ଞ ଓ ସର୍ବୋଦୟ ଆନ୍ଦୋଳନରେ ମନୋନୀତ ସଭ୍ୟ ଥାଇ ଅନେକ କାର୍ଯ୍ୟ କରିପାରିଛନ୍ତି । ଏପରିକି ପତ୍ନୀ ଧୀରାମଣି ଦେବୀଙ୍କୁ ରଚନାତ୍ମକ କାର୍ଯ୍ୟ ଓ ସୂତ୍ର ଯଜ୍ଞ ପରିଚାଳନା ନିମନ୍ତେ ମଧୁସାଗର ବିଦ୍ୟାପୀଠରେ ଛାଡ଼ିଥିଲେ । ୧୯୫୮-୫୯ରେ କେନ୍ଦ୍ରାପଡ଼ା ମହାବିଦ୍ୟାଳୟର ପରିକଳ୍ପନା ସହିତ ଡକ୍ଟର ହରେକୃଷ୍ଣ ମହତାବ ଭିତ୍ତିପ୍ରସ୍ତର ଶୁଭ ଦେଇଥିଲେ । ପ୍ରତିଷ୍ଠାତା ସମ୍ପାଦକ ଦୀନବନ୍ଧୁ ସାହୁଙ୍କ ନିର୍ଦ୍ଦେଶକ୍ରମେ ମହାବିଦ୍ୟାଳୟର ଜମି ଯୋଗାଡ଼ କରିବା ଏବଂ ବିଭିନ୍ନ ମହଲରେ ପଶି କଲେଜ ଚାନ୍ଦା ଆଦାୟ କରିବାରେ ପୁରୁଷୋତ୍ତମ ବାବୁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

ଡେରାବିଶକୁ ସ୍ୱତନ୍ତ୍ର ପଞ୍ଚାୟତ ସମିତିରେ ପରିଣତ କରିବା ପୁରୁଷୋତ୍ତମ ବାବୁଙ୍କ ପ୍ରଯତ୍ନର ଫଳ । ସେ ଓ ତାଙ୍କ ପତ୍ନୀ ଧୀରାମଣି ଦେବୀ ଏହି ପଞ୍ଚାୟତ ସମିତିର ଯଥାକ୍ରମେ ପାଞ୍ଚଥର ଚେୟାରମ୍ୟାନ ହେବା ତାଙ୍କ ଲୋକପ୍ରିୟତାର ନିଦର୍ଶନ ।

### ଝୋଟକଳ ପ୍ରତିଷ୍ଠାର ନେତୃତ୍ୱ

କୃଷି ପ୍ରଧାନ ଓଡ଼ିଶାରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ପ୍ରଚୁର ଝୋଟ ବା ନଳିତା ଚାଷ କରାଯାଏ । ଚାଷୀଙ୍କଠାରୁ ଝୋଟ ସଂଗ୍ରହ କରି କଲିକତା ପଠାଯାଏ । ଓଡ଼ିଶାରେ ଉତ୍ପାଦିତ ଝୋଟର ସାମଗ୍ରୀ ପ୍ରସ୍ତୁତ କରିବା ପାଇଁ କଳ କାରଖାନାର ଅଭାବ । ପ୍ରଜା ସୋସାଲିଷ୍ଟ ଦଳ ଝୋଟ ଚାଷୀ ଆନ୍ଦୋଳନ କରିଥିଲେ ସୁଦ୍ଧା ଝୋଟ କଳ ସ୍ଥାପନ ହୋଇପାରି ନ ଥିଲା । ଅଖା, ବ୍ୟାଗ, ପାଲ, ଓ ରଶି ପ୍ରଭୃତି ଝୋଟଜାତ ଦ୍ରବ୍ୟ ଓଡ଼ିଶାକୁ କଲିକତାରୁ ଆସେ । ପୁରୁଷୋତ୍ତମ ବାବୁ ଚାଷୀର ଦରଦ ନେଇ ପ୍ରଥମେ ଝୋଟ କଳର ସ୍ୱପ୍ନ ଦେଖିଥିଲେ ।

ପୁରୁଷୋତ୍ତମ ବାବୁ ଓଡ଼ିଶା ଝୋଟଚାଷ ସମବାୟ ସମିତି ଦାନପୁରର ସଭାପତି ଥିଲେ । ଓଡ଼ିଶା ବିଶେଷତଃ କଟକ ଜିଲ୍ଲାରେ ଗୋଟିଏ ଝୋଟକଳ ପ୍ରତିଷ୍ଠାର ପ୍ରସ୍ତାବ ଉକ୍ତ ସମିତିରେ ଗୃହୀତ ହୋଇଥିଲା । ଝୋଟର ସମବାୟ କମିଶନରଙ୍କୁ ଏ ବାବଦରେ ଜଣାଇ ପୁରୁଷୋତ୍ତମ ବାବୁ ଓଡ଼ିଶା ସରକାରଙ୍କ ଅନୁମତି ମାଗିଥିଲେ ।

କଂଗ୍ରେସ ଦଳର ପରାଜୟ ପରେ ଗଣତନ୍ତ୍ର ଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀଙ୍କ ସମୟ । ଝୋଟ କମିଶନର କାର୍ଯ୍ୟାଳୟ କଲିକତାରେ ଥାଏ । ଜନୈକ ମାରୱାଡ଼ି ଝୋଟକଳ ବସାଇବା ନିମନ୍ତେ ଆବେଦନ କରି ସୁପାରିସ ପାଇସାରିଥିଲେ । ପୁରୁଷୋତ୍ତମ ବାବୁ କଲିକତା ଯାଇ ଏ ପ୍ରକାର ଚକ୍ରାନ୍ତକୁ ବରଖାସ୍ତ କରିବା ନିମନ୍ତେ କମିଶନରଙ୍କ ଦୃଷ୍ଟି ଆକର୍ଷଣ କରିବାରୁ କମିଶନର କହିଲେ – ରାଜ୍ୟ ସରକାରଙ୍କ ସୁପାରିସ ସହିତ ଏ ଚିଠି ଦିଲ୍ଲୀ ଚାଲିଗଲାଣି । ଯଦି ଦିଲ୍ଲୀରେ ପହଞ୍ଚି ଅଭିଯୋଗ କରାଯାଏ, ହୁଏତ ବ୍ୟକ୍ତିବିଶେଷଙ୍କ ପାଇଁ ସରକାର ବା ସମବାୟ ସଂସ୍ଥା ପାଇପାରିବ । ପୁରୁଷୋତ୍ତମ ବାବୁ ଓଡ଼ିଶାର ସମସ୍ତ ଝୋଟ ସମବାୟ ସମିତିର ଆବେଦନପତ୍ର ସଂଗ୍ରହ କରି ସେତେବେଳେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ସାକ୍ଷାତ କରିଥିଲେ । ପ୍ରଧାନମନ୍ତ୍ରୀ, କୃଷିମନ୍ତ୍ରୀ ଜଗଜ୍ଜୀବନ ରାମ ଓ ଶିଳ୍ପମନ୍ତ୍ରୀ ଫକୀରୁଦ୍ଦିନ ଅଲ୍ଲୀ ଅହମ୍ମଦଙ୍କୁ ଟେଲିଫୋନ କଲେ ଏବଂ ପୁରୁଷୋତ୍ତମବାବୁ ଭେଟି ଦାବି ଜଣାଇଥିଲେ । ସେ ମହାଶୟ ଓଡ଼ିଶା ଆସିବାର ପ୍ରୋଗ୍ରାମ କଲେ ଏବଂ ପୁରୁଷୋତ୍ତମବାବୁଙ୍କୁ ଓଡ଼ିଶା ରାଜଭବନକୁ ଡକାଇ ସତ୍ୟାସତ୍ୟ ତଦନ୍ତ କଲେ । ମୋତେ ନିଷ୍ପତ୍ତି ଶୁଣାଇଥିଲେ ଯେ, ଓଡ଼ିଶାରେ ଝୋଟକଳ ବ୍ୟକ୍ତିଗତ ମାଲିକାନାରେ ହେବ ନାହିଁ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ତଦ୍‌ବିଭାଗୀୟ ମନ୍ତ୍ରୀଙ୍କୁ ସମବାୟ ଭିତ୍ତିରେ ଝୋଟକଳ ସ୍ଥାପନ ପାଇଁ ସୁପାରିସ କରିଗଲେ । ସେହି ଉଦ୍ୟମର ସଫଳ ରୂପାୟନ ଧାନମଣ୍ଡଳ ଝୋଟକଳ ।

ସେ ଜଣେ ସୁସଂଗଠକ । ସାଇକେଲ ଖଣ୍ଡେ ଧରି ସମଗ୍ର ଜିଲ୍ଲାକୁ ପ୍ରଦକ୍ଷିଣ କରିଥିଲେ । କେଉଁ ଗାଁରେ ତାଙ୍କର ପରିଚୟ ନ ଥିଲା ତା ନୁହେଁ । ୧୯୫୮ ମସିହାରେ ବିଜୁ ବାବୁଙ୍କୁ କେନ୍ଦ୍ରାପଡ଼ାରେ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ । କଂଗ୍ରେସ ଦଳର ବିଜୁବାବୁ ହେଲେ କାରପଟ୍‌ଦାର । ପ୍ରାୟ ଦଶହଜାର ଲୋକଙ୍କର ସମାଗମ ହୋଇଥିଲା । କଂଗ୍ରେସର ଏହି ବିଶାଳ ସଭାକୁ ପ୍ରଜା ସୋସାଲିଷ୍ଟ ପାର୍ଟି ଆଦୌ ଗ୍ରହଣ କରି ପାରି ନ ଥିଲା । ଘୋର ବିରୋଧ କରିଥିଲେ । ସେହିଦିନୁ ବିଜୁବାବୁ ତାଙ୍କ ଘରକୁ ଆସି ଆତିଥ୍ୟ ଗ୍ରହଣ କରିବା ଥିଲା ଅଭିନବ ଗୌରବ ଓ ଯେବେ କେନ୍ଦ୍ରାପଡ଼ା ଆସନ୍ତି ପୁରୁଷୋତ୍ତମ ବାବୁଙ୍କୁ ଖବର ପଠାନ୍ତି ।

କେନ୍ଦ୍ରାପଡ଼ାରୁ ଆରମ୍ଭ ହୁଏ ସ୍ୱାଧୀନତା ସଂଗ୍ରାମୀ ସଂଗଠନ । ଦାମୋଦର ବ୍ରହ୍ମଖଣ୍ଡ ଏହି ଉଦ୍ୟମ ଆରମ୍ଭ କରିଥିଲେ ସିନା ଫଳପ୍ରସୂ କଲେ ପୁରୁଷୋତ୍ତମବାବୁ । ସାରା ଓଡ଼ିଶା ଓ ତା'ପରେ ଭାରତବର୍ଷରେ ସଂଗଠିତ ହେଲା ସ୍ୱାଧୀନତା ସଂଗ୍ରାମୀ ସମିତି ତାଙ୍କ ମୃତ୍ୟୁବେଳକୁ (୨୦୧୪ ନଭେମ୍ବର ୧୬) ସେ ଅଖିଳ ଭାରତ ସ୍ୱାଧୀନତା ସଂଗ୍ରାମ ସମିତିର ଉପସଭାପତି ଓ ଓଡ଼ିଶା ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ସମିତିର ଛଅ ବର୍ଷ ଧରି ସଭାପତି ରହି ଆସିଥିଲେ । ସର୍ବଭାରତୀୟ ସ୍ତରରେ ଜଣେ ଓଡ଼ିଆ ସଂଗ୍ରାମୀ ଏପରି ଉଚ୍ଚସ୍ଥାନ ପାଇବା କମ୍ କଥା ନୁହେଁ ।

ଜାତୀୟ କଂଗ୍ରେସ ଶତବାର୍ଷିକ ଓ ସ୍ୱାଧୀନତା ଲାଭର ଶତବାର୍ଷିକ ପଦଯାତ୍ରା ତାଙ୍କ ଦେଶପ୍ରୀତିର ଅନନ୍ୟ ଉଦାହରଣ । ୧୯୯୭ ମସିହାରେ ସ୍ୱାଧୀନତା ପ୍ରାପ୍ତି ଶତବାର୍ଷିକୀ ଉତ୍ସବର ରାଜ୍ୟସ୍ତରୀୟ ସମ୍ମିଳନୀ ତାଙ୍କ ଉଦ୍ୟମ ଓ ପରାକାଷ୍ଠାର ଫଳ । ଅବଶ୍ୟ ତତ୍‌କାଳୀନ ମାନ୍ୟବର ମନ୍ତ୍ରୀ ଭାଗବତ ପ୍ରସାଦ ମହାନ୍ତିଙ୍କର ସାହାଯ୍ୟ ସହଯୋଗ ଅବିସ୍ମରଣୀୟ ।

ଗାନ୍ଧୀ ଜୟନ୍ତୀ, ଗାନ୍ଧୀ ଶ୍ରାଦ୍ଧ, ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ ଆଦି ଜାତୀୟ ଦିବସ ପାଳନ ନିମନ୍ତେ ଏକଶତ ପୋଷ୍ଟକାର୍ଡ ଚିଠି ମାସକ ପୂର୍ବରୁ ପଠାଯାଇଥାଏ ଗାନ୍ଧୀବାଦ ଓ ଗାନ୍ଧୀ ବିଚାରର ସେ ଏକ ବିମୂର୍ତ୍ତ ପ୍ରତୀକ । ଦେଖିଥିବା ଓ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତି ହିଁ ଜାଣନ୍ତି ।

ପ୍ରତ୍ୟେକ ଭଲ କାମ ଓ ଜାତୀୟ କାର୍ଯ୍ୟ କ୍ଷେତ୍ରରେ ତାଙ୍କର ଦଳ ବିଚାର ନଥାଏ । ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଦେବା ନିମନ୍ତେ ଯେଉଁ ଦସ୍ତଖତ ଅଭିଯାନ ଚାଲିଲା, ତାହାର ଅଗ୍ରଦୂତ ପୁରୁଷୋତ୍ତମ ବାବୁ । ସେ ଛୁଟିଗଲେ ଭୁବନେଶ୍ୱର । ଆଗ ପୁରୁଷୋତ୍ତମ ବାବୁ ସ୍ୱାକ୍ଷର କଲା ପରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସ୍ୱାକ୍ଷର କଲେ । କି ଉଚ୍ଚ ମାନସିକତା ।

ଗତ ନଭେମ୍ବର ୧୬ ତାରିଖ, ମାର୍ଗଶିର ମାସର ବିଷର୍ଣ୍ଣ ସକାଳ ୮ଟା ୪୫ ମିନିଟରେ କଟକ ବଡ଼ ଡାକ୍ତରଖାନାରେ ଏହି ମହାନ ଦେଶପ୍ରେମୀ ସମାଜସେବୀ, ଗାନ୍ଧୀବାଦୀଙ୍କର ପ୍ରାଣ ପ୍ରଦୀପ ଲିଭିଗଲା ।

ସା: ଜୟୀପୁରା (ବଳଦେବ କଲୋନୀ)
ପୋ/ଜି – କେନ୍ଦ୍ରାପଡ଼ା, ପିନ୍ –୭୫୪୨୧୧

# କୁଆଡ଼େ ଗଲା ଗରିବ ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ପାଠାଗାର

**ବିପିନ ବିହାରୀ ରଥ**

ସ୍ୱାଧୀନତା ଆନ୍ଦୋଳନ ବେଳେ ଆମେ ଅନ୍ୟାନ୍ୟ ନାରା ମଧ୍ୟରେ ନାରା ଦେଉଥିଲୁ ଶିକ୍ଷା ବାଧ୍ୟତାମୂଳକ ଓ ଅବୈତନିକ ହେଉ । ସେଥିପାଇଁ ମାଡ଼ ଖାଇଥିଲୁ ଏବଂ କାରାବରଣ ବି କରିଥିଲୁ । ସେତେବେଳେ ସ୍ୱପ୍ନ ଦେଖୁଥିଲୁ ଭାରତ ନିଶ୍ଚୟ ସ୍ୱାଧୀନ ହେବ । ସ୍ୱାଧୀନ ଭାରତର ଜନଗଣଙ୍କ ଉନ୍ନତି ସକାଶେ ବହୁତ କିଛି ହେବ । କେହି ବେକାର ରହିବେ ନାହିଁ । ପ୍ରତ୍ୟେକ ବେମାରିଆଙ୍କ ପାଇଁ ମାଗଣାରେ ସୁଚିକିତ୍ସାର ବ୍ୟବସ୍ଥା ରହିବ । ଆବଶ୍ୟକୀୟ ଔଷଧ ବି ମାଗଣାରେ ମିଳିବ । କେହି ଭୋକିଲା ରହିବେ ନାହିଁ । ସମସ୍ତଙ୍କୁ ପେଟେ ଖାଇବାକୁ ମିଳିବ । ପିନ୍ଧିବା ପାଇଁ ଖଦଡ଼ ଧୋତି, ଚଦର, ଶାଢ଼ୀ ଇତ୍ୟାଦି ଶସ୍ତାରେ ମିଳିବ । ମୁଣ୍ଡ ଗୁଞ୍ଜିବାକୁ ଘରଟିଏ ମିଳିବ । ପିଇବା ପାଇଁ ସବୁଠାରେ ସ୍ୱଚ୍ଛ, ପରିଷ୍କାର ଓ ନିର୍ମଳ ପାଣି ମିଳିବ । ଅବୈତନିକ ଏବଂ ବାଧ୍ୟତାମୂଳକ ଶିକ୍ଷାର ବ୍ୟବସ୍ଥା ହେବ । ଗରିବଗୁରୁବା ପିଲାଙ୍କୁ ଗୋବର ଏବଂ ଶୁଖିଲା ପତର ଡାଳ ଗୋଟେଇବାକୁ ଯିବାକୁ ପଡ଼ିବ ନାହିଁ । ମୂଲ ଖଟିବେନି, ବେଠି ଖଟିବେ ନାହିଁ । କେହି ଭିକ ମାଗିବେ ନାହିଁ । ସଂକ୍ରାମକ ରୋଗୀ ରାସ୍ତାରେ ଭିକ୍ଷାଥାଳି ଧରି ବୁଲିବେ ନାହିଁ । ସମସ୍ତଙ୍କ ପାଇଁ ସବୁ ରକମର ସୁବ୍ୟବସ୍ଥା କରାଯିବ । ଦୁର୍ନୀତି, ଚୋରୀ, ଡକାୟତି, ଲୁଣ୍ଠନ, ଠକାମି, ପ୍ରିୟାପ୍ରୀତି ତୋଷଣ ଇତ୍ୟାଦି ଦେଶରୁ ସମୂଳେ ଲୋପ ପାଇଯିବ । ମଧ୍ୟରାତ୍ରିରେ ମଧ୍ୟ ଝିଅ, ବୋହୂ ନିର୍ଭୟରେ, ଗଳିକନ୍ଦିରେ, ବିଚ୍ ରାସ୍ତାରେ ଯାତାୟାତ କରିପାରିବେ । ଜିନିଷପତ୍ର, ଅତ୍ୟାବଶ୍ୟକ ସାମଗ୍ରୀ ଇତ୍ୟାଦି ଇତ୍ୟାଦି ଉଚିତ ଦରରେ ଯଥେଷ୍ଟ ପରିମାଣରେ ମିଳିବ । ସମସ୍ତ ନାଗରିକ ନିଜର ଦାୟିତ୍ୱ ଠିକ୍ ରୂପେ ସମ୍ପନ୍ନ କରିବେ ଏବଂ ସେଥିପ୍ରତି ସଚେତନ ରହିବେ । ପ୍ରତ୍ୟେକ ନାଗରିକଙ୍କୁ ସମ୍ବିଧାନ ପ୍ରଦତ୍ତ ମୌଳିକ ଅଧିକାରରେ ଲିପିବଦ୍ଧ ଥିବା ସମ୍ମାନ ମିଳିବ ଏବଂ ଶ୍ରମର ମର୍ଯ୍ୟାଦା ରକ୍ଷା କରାଯିବ । କର୍ମଜୀବୀଙ୍କୁ ଉପଯୁକ୍ତ ପାଉଣା ବି ଦିଆଯିବ । ଦୋଷୀ ସଠିକ୍ ଦଣ୍ଡ ପାଇବେ । ନିର୍ଦ୍ଦୋଷୀ ଦଣ୍ଡ ପାଇବେ ନାହିଁ । ସ୍ୱଦେଶୀ ଜାଗରଣ ହେବ । ବିଦେଶୀ ବର୍ଜନ ହେବ । କୁଟୀର ଶିଳ୍ପର ପ୍ରସାର ହେବ । ବୃହତ୍ ଶିଳ୍ପ ପ୍ରତ୍ୟାଖ୍ୟାନ ହେବ । ସମ୍ପୂର୍ଣ୍ଣ ନିଶା ନିବାରଣ ହେବ ଇତ୍ୟାଦି ଇତ୍ୟାଦି । ଦେଶସେବୀ, ଲୋକ ପ୍ରତିନିଧି, ସରକାରୀ କର୍ମଚାରୀ, ଦାୟିତ୍ୱବାନ୍, ନିଃସ୍ୱାର୍ଥପର, ସଚ୍ଚୋଟ, ନିଷ୍ଠାପର ଏବଂ ଆଦର୍ଶ ସ୍ଥାନୀୟ ଦେଶସେବକ ହେବେ । କେହି ମିଥ୍ୟା ପ୍ରତିଶ୍ରୁତି ଦେବେ ନାହିଁ । ଜନସାଧାରଣଙ୍କ ଅଭାବ, ଅସୁବିଧା, ଅନ୍ୟାୟ, ଅଭିଯୋଗ ଇତ୍ୟାଦିର ତତ୍‌କ୍ଷଣାତ୍ ନ୍ୟାୟୋଚିତ ଦୂରୀକରଣ ହେବ । ସମସ୍ତଙ୍କୁ ପ୍ରକୃତ ନ୍ୟାୟ ମିଳିବ । ଦେଶ ସେବକ, ଲୋକପ୍ରତିନିଧି, ସ୍ୱେଚ୍ଛାକୃତ ଭାବେ କାର୍ଯ୍ୟ କରିବେ । କୌଣସି ପାରିଶ୍ରମିକ ବା ଅବସରକାଳୀନ ଭତ୍ତା/ସୁବିଧା ନେବେ ନାହିଁ । ସାଧାରଣ ଜନତା, ଦେଶବାସୀ ପ୍ରକୃତ ରାମରାଜ୍ୟ ପୁନଃ ପ୍ରତିଷ୍ଠିତ ହେବା ଅନୁଭବ କରିବେ ଓ ଅଙ୍ଗେ ଅଙ୍ଗେ ଲିଭେଇବେ ଇତ୍ୟାଦି ଇତ୍ୟାଦି । କିନ୍ତୁ ସତ୍‌ଷଠୀ ବର୍ଷର ସ୍ୱାଧୀନତା ପରେ ବି ତାହା ସାକାର ହେଲା ନାହିଁ । ସ୍ୱପ୍ନରେ ରହିଗଲା । ବୁଦ୍ଧିଜୀବୀ ଆଦି, ସାମ୍ରାଜ୍ୟବାଦୀ, ଶୋଷଣକାରୀ, ଲୁଣ୍ଠନକାରୀ, ବ୍ରିଟିଶ୍ ସରକାରଙ୍କ ଶାସନକୁ ବହୁବର୍ଷ ହେଲା ଝୁରିବାକୁ ଆରମ୍ଭ କଲେଣି ।

୧୯୫୧ର ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରୁଛି । ୧୯୫୧ରେ ମାନ୍ୟବର ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ପରିଚାଳିତ ଓଡ଼ିଶା ସରକାର ଜନସାଧାରଣଙ୍କ ଘୋର ବିରୋଧ ସତ୍ତ୍ୱେ ଛାତ୍ରଛାତ୍ରୀଙ୍କ ଦରମା ଅତ୍ୟଧିକ ମାତ୍ରାରେ ବୃଦ୍ଧି କରାଇ ରାଜ୍ୟବ୍ୟାପୀ ଏକ ସୁଦୀର୍ଘ ଛାତ୍ର ଆନ୍ଦୋଳନର ସୂତ୍ରପାତ

କରିଥିଲେ । ଛାତ୍ର ସମାଜ ଏହାର ପ୍ରତିବାଦ ସ୍ୱରୂପ ଅନିର୍ଦ୍ଦିଷ୍ଟ କାଳ ପାଇଁ ଶାନ୍ତି ଏବଂ ଅହିଂସାପୂର୍ଣ୍ଣ ଧର୍ମଘଟ ଚାଲୁ କଲେ । ତାକୁ ପରିଚାଳନା କରିବା ପାଇଁ ଏକ ୧୧ ଜଣିଆ କାର୍ଯ୍ୟକାରୀ ସମିତି ଗଢ଼ାଗଲା । ମୁଁ ଥିଲି ସେଥିରୁ ଜଣେ ।

୧୯୫୧ ଜୁଲାଇ ମାସରେ ଦୀର୍ଘ ୨୧ ଦିନ ଧରି ଧର୍ମଘଟ ଚାଲିଲା । ସରକାର ଅଟଳ ରହିଲେ । ସରକାରୀ ଦମନଲୀଳା ଚାଲୁ ରହିଲା । କେତେକ ଛାତ୍ର ନେତାଙ୍କୁ ଅସତ୍ ଉପାୟରେ କରଗତ କରାଗଲା । ଆମ କେଇଜଣଙ୍କ ନାଁରେ ଜାମିନ୍ ବିହୀନ ଗିରଫ ପରୱାନା ଲାଗୁ କରାଗଲା । ଆନ୍ଦୋଳନ ଧିମେଇବାରେ ଲାଗିଲା । ମୁଁ ଆନ୍ଦୋଳନକୁ ବଞ୍ଚାଇ ରଖିବାକୁ ଆପ୍ରାଣ ଚେଷ୍ଟା କରି ଅକୃତକାର୍ଯ୍ୟ ହେଲି । ଗିରଫ ହେଲି । ରେଭେନ୍ସା ମହାବିଦ୍ୟାଳୟରୁ ବହିଷ୍କୃତ ହେଲି । ବ୍ରହ୍ମପୁରଠାରେ ଥିବା ଦ୍ୱିତୀୟ ବୃହତ୍ତମ ମହାବିଦ୍ୟାଳୟ (ଖଲ୍ଲିକୋଟ ମହାବିଦ୍ୟାଳୟ)ରେ ପ୍ରାକ୍ଟିକାଲ୍ କରିବା ସକାଶେ ନାଁ ଲେଖାଇଲି । ପରେ ମହାବିଦ୍ୟାଳୟ ଛାତ୍ରସଂଘର ସଭାପତିଭାବେ ବିପୁଳ ସମର୍ଥନ ପାଇ ନିର୍ବାଚିତ ହେଲି । ମହାବିଦ୍ୟାଳୟରେ ଶୃଙ୍ଖଳା ରକ୍ଷା କରିବା, ଶିକ୍ଷାର ମାନବୃଦ୍ଧି ସକାଶେ କାର୍ଯ୍ୟ କରିବା ତଥା ସମାଜସେବାରେ ବ୍ରତୀ ହେଲି । ଜନସାଧାରଣଙ୍କ ଦାନରେ ମହାବିଦ୍ୟାଳୟର ଗରିବ ଛାତ୍ରଛାତ୍ରୀଙ୍କୁ ମୂଳ ଗ୍ରନ୍ଥମାନ ପଢ଼ିବାର ସୁଯୋଗ ଯୋଗାଇ ଦେବାପାଇଁ ଗୋଟିଏ 'ଧାରୁଆ ପାଠାଗାର' ସ୍ଥାପନ କଲି । ମହାବିଦ୍ୟାଳୟର କର୍ତ୍ତୃପକ୍ଷ ମଧ୍ୟ ଏଥିରେ ସହଯୋଗର ହାତ ବଢ଼ାଇ ଥିଲେ । ଛାତ୍ରଛାତ୍ରୀମାନେ ବିଶେଷ ଉପକୃତ ହୋଇଥିଲେ ।

ସେତେବେଳେ ମହାବିଦ୍ୟାଳୟର ଅଧକ୍ଷ ଶ୍ରୀଯୁକ୍ତ ନରସିଂହ ପାଢ଼ୀ ଦେଇଥିବା ପ୍ରଶଂସାପତ୍ର ଏହିଠାରେ ଉଲ୍ଲେଖ କରୁଛି ।

Narasinga Padhi M.A., L.T.
PRINCIPAL.

PHONE NO 67.
KHALLIKOTE COLLEGE,
BERHAMPUR, (GANJAM).
Dated 28-9-1954.

Sri Bipin Behari Rath was a student in this College for one year. He comes of a highly respectable family He has impressed me as an intelligent, industrious and well behaved student. He was the President of the College Union during 1951-52 and as President he exhibited considerable power of organisation. That year the College Union functioned very well and he was awarded a Prize for the efficient management of the Union. He was also responsible to secure Rs.1000/- (one thousant) from a theatrical company by organising a benefit performance by them and this amount was utilised to start a lending library in the College. He is a young man of varied interests and activities and I am sure he will do very well any work he undertakes. His character and conduct are quite satisfactory.

Principal.

୧୯୫୨ରେ ପୁଣି ରେଭେନ୍ସା ମହାବିଦ୍ୟାଳୟ ଜରିଆରେ ପରୀକ୍ଷା ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକ ଡିଗ୍ରୀ ହାସଲ କଲି । ମଧୁସୂଦନ ଆଇନ୍ ମହାବିଦ୍ୟାଳୟରେ ପ୍ରବେଶ କଲି । ୧୯୫୩-୫୪ ବର୍ଷ ପାଇଁ ମଧୁସୂଦନ ଆଇନ୍

ମହାବିଦ୍ୟାଳୟ ଛାତ୍ରସଂଘର ସଭାପତି ନିର୍ବାଚିତ ହେଲି । ସେଠାରେ ମଧ୍ୟ ଗରିବ ଛାତ୍ରଛାତ୍ରୀଙ୍କ ପାଇଁ ଗୋଟିଏ ଧାରୁଆ ପାଠାଗାର ପ୍ରତିଷ୍ଠା କରାଇଲି । ଉତ୍କଳ ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ପ୍ର. ଡଃ ପରଶୁରାମ ମିଶ୍ର ଯେଉଁ ପ୍ରଶଂସାପତ୍ର ପ୍ରଦାନ କରିଥିଲେ ସେଥିରେ ଏହା ବିଷୟରେ ବର୍ଣ୍ଣନା କରାଯାଇଥିଲା । ତା'ର ନକଲ ଏଠାରେ ଉଲ୍ଲେଖ କରୁଛି ।

Lt.Col.,Dr.P.Misra, M.Sc.(Cal.)
Ph.D. (Leeds)

Vice-Chancellor.



UTKAL UNIVERSITY
CUTTACK

Dated 27th Septr.

Shri Bipin Bihari Rath was a student of the M.S.Law college of the Utkal University during the sessions 1952-53 and 1953-54 and has completed his lectures in Law Part II. He was the President of the Law College Union during the session 19[illegible]. He is a smart young man with a broad outlook and is very hard working. He was taking very active part in debates and social activities of the M.S.Law College. Shri Rath worked very sincerely in order to improve the general and cultural welfa[re] of the students. He organised and led a batch of volunteer[s] to do social work at Konarak during Magha Saptami Mela and a[lso] at Balijatra, Cuttack. It is due to his efforts that a lend[ing] library is going to be established for the M.S.Law College.

His conduct and character are satisfactory.

I wish him success in life.

[signature]

VICE-CHANCELLOR.

କିନ୍ତୁ ଦୁଃଖର ବିଷୟ ବହୁ ବର୍ଷ ହେଲା ବ୍ରହ୍ମପୁର ଖଲ୍ଲିକୋଟ ମହାବିଦ୍ୟାଳୟ (ବର୍ତ୍ତମାନ ଏକ ସ୍ୱୟଂଶାସିତ ଅନୁଷ୍ଠାନ) ଓ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ମଧୁସୂଦନ ଆଇନ୍ ମହାବିଦ୍ୟାଳୟରେ ୧୯୫୧ ଓ ୧୯୫୩ରେ ଯଥାକ୍ରମେ ପ୍ରତିଷ୍ଠା କରାଇଥିବା 'ଧାରୁଆ ପାଠାଗାର'ର ଚିହ୍ନବର୍ଣ୍ଣ ନାହିଁ । କୁଆଡ଼େ ଗଲା କେହି କହିପାରୁ ନାହାନ୍ତି ଏହା ଏକ ବିସ୍ମୟର ବିଷୟ ସତରେ କ'ଣ ଆଉ ଗରିବ ଛାତ୍ରଛାତ୍ରୀ ନାହାନ୍ତି ନା ଆଜିକାଲିର ଛାତ୍ରଛାତ୍ରୀମାନଙ୍କ ପାଇଁ ମୂଳ ଗ୍ରନ୍ଥର ଆବଶ୍ୟକତା ଆଉ ନାହିଁ ?

ନାରାୟଣ କମଳା ନିବାସ
କନିକା ସଡ଼କ, କଟକ–୭୫୩୦୦୮



# 'ରାଧା' ଏକ ତୁଳନାତ୍ମକ ଅଧ୍ୟୟନ

ନନ୍ଦକିଶୋର ସିଂହ

ବୈଷ୍ଣବ ଧର୍ମରେ ରାଧାଙ୍କର ସ୍ଥାନ ଯେପରି ଗୁରୁତ୍ୱପୂର୍ଣ୍ଣ ବୈଷ୍ଣବ କବିଙ୍କ ଲେଖନୀ ମୁନରେ ସେହିପରି ରାଧାଙ୍କ ଚରିତ୍ର ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛି । ବିଭିନ୍ନ ଭାରତୀୟ ସାହିତ୍ୟ ପରି ଅସମୀୟା ଏବଂ ଓଡ଼ିଆ ସାହିତ୍ୟରେ ମଧ୍ୟ ରାଧାଙ୍କ ପ୍ରଭାବ କମ୍ ନୁହେଁ । ସେ ହେଉଛନ୍ତି ଚିରନ୍ତନ ନାୟିକା । ସେ ତ୍ୟାଗ, ନିଷ୍ଠା ଅଭିମାନ ଏବଂ ସର୍ବୋପରି ଏକ ପ୍ରେମମୟ ମୂର୍ତ୍ତିର ଆଧାର । ବାସ୍ତବିକ ଭାରତୀୟ ସାହିତ୍ୟରେ ଯେପରି ନାରୀ ଚରିତ୍ର ଚିତ୍ରଣରେ କବି, ଲେଖକଗଣ ବିଶେଷ ପାରଦର୍ଶିତା ଦର୍ଶାଇଛନ୍ତି । ସେମାନଙ୍କ ମଧ୍ୟରେ ରାଧା ହିଁ ଏକ ଅତି ମାନସିକ ରହସ୍ୟମୟ ଚରିତ୍ର । ଏହି ରାଧାଙ୍କ ଉତ୍ପତ୍ତି, ସ୍ଥିତି ଓ ସ୍ୱରୂପ ସମ୍ପର୍କରେ ବହୁ ସମାଲୋଚକ, ଦାର୍ଶନିକ ତଥା ଭାବୁକ ନିଜ ନିଜର ସ୍ୱାଧୀନ ମତ ବ୍ୟକ୍ତ କରିଛନ୍ତି । ମାତ୍ର ପ୍ରାଚୀନ ଅସମୀୟା ବୈଷ୍ଣବ ସାହିତ୍ୟରେ ରାଧାଙ୍କଠାରୁ ଉତ୍କଳୀୟ ଏବଂ ବଂଗୀୟ ବୈଷ୍ଣବ କବିଙ୍କର ରାଧା ଯଥେଷ୍ଟ ଫରକ ।

ଉତ୍କଳୀୟ ଓ ବଂଗୀୟ ବୈଷ୍ଣବ କବିଙ୍କ ଲେଖନୀରେ ଆଧ୍ୟାତ୍ମିକ ଲୀଳା ଭୂମିରେ ରାଧା ଅନେକ ସମୟରେ ସାମାଜିକ ରାଧାରେ ପରିଣତ ହୋଇଯାଇଛନ୍ତି । ଏହି ରାଧା କେତେବେଳେ ଦେହଧାରିଣୀ ଏକ ଅପୂର୍ବ ସୌନ୍ଦର୍ଯ୍ୟମୟୀ ତ କେତେବେଳେ ଅତି ମାନସିକ ଚାରଣ ଭୂମିର ବିଚରଣକାରୀ ପରମ ବୈଷ୍ଣବୀ ଭଗବତ ଆମୋଦନ କାରିଣୀ ପରମା ପ୍ରକୃତି । ସାମୀପ୍ୟ, ସାଯୁଜ୍ୟ ଆଦି ସମସ୍ତ ରାଗର ଆଦର୍ଶ ଦ୍ୱୈତ ଅଦ୍ୱୈତ ଏବଂ ବିଶିଷ୍ଟ ଦ୍ୱୈତ ଦର୍ଶନର ମିଳନ ଭୂମି । ଏହି ରାଧାଙ୍କ ଚରିତ୍ରରେ ଉଭୟ ସ୍ୱକୀୟା ଏବଂ ପରକୀୟା ପ୍ରୀତିର ଆରୋପ କରାଯାଇଛି । କେଉଁଠି ଏହା ବୃଷଭାନୁ ଜେମା ତ କେଉଁଠି ଚନ୍ଦ୍ରଶେଣାଙ୍କ ପତ୍ନୀ । ବୃଷଭାନୁ ଜେମା ଅବିବାହିତା ରାଧାଙ୍କର କୁମାରୀ ଜୀବନର ଚିର ଈପ୍ସିତ ସ୍ୱପ୍ନର ରାଜକୁମାର ହେଉଛନ୍ତି ପ୍ରେମ ରସର ଅବତାର ଶ୍ରୀକୃଷ୍ଣ ଏବଂ ଗୋପାଳ ଗୃହିଣୀ ଚନ୍ଦ୍ରଶେଣା ପତ୍ନୀ ରାଧା । ପରକୀୟା ପ୍ରୀତିରେ ଶ୍ରୀକୃଷ୍ଣଙ୍କର ପ୍ରେମାକାଂକ୍ଷିଣୀ । ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ରାଧା ଚିରଯୌବନା । ତାଙ୍କର ଚତୁର୍ଥ ଅବସ୍ଥା ନାହିଁ । ଚିର ଯୌବନା ରାଧିକା ସତେ ଅବା ଚିର ବସନ୍ତ ଧାମରେ ସଦା ବେଳେ ଶ୍ରୀକୃଷ୍ଣଙ୍କର ଚିର ରସରେ ନିମଜ୍ଜମାନ । ମୌଳିକ ଭାବରେ ବିଚାରକୁ ନେଲେ ରାଧା ଏକ ଆଧ୍ୟାତ୍ମିକ ଚରିତ୍ର । ମାତ୍ର ଭକ୍ତଗଣ ଏହାଙ୍କୁ ମାନବ ଦେହଧାରିଣୀ ଭାବେ ଦେଖି ଆସିଛନ୍ତି । ପ୍ରକୃତରେ ରାଧାନାମ୍ନୀ କୌଣସି ନାରୀଙ୍କର ନାମ, ମହାଭାରତ, ହରିବଂଶ, ବିଷ୍ଣୁ ପୁରାଣ ଆଦିରେ ଉଲ୍ଲିଖିତ ନାହିଁ ।

ଏପରିକି ଭାଗବତ ରାସ ଲୀଳାରେ ଅନ୍ୟାନ୍ୟ ଅନେକ ନାୟିକାଙ୍କ ନାମୋଲ୍ଲେଖ ଥିଲେ ହେଁ ରାଧାଙ୍କର ନାମ ଉଲ୍ଲେଖ ନାହିଁ । କେବଳ ମାତ୍ର ରାଧାନାମ ଉଲ୍ଲେଖକାରୀ ବ୍ରହ୍ମବୈବର୍ତ୍ତ ପୁରାଣ ଅଟେ ଅର୍ବାଚୀନ । ଆଚାର୍ଯ୍ୟ ଭଟ୍ଟାଚାର୍ଯ୍ୟଙ୍କର ଦ୍ୱାରା ଲିଖିତ ଏହି ପାଶ୍ଚାତବର୍ତ୍ତୀ ବ୍ରହ୍ମବୈବର୍ତ୍ତ ପୁରାଣକୁ ଆଧାର କରି ଜୟଦେବ ବିଦ୍ୟାପତି ପ୍ରଭୃତି ନିଜ ନିଜ ଅଭିରୁଚି ଅନୁସାରେ ଅଭିନବ କଳ୍ପନା ରଂଗରେ ରଂଗାଇ ଅଭିନବ ରସରେ ରସାଣିତ କରି ରାଧାଙ୍କର ମୂଳ ଚରିତ୍ରକୁ ଏକ ବିଚିତ୍ର ଭାବରେ ଚିତ୍ରଣ କରିଛନ୍ତି ।

ପ୍ରାଚୀନ ଅସମୀୟା ସାହିତ୍ୟରେ ରାଧା ଚରିତ୍ର ବିକାଶ ସାଧନ ଯେ ଆଦୌ ମିଳେ ନାହିଁ, ଏକଥା କହିଲେ ଭୁଲ୍ ହେବ । କିନ୍ତୁ ଅସମୀୟା କବିଙ୍କର କାବ୍ୟରେ ରୂପାୟିତ ଚରିତ୍ରରେ ଏକ ସ୍ୱତନ୍ତ୍ରତା ରହିଛି । ଜୟଦେବ, ବିଦ୍ୟାପତି, ଚଣ୍ଡୀଦାସ ଆଦି ରାଧାଙ୍କୁ ମୁଖ୍ୟତଃ ଆଦି ରସାତ୍ମକ ରସରେ ରସାଣିତ କରି ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ପ୍ରେମିକା ରୂପେ ଚିତ୍ରଣ କରିଛନ୍ତି ।

କେଉଁ କବି କହିଛନ୍ତି –

‘ରୂପ ଲାଗି ଆଖି ଝୁରେ ଶୁଣେ ମନ ମୋର
ପ୍ରତି, ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର
ନିୟାତ ପରଶ ଲାଗି ହିୟା ମୋର କାନ୍ଦେ
ପରାଣ ପିରତୀ ଲାଗି ଥିର ନାହି ବାନ୍ଧେ ।’

ବୈଷ୍ଣବୀୟ କବି ଚୈତନ୍ୟ ଚରିତ୍ର ସ୍ତବରେ ରାଧାଙ୍କୁ ହ୍ଲାଦିନୀ ଶକ୍ତି ରୂପେ ଚିତ୍ରଣ କରିବାକୁ ଯାଇ ଉଲ୍ଲେଖ କରିଛନ୍ତି :

‘ହ୍ଲାଦିନୀ ସାର୍ ଅଂଶ ତାର ପ୍ରେମନାମ୍
ଆନନ୍ଦ ଚିନ୍ମୟ ଅଂଶ ପ୍ରେମରେ ଆଖ୍ୟାନ୍
ପ୍ରେମରେ ପରମ ସାର ମହାଭାବ ଜାନୀ
ସେଇ ମହାଭାବ ରୂପା ରାଧୀ ଠାକୁରାନୀ ।’

କବି ଜୟଦେବ ଗୀତଗୋବିନ୍ଦରେ ରାଧାକୃଷ୍ଣ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି,

ଦୋର୍ଭ୍ୟାଂ ସଂଯମିତଃ ପୟୋଧର
ଭରେଣା ପୀଡ଼ିତଃ ପାଣିଜୈ
ରାବିଦ୍ଧୋଃ ଦର୍ଶନୈଃ କ୍ଷଣଧର ପୁଟଃ
ଶ୍ରୋଡି ତଟେ ନାହତଃ
ହସ୍ତେନା ମମିତାଃ କୁଚେ ଅଧର
ସୁଧା ପାନେ ନ ସମୋହିତଃ
କାନ୍ତଃ କାମପି ତୃପ୍ତି ମାପ
ତଦୋହା କାମସ୍ୟ ବାମାଗତିଃ

ଅର୍ଥାତ୍ କୃଷ୍ଣ ରାଧା ରତିପୀଡ଼ିତ କାମାଗ୍ନି ଜର୍ଜରିତ କୁଚଭାରରେ ନିପୀଡ଼ିତ ନଖାଘାତରେ କ୍ଷତବିକ୍ଷତ ଓ ନିତମ୍ବ ଚାଳନାରେ ଆହତ ହୋଇ ମଧ୍ୟ ରାଧାଙ୍କର ଅଙ୍ଗ ଆକର୍ଷଣ କରି ସଂଯତ କରାଇ ଦେଇଥିବା ରାଧାଙ୍କର ଅଧର ଚୁମ୍ବନରେ ମୋହିତ ।

ଏହିଭଳି ବୈଷ୍ଣବ କବିମାନଙ୍କ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ବହୁ ଓଡ଼ିଆ କବି ରାଧାକୃଷ୍ଣଙ୍କର ଦେହଧାରୀ ପରକୀୟା ପ୍ରେମ ବର୍ଣ୍ଣନାରେ ଶତମୁଖର ହୋଇ ଉଠିଛନ୍ତି । କେହି କେହି ମଧ୍ୟ ଏହି ପ୍ରେମକୁ ଅପ୍ରାକୃତ ପ୍ରେମ ରୂପେ ବର୍ଣ୍ଣନା କରି କହିଛନ୍ତି ।

‘ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି’

କିଏ ପୁଣି ରାଧା ଚରିତ୍ରକୁ ସାଧାରଣ ସାମାଜିକ ସ୍ତରକୁ ଓହ୍ଲାଇ ଆସି ଜଣେ ସାଧାରଣ ପତିପ୍ରେମ ପାଗଳିନୀ ନାରୀ ପରି ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି ।

‘ଜୀବନ ଥିଲେ ଏତିକି କରିବ
ଶ୍ୟାମ ନାମ ମୋର ହୃଦେ ଲିହିବ
ଶ୍ୟାମବଂଶୀ ଶୁଭୁଥିବ ଯେଣିକି
କର୍ଣ୍ଣ କରି ଦେଇଥିବ ତେଣିକି ।’

କିଏ ପୁଣି ଲେଖିଛନ୍ତି –

‘ଶ୍ୟାମ ଅପବାଦ ମୋତେ ଲାଗିଥାଉ
ନିତି ସେହି ଚିନ୍ତାରେ ମୋ ଦିନ ଯାଉରେ’

ମାତ୍ର ଅସମୀୟା କବି ଶ୍ରୀମାନ ଶଙ୍କର ଦେବଙ୍କ ଦୃଷ୍ଟିରେ’ ରାଧା ସମ୍ପୂର୍ଣ୍ଣ ଭିନ୍ନ ଭାବରେ ଚିତ୍ରିତ । ଶ୍ରୀକୃଷ୍ଣ ତାଙ୍କର ଅନୁରକ୍ତା ରାଧାଦେବୀଙ୍କୁ ଅନ୍ତର୍ଦ୍ଧାନ ହୋଇଥିବା କଥା ଶଙ୍କର ଦେବ ଯେପରି ବର୍ଣ୍ଣନା କରିଛନ୍ତି, ତାହାର ସୂଚନା ବିଷ୍ଣୁ ପୁରାଣରେ ମିଳିଥାଏ ।

ରାଧା ଶବ୍ଦଟି ରାଧ୍ ଧାତୁରୁ ନିଷ୍ପନ୍ନ ହୋଇଛନ୍ତି । ରାଧ୍ ଧାତୁର ଧାତୁଗତ ଅର୍ଥ ଆରାଧନା ବା ପୂଜା କରିବା । ଅର୍ଥାତ୍ ଯିଏ କୃଷ୍ଣଙ୍କର ବିଶେଷ ଆରାଧିକା ସେହି ରାଧା । ମାତ୍ର ଏହି କୃଷ୍ଣଙ୍କର ବିଶେଷ ଆରାଧିକା ରାଧିକାଙ୍କର ବର୍ଣ୍ଣନାର ନାମଗନ୍ଧ ଅସମୀୟା ବୈଷ୍ଣବ ଧର୍ମରେ ଦେଖିବାକୁ ମିଳେ ନାହିଁ । କାରଣ ହାସ୍ୟ ଭାବର ଭିତ୍ତି ଉପରେ ଆସାମରେ ବୈଷ୍ଣବ ଧର୍ମର ଭିତ୍ତି ଦୃଢ଼ ଭାବରେ ପ୍ରତିଷ୍ଠିତ । କେବଳ ଭାଗବତ ପରି ଅସମୀୟା ବୈଷ୍ଣବ କବି ବ୍ରଜବାସିନୀ ଗୋପୀନାମ ଉଲ୍ଲେଖ କରିଥିଲେ ହେଁ ରାଧାନାମ ଉଲ୍ଲେଖ କରି ନାହାନ୍ତି । କେତେକ ଅସମୀୟା ସମାଲୋଚକ ଶ୍ରୀକୃଷ୍ଣଙ୍କୁ ପୁରୁଷ ଓ ରାଧାଙ୍କୁ ପ୍ରକୃତି ରୂପେ ଚିତ୍ରଣ କରିବାର ଦେଖାଯାଏ ।

ଶଙ୍କର ଦେବ ଅବଶ୍ୟ ରାସ ଲୀଳାରେ ଶ୍ରୀକୃଷ୍ଣଙ୍କ କ୍ଷେତ୍ରରେ କାମାତୁର ଶବ୍ଦଟି ବାରମ୍ବାର ବ୍ୟବହାର କରିଛନ୍ତି । ଏହିଠାରେ ବିଷ୍ଣୁ ପୁରାଣଠାରୁ ଭିନ୍ନ ଭାବରେ ଅସମୀୟା କବି କୃଷ୍ଣଙ୍କୁ ଚିତ୍ରଣ କରିଥାଏ ।

ଅପର ପକ୍ଷରେ ବେଦର ଏକେଶ୍ୱରବାଦ ଶ୍ରୀମଦ୍ ଭାଗବତ, ହରିବଂଶ, ବିଷ୍ଣୁପୁରାଣ ଆଦିର ମୂଳ ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ବୈଷ୍ଣବ ଧର୍ମ ମତରେ ବିଷ୍ଣୁ ହିଁ ଏକମାତ୍ର ଦେବତା । ଏହି ଭାବଧାରାକୁ ଆସାମରେ ବୈଷ୍ଣବ ଧର୍ମ ଯେତିକି ଗ୍ରହଣ କରି ନେଇଛି ଉତ୍କଳୀୟ ତଥା ବଂଗୀୟ ବୈଷ୍ଣବ ଧର୍ମରେ ତାହାର ପ୍ରଭାବ ଦେଖାଯାଏ । ବଂଗଳା ମୈଥିଳୀ ଆଦି ବୈଷ୍ଣବ ଧର୍ମରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିର ଆରାଧନା ଦେଖାଯାଏ । ମାତ୍ର ଆସାମରେ ଏ ପ୍ରକାର ଉପାସନା ବିରଳ । ଅସମୀୟା ବୈଷ୍ଣବ

କବି ଦୃଷ୍ଟିରେ ରାଧା ପରକୀୟା ପ୍ରୀତି ପାଗଳିନୀ କାହ୍ନୁବଂଶୀ ଅନୁରାଗିଣୀ ନହୋଇ ସ୍ୱକୀୟା ରୀତିରେ ଆବଦ୍ଧ । ଅସମୀୟା କବି ଶଙ୍କର ଦେବ ମାଧବ ଦେବ ରାମ ସରସ୍ୱତୀ ଆଦିଙ୍କ ରଚନାରେ ରାଧାକୃଷ୍ଣଙ୍କର ଶୃଙ୍ଗାର ରସ କରିବାରେ ମଧୁର ଭାବ ବିକାଶ ସାଧନ ଆଦୌ ପରିଲକ୍ଷିତ ହୁଏ ନାହିଁ । ଓଡ଼ିଆ ତଥା ବଂଗୀୟ କବିଙ୍କ ନଗ୍ନ କାମୁକର ନିର୍ଲଜ ବୁଭୁକ୍ଷା ଅଥବା ପ୍ରେମ ବ୍ୟଥା ବିଜଡ଼ିତ ବିରହ କାତର ସାଧାରଣ ପୁରୁଷ ନାରୀର ବର୍ଣ୍ଣନା ଦେଖିବାକୁ ମିଳେ ନାହିଁ । ଅନ୍ୟ ପକ୍ଷରେ ଅସମୀୟା କବିଙ୍କ ବର୍ଣ୍ଣିତ ରାଧାକୃଷ୍ଣଙ୍କ ମଧ୍ୟରେ ରହିଛି ଭାଇ ଭଉଣୀର ଅନାବିଳ ସ୍ନେହ । ଗୀତଗୋବିନ୍ଦର ମୂଳ ଉତ୍ସ ଜୟଦେବ ହୋଇବାରୁ କବି ରାମ ସରସ୍ୱତୀ ସାମାନ୍ୟ ପ୍ରଭାବିତ ହୋଇଥାଇ ପାରନ୍ତି । ଅତ୍ର ଜୟଦେବଙ୍କ ଗୀତଗୋବିନ୍ଦର ପ୍ରେମ ଲୀଳା ଓ ମାନ ଅଭିମାନ ରାମ ସରସ୍ୱତୀଙ୍କ ଗୀତଗୋବିନ୍ଦରେ ନାହିଁ । ତାଙ୍କ ମତରେ ଗୋପୀମାନେ ତ୍ରେତା ଯୁଗର ମୁନିଋଷି । ଦଣ୍ଡକାରଣ୍ୟରେ ସେମାନେ ଶ୍ରୀରାମଙ୍କୁ ସ୍ୱାମୀ ରୂପେ ପାଇବାକୁ କାମନା କରିଥିବାରୁ ଦ୍ୱାପର ଯୁଗରେ ମନୋରଥପୂର୍ଣ୍ଣ ହେବାର ଆଶୀର୍ବାଦ ପାଇଥିଲେ । ସେହି ଆଶୀର୍ବାଦ ବଳରେ ସେମାନେ ଗୋପୀଭାବରେ ଦ୍ୱାପର ଯୁଗରେ ଜନ୍ମ ନେଇଥିଲେ । ତେଣୁ ରାମ ସରସ୍ୱତୀଙ୍କ ଗୀତଗୋବିନ୍ଦ ଜୟଦେବ ଗୀତଗୋବିନ୍ଦ ଭିତରେ ଆକାଶ ପାତାଳ ପ୍ରଭେଦ । ଏଥିରେ ଅଛି ଅନାବିଳ ସୌନ୍ଦର୍ଯ୍ୟର ନିର୍ମଳ ନିର୍ଝରିଣୀ । ଜୟଦେବଙ୍କ ଗୀତଗୋବିନ୍ଦ ପ୍ରେମ ରସାତ୍ମକ ହୋଇଥିବା ବେଳେ ରାମ ସରସ୍ୱତୀଙ୍କ ଗୀତଗୋବିନ୍ଦ ଭକ୍ତି ରସାତ୍ମକ ।

ଉତ୍କଳୀୟ ବୈଷ୍ଣବ କବି ହୁଅନ୍ତୁ ବା ବଂଗୀୟ ବୈଷ୍ଣବ କବି ହୁଅନ୍ତୁ ରାଧାକୃଷ୍ଣଙ୍କ ପ୍ରେମ ବର୍ଣ୍ଣନାରେ ମିଳନଠାରୁ ବିରହରେ ନୈକଟ୍ୟରୁ ବ୍ୟବଧାନରେ ଏବଂ ଚାକ୍ଷୁସଠାରୁ ଆଦର୍ଶନରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ଏ ବିରହର ମୂଳ ସ୍ୱରୂପ ହେଉଛି ପରକୀୟା ପ୍ରେମ । ଏ ପ୍ରେମ ପାଇଁ ସମାଜର ସ୍ୱୀକୃତି ନାହିଁ । ଦେଶାଚାର, କୁଳାଚାର ସମାଜର ଶାସ୍ତ୍ର ଅନୁମୋଦନ ନାହିଁ । ଅଥଚ ଏହି ନିଷିଦ୍ଧ ପ୍ରେମ ରାମଙ୍କୁ କରିଛି ଦୁଃସାହସୀ । ଏହି ଦୁଃସାହସୀ କୁଳଟା ରାଧା ସବୁ କବିଙ୍କ ଲେଖନୀରେ ଧରା ଦେଇଥିବା ବେଳେ ଅସମୀୟା କବି ଏ ଦିଗରେ ସମ୍ପୂର୍ଣ୍ଣ ନିରବ ।

ରାମ ସରସ୍ୱତୀଙ୍କ ପୁତ୍ର ଦ୍ୱିଜ କଳପଚନ୍ଦ୍ର ରାଧା ବିଜୟ ନାମକ କାବ୍ୟରେ ରାଧାଦେବୀଙ୍କୁ ଏକ ଭଗବତ ପ୍ରେମର ପୂର୍ଣ୍ଣ ପ୍ରତିଛବି ରୂପେ ବର୍ଣ୍ଣନା କରିଛନ୍ତି । ଭକ୍ତ ଭାବ ହିଁ ଏହି ବର୍ଣ୍ଣନାର ମୂଳାଧାର । ରୁକ୍ମଣୀଙ୍କ ଅନୁରୋଧରେ ଶ୍ରୀକୃଷ୍ଣ ତାଙ୍କ ଶ୍ରେଷ୍ଠା ଭକ୍ତ ରାଧାଙ୍କୁ ଆଣିବା ପାଇଁ ଉଦ୍ଧବଙ୍କୁ ପଠାଇଛନ୍ତି । ଉଦ୍ଧବ ଯାଇ ଯୋଗସାଧିକା ରାଧାଙ୍କୁ ଦେଖିଲେ –

ଆଛନ୍ତ ଆସନେ ରାଧିକା ଗୋସାନୀ
ନଦୟ ନା ଛାଡ଼େ ସୁଖେ ରାମକୃଷ୍ଣ ବାଣୀ

X X X

କଣେ କ୍ଷଣେ ରାଧିକା କୃଷ୍ଣ ତ ଚିତ୍ତ ଦେଲା
ଅଛି ଲୟ ଦେହ ଗେହ ସବ୍ଦେ ପାହରିଲା ।

ପ୍ରକୃତରେ ଅସମୀୟା କବି ରାଧା କୃଷ୍ଣଙ୍କର ମୋହନ ବେଣୁରେ ରାଧା ସ୍ୱର ଶୁଣି ଜଟିଳା କୁଟିଳାଙ୍କ ବାରଣ ନମାନି କୂଳ ତେଜି ଯମୁନା କୂଳକୁ ଧାଇଁ ଯାଏନା । ଅଥବା ପୂର୍ଣ୍ଣ ଜ୍ୟୋତ୍ସ୍ନାର ମାଦକତାରେ ରୋମାଞ୍ଚିତ ହୋଇ ରାସ କୁଞ୍ଜକୁ ପ୍ରୀତି ରଚିବାକୁ ଧାଇଁ ଯାଏନା । ସେ ଯୋଗାସନରେ ବସି କୃଷ୍ଣ କୃଷ୍ଣ ଜପି ଦେହମନକୁ ପାଶୋରି ଥାଏ ।

'ତେଣୁ ରାଧିକାଙ୍କୁ ଦେଖି ଉଦ୍ଧବ ମଧ ଭାବେ
କେଶବର ପ୍ରିୟାଏନ୍ତେ ଭକତ ଏକାନ୍ତ
ଭାଲେ ତୋ ସଦାୟ କୃଷ୍ଣଆଙ୍କ ସୁମରନ୍ତ ।'

ପରମାତ୍ମା ସହିତ ଜୀବାତ୍ମାର ଏକୀଭୂତ ହେବାର ଦୁର୍ବାର କାମନା ଭଗବାନଙ୍କ ପ୍ରତି ଭକ୍ତର ପ୍ରଗାଢ଼ ଆକୁଳତା ଓ ବ୍ୟାକୁଳତା ।

ନାଟ୍ୟକାର ତଥା କବି ଶଙ୍କରଦେବ ଭାଗବତ ପରି କୌଣସିଥିରେ ରାଧାଙ୍କର ନାମ ଉଲ୍ଲେଖ କରି ନାହାନ୍ତି । କିନ୍ତୁ (କେଳି ଗୋପାଳ) ନାଟକରେ ଗୋପିନୀମାନଙ୍କର ଗର୍ବ ଖର୍ବ କରିବା ପାଇଁ ଶ୍ରୀକୃଷ୍ଣଙ୍କର ଅନ୍ତର୍ଦ୍ଧାନ ହେବାର ପ୍ରସଙ୍ଗରେ ରାଧାନାମ ଉଲ୍ଲେଖ କରିବାକୁ ଯାଇ ଲେଖିଛନ୍ତି –

'ପ୍ରେମର କତି ହୌକ୍ ବୁଲି କହୌଁ
ରାଧାନାମ ଏକ ଗୋପିକା ହୃଦୟେ ବାନ୍ଧି କହେଁ
ତଥା ଯେ ଅନ୍ତର୍ଦ୍ଧାନ ହୌଲ ।'

କାଳିରାମ ମେଧି ଏହି ରାଧା ନାମଟିର ଉଲ୍ଲେଖକୁ ଏକ ପ୍ରକ୍ଷିପ୍ତ ବୋଲି କହନ୍ତି । ତାଙ୍କ ମତରେ କେଳି ଗୋପାଳ ନାଟକର ମୂଳ ଶ୍ରୀମଦ୍‌ଭାଗବତ ପୁରାଣ । ଶ୍ରୀମଦ୍ ଭାଗବତରେ ରାଧାଙ୍କ ନାମୋଲ୍ଲେଖ ଆଦୌ କରି ନଥିବା ବେଳେ ଶଙ୍କର ଦେବ ଏପରି ରାଧାନାମ ଉଲ୍ଲେଖ କରିବା କଥାଟା ସନ୍ଦେହଜନକ । ଅସମୀୟା ବୈଷ୍ଣବ କବି ଉତ୍କଳୀୟ ତଥା ବଂଗୀୟ ବୈଷ୍ଣବ କବି ପରି ରାଧାକୃଷ୍ଣଙ୍କର ହ୍ଲାଦିନୀ ଶକ୍ତି ବୋଲି ସ୍ୱୀକାର କରି ନାହିଁ କିମ୍ବା ଗୌଡ଼ୀୟ ବୈଷ୍ଣବ ରାଧାଙ୍କ ସଂଯୋଗରେ, କୃଷ୍ଣଙ୍କ ପୂର୍ଣ୍ଣତା

ବିଚାରୁଥିବା ବେଳେ ଆସାମର ବୈଷ୍ଣବ କୃଷ୍ଣ ହିଁ ନିଜେ ପୂର୍ଣ୍ଣାଙ୍ଗ ବିଚାର କରିଥାଏ । ତା' ମତରେ କୃଷ୍ଣସ୍ତୁ ଭଗବାନ ସ୍ୱୟଂ । ସେ ଗୁଣାତ୍ମକ ହୋଇ ମଧ୍ୟ ଗୁଣାତୀତ । ସଗୁଣ ହୋଇ ମଧ୍ୟ ନିର୍ଗୁଣ ।

ତେଣୁ ଶଙ୍କର ଦେବଙ୍କ କେଲି ଗୋପାଲ ନାଟକରେ ଉଲ୍ଲେଖ ଏକ ଆକସ୍ମିକ ଘଟଣା । ଅନ୍ୟାନ୍ୟ ପରବର୍ତ୍ତୀ କୌଣସି ଟିକାକାରଙ୍କ ଆଦର୍ଶକୁ ଅନୁସରଣ କରି ଏହା ବ୍ୟବହୃତ ହୋଇ ପାରିଥାଏ ବୋଲି ବହୁ ସମାଲୋଚକଙ୍କ ମତ । ସେହିପରି ଉତ୍କଳୀୟ ତଥା ବଂଗୀୟ ବୈଷ୍ଣବ କବିମାନେ ରାଧାକୃଷ୍ଣ ଚିତ୍ରଣରେ ଆଦି ରସ ବର୍ଣ୍ଣନାର ବାହୁଲ୍ୟ ଦେଖାଇ ପରକୀୟା ପ୍ରୀତିର ପରାକାଷ୍ଠା ପ୍ରତିପାଦନ କରୁଥିବା ବେଳେ ଅସମୀୟା କବି ମାଧବ ଦେବ ତାଙ୍କର ବରଗୀତ ନାଟକାଦିରେ ରାଧାକୃଷ୍ଣଙ୍କ ଭିତରେ ଯେଉଁ ଶୁଦ୍ଧପ୍ରେମର ଉଲ୍ଲେଖ ସାଧନ କରିଛନ୍ତି, ସେଥିରେ ଦୈହିକ ଆଦି ରସର ଚିହ୍ନବର୍ଣ୍ଣ ନାହିଁ । ବରଂ ଭରି ରହିଛି ଶୈଶବ ଲୀଳାର ବାତ୍ସଲ୍ୟ । ମାଧବ ଦେବ ସଂସାର ବୈରାଗୀ । ତେଣୁ ତାଙ୍କର କୌଣସି କୌଣସି ଲେଖାରେ ସହଜ ସରଳ ଗତିରେ ସ୍ୱାଭାବିକତା ରକ୍ଷା କରି ମାଧୁର୍ଯ୍ୟ ଭାବକୁ ଅନୁଭୂତି ସିକ୍ତ ଭାବେ ବର୍ଣ୍ଣନା କରିଛନ୍ତି । ମୋଟ ଉପରେ ମାଧବଦେବଙ୍କ କୃଷ୍ଣ କିଶୋର ନହୋଇ ବାଳକ ହୋଇ ଥିବାରୁ ରାଧାଙ୍କ ସଙ୍ଗେ ପ୍ରୀତିକ୍ରୀଡ଼ା ବର୍ଣ୍ଣନାର ପରିବେଶ ସୃଷ୍ଟି ତାଙ୍କ କାବ୍ୟ କବିତାରେ ଆଦୌ ଦେଖାଯାଏ ନାହିଁ । ତେଣୁ ଅସମୀୟା କବିର ଲେଖନୀରେ ରାଧାର ଆଦୌ ଗୁରୁତ୍ୱ ନାହିଁ । ରାଧା ଚରିତ୍ର ଆମର ବୈଷ୍ଣବ ସାହିତ୍ୟଠାରୁ ଆରମ୍ଭ କରି ରୀତି ଯୁଗର ବିଦଗ୍ଧ ଚିନ୍ତାମଣିକାର ଅଭିମନ୍ୟୁ ତଥା ଦୀନକୃଷ୍ଣଙ୍କ ଲେଖନୀରେ ଯେପରି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରିଛି, ଅସମୀୟା କବିଙ୍କ ଲେଖନୀରେ ତା'ର ଶତାଂଶ ମଧ୍ୟ ପ୍ରତିଫଳିତ ହୁଏ ନାହିଁ ।

ଅବଶ୍ୟ ଶଙ୍କର ଦେବଙ୍କ ସମସାମୟିକ କବି ରାମ ସରସ୍ୱତୀଙ୍କ ଗୀତଗୋବିନ୍ଦରେ ରାଧାକୃଷ୍ଣଙ୍କର ଯୌବନ ଲୀଳା ଛନ୍ଦାୟିତ । ଓଡ଼ିଆରେ ଜୟଦେବଙ୍କ ପରବର୍ତ୍ତୀ କାଳରେ ଗୋପାଳକୃଷ୍ଣ, ବନମାଳି ଆଦି କବିଙ୍କ ଲେଖନୀରେ ଯେପରି ରାଧା ବହୁ ଭାବରେ ଜଡ଼ିତ । ଶଙ୍କରଙ୍କ ପରବର୍ତ୍ତୀ କାଳରେ ଆସାମର ଦୁଇଜଣ ଗୀତିକାର ଓ ଶ୍ରୀ ରାମାନନ୍ଦ ଦେ ମଧ୍ୟ ରାଧାଙ୍କ ନାମରେ ବହୁ ଗୀତ ରଚନା କରିଅଛନ୍ତି ।

'ଶୀତଲ କଦମ୍ବ ତଲେ ଗୋପ ବାଲକ ମେଲେ
ମୋହନ ବଂଶୀର କରୁ ନାଦ
ମଧୁର ମଧୁର ଧ୍ୱନି ରାଧା ରାଧା ନାମ ଶୁନି
ମନେ ମେରି ମଲେ ଉନ୍ମାଦ ।'

ଏହି ଗୀତଗୁଡ଼ିକରେ ରାଧାଙ୍କ କୃଷ୍ଣ ଜଗତ୍ ଈଶ୍ୱର ସ୍ୱାମୀ ଭାବେ ଚିତ୍ରିତ । ପ୍ରେମ ପାଗଳ, ଚିତ୍ତ ଚୋର, ଷଠ ନାଗର ପ୍ରେମିକ କଳାକାହ୍ନୁ ନୁହନ୍ତି ।

ତେଣୁ ଓଡ଼ିଆ କାବ୍ୟ କବିତାରେ ରାଧା ସର୍ବଦା କାହ୍ନୁ ପ୍ରୀତି ଅନୁରାଗିଣୀ, ପରକୀୟା ପ୍ରୀତି ପାଗଳିନୀ ଭାବେ ଚିତ୍ରିତ ହୋଇଥିବା ବେଳେ ଅସମୀୟା କବିଙ୍କ ଲେଖନୀ ମୁନରେ ରାଧାଙ୍କୁ ସର୍ବଦା ଏକ ଯୋଗସାଧିକା କୃଷ୍ଣଙ୍କ ଲୀଳା ଐଶ୍ୱର୍ଯ୍ୟ ବିଭୁତ ଶକ୍ତି ଓ ଭକ୍ତବତ୍ସଳା ଗୁଣକୀର୍ତ୍ତନକାରୀ ଭାବେ ବର୍ଣ୍ଣିତ ।

ଏହିପରି ଅସମୀୟା ଓ ଉତ୍କଳୀୟ ବୈଷ୍ଣବ ସାହିତ୍ୟରେ ରାଧା ଚରିତ୍ର ଚିତ୍ରଣରେ ବିଭିନ୍ନତା ପରିଲକ୍ଷିତ ହେଉଥିବାର ବହୁତ ଦୃଷ୍ଟାନ୍ତ ରହିଛି ।

କୋରେଇ, ଯାଜପୁର–୭୫୫୦୨୨



# ରାୟବାହାଦୁର ଭିକାରି ଚରଣ ପଟ୍ଟନାୟକ

ନିର୍ମଳା କୁମାରୀ ମହାପାତ୍ର

ପାଠଶାଠ ଯେତେ ପଢ଼ିବ ପଢୁଆ
ଶିଳ୍ପ ବାଣିଜ୍ୟ ହିଁ ଦେଶର ଶିରୀ
ଦେଶ ଶିରୀ ତେତେ ତୁଟି ଯାଉଥିବ
ଯେତେ ବଢୁଥିବ ଗୋଲାମଗିରି ।
ଦେଶର ବାଣିଜ୍ୟ ଶିଳ୍ପ ବୃଦ୍ଧି ହେଲେ
ଦେଶ ଲକ୍ଷ୍ମୀ ସ୍ଥିର ରହିବେ ଦେଶେ
ନହେଲେ ତୁଚ୍ଛାକୁ ହାଉ ହାଉ ହୋଇ
ହାଉଡ଼ାରେ ମିଶି ଯିବେଟି ଶେଷେ ।
କଳିକତିଆ ଭାଇ : ଭିକାରି ଚରଣ ପଟ୍ଟନାୟକ



ଓଡ଼ିଶାରେ ହସ୍ତକର୍ମ, କୁଟୀରଶିଳ୍ପ – ବିଶେଷ କରି ଅଭଙ୍ଗା କଣ୍ଢେଇର ପ୍ରବର୍ତ୍ତନକାରୀ ଭିକାରି ଚରଣ ପଟ୍ଟନାୟକ ଏକାଧାରରେ ଥିଲେ ନାଟ୍ୟକାର – ପ୍ରାବନ୍ଧିକ – ସଂଗଠନକାରୀ –ଶିକ୍ଷାବିତ୍ ତଥା ପେଶାରେ ଆଇନଜୀବୀ । ଡିସେମ୍ବର ୨୧, ୧୮୭୭ ମସିହାରେ ଅବିଭକ୍ତ କଟକ ଜିଲ୍ଲା (ବର୍ତ୍ତମାନ କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ) ହୁରାସାହି ଗ୍ରାମରେ ମାତା ପିତେଇ ଦେଈ ଓ ପିତା ସାଧୁଚରଣ ମହାନ୍ତିଙ୍କ ପରିବାରରେ ସେ ଭୂମିଷ୍ଠ ହୋଇଥିଲେ । ଶ୍ରଦ୍ଧାନାମ ଥିଲା ପ୍ରାଣକୃଷ୍ଣ । ସେ ସାନବେଳେ ମାମୁଁ ଘରକୁ ପୁଅ ହୋଇଗଲେ ଦକ୍ଷ ବ୍ରହ୍ମପୁର ଗ୍ରାମକୁ । ସଂକ୍ଷେପରେ ସେ ଗାଁଟି ଦାନପୁର ଭାବେ ଜଣାଶୁଣା । ମାମୁଁ ଜଗନ୍ନାଥ ପଟ୍ଟନାୟକ ଓ ମାଈଁ ତୁଳସୀ ଦେଈ ହେଲେ ତାଙ୍କର ପାଳକ ପିତା–ମାତା । ପଟ୍ଟନାୟକ ପରିବାରରେ ତାଙ୍କର ନାମ ହେଲା ଭିକାରି ଚରଣ । ପ୍ରୋକ୍ତ ଜଗନ୍ନାଥ ପଟ୍ଟନାୟକ ଥିଲେ ମୟୂରଭଞ୍ଜ ଦେଶୀୟ ରାଜ୍ୟର ରାଜକର୍ମଚାରୀ । ତେଣୁ ପିଲାଦିନର ଚାଟଶାଳୀ ପାଠ ଓ ପ୍ରାଥମିକ ଶିକ୍ଷା ପରେ ଭିକାରି ଚରଣ ମୟୂରଭଂଜରେ ସ୍କୁଲ ଶିକ୍ଷା ପାଇଥିଲେ । ସେ କାଳରେ ରାଜା–ମହାରାଜାଙ୍କ ଅନୁଦାନକ୍ରମେ କର୍ମଚାରୀମାନେ ଭୂସଂପତ୍ତି ସହ ଗୋରୁ ମହିଷୀ ଆଦି ରଖି ଚଳୁଥିଲେ । ଭିକାରି ଚରଣଙ୍କ ପିତାଙ୍କର ଚାଷ ସହ ଯଥେଷ୍ଟ ସଂଖ୍ୟକ ଗୋରୁଗାଈ ଥିଲେ । ବାଳକ/କିଶୋର ଭିକାରି ଚରଣ କୃଷି ସହ ଗବାଦି ପଶୁପାଳନର ପ୍ରଶିକ୍ଷଣ ପାଇଥିଲେ ନିଜ ପରିବାରରୁ । କଟକରେ କଲେଜ ଶିକ୍ଷା ଓ କଲିକତାରେ ଆଇନ ପରୀକ୍ଷା ଦେଇ ସେ ହେଲେ ଆଇନଜୀବୀ । ସେ କାଳରେ କର୍ମବୀର ଗୌରୀଶଙ୍କରଙ୍କର ସାନଭାଇ ନାଟ୍ୟକାର ରାମ ଶଙ୍କରଙ୍କ ପାଖରେ ସେ ଜୁନିୟର୍ ଭାବେ ଆଇନ କାର୍ଯ୍ୟର ଅଭ୍ୟାସ କରିଥିଲେ । ସେ କାଳରେ ମଧୁବାବୁ (ଭାରତ ଗୌରବ ମଧୁସୂଦନ ଦାସ) ଥିଲେ ନାମଜାଦା ବ୍ୟକ୍ତି । ମଧୁବାବୁଙ୍କ ପରାମର୍ଶ ଥିଲା ଚାକିରି ନକରି ଓଡ଼ିଆ ପାଇଁ କିଛି ମହତ୍ତର କାର୍ଯ୍ୟ କରିବା ।

ମଧୁବାବୁ ରୂପା– ତାରକସୀ କାମ ଓ ଚମଡାଶିଳ୍ପର ବିକାଶ ନେଇ ଯଥାକ୍ରମେ ଓୟାର ହାଉସ ଓ ଉତ୍କଳ ଟ୍ୟାନେରୀ ଗଢ଼ିଥିଲା ପରି ଭିକାରି ଚରଣ Poor Cottage Industry ସ୍ଥାପନ ସହ ଏଣ୍ଡି ଚାଷ, ଗୋ–ଶାଳା ପରିଚାଳନା, ଆୟୁର୍ବେଦ ଚିକିତ୍ସା ବିଦ୍ୟାଳୟ ସ୍ଥାପନ, ଓଡ଼ିଆ ଆସୋସିଏସନ୍ ଜରିଆରେ ରାଜ୍ୟବାସୀଙ୍କୁ ଆତ୍ମନିର୍ଭରଶୀଳ କରାଇବା ପାଇଁ ବହୁ ଉଦ୍ୟମ କରିଥିଲେ । କୁଟୀରଶିଳ୍ପ ପାଇଁ ସେ ଆଇନଜୀବୀର ପେସାକୁ ପ୍ରାୟତଃ ଅଣଦେଖା କରିଥିଲେ । ଆଦ୍ୟ ଜୀବନରେ ଓକିଲ ହିସାବରେ ସେ ଯେଉଁ ସଫଳତା ପାଇଥିଲେ, କୁଟୀର ଶିଳ୍ପରେ ମନ ଲଗାଇବା ପରେ ପେସା ପ୍ରତି ସେ ଅଧିକ ସମୟ ଦେଇ

ପାରିଲେ ନାହିଁ । ଇଂରେଜ ସରକାରଙ୍କ ଲବଣ ନୀତିକୁ ନାପସନ୍ଦ କରି ୧୯୨୨ ମସିହାରେ ସେ ଲେଖିଥିଲେ–

କାଳକାଳକୁ ଲୁଣ ଖାଇବା ପାଇଁ,
ବ୍ୟବସ୍ଥା ଖଞ୍ଜି ଥିଲେ ବ୍ରହ୍ମାଣ୍ଡ ସାଇଁ ।
ରୋକିଲେ ସରକାର ସେତିକି ଧରି,
କ୍ଷେତ୍ରରେ ତୁଣ୍ଡିବନ୍ଧା ବଳଦ ପରି ।

ଏଥିରୁ ଶ୍ରୀ ପଟ୍ଟନାୟକଙ୍କର ସହାନୁଭୂତିର ପରିଚୟ ମିଳେ ।

ପ୍ରାଥମିକ ସ୍ତରରୁ ଶିକ୍ଷା ସହ କର୍ମସଂପୃକ୍ତି ସପକ୍ଷରେ ଯୋଜନା କରୁଥିବା ଭିକାରି ଚରଣ 'ଗୃହଶିଳ୍ପ' ପ୍ରଥମ ଭାଗରୁ ସପ୍ତମ ଭାଗ (୧୯୫୩), ଗୋ–ମାତା (୧୯୬୦) କୁଟୀରଶିଳ୍ପ (୧୯୩୫) ନାମକ ବହି ଲେଖିଥିଲେ । ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ପାଇଁ ସେ ଲେଖିଥିଲେ–'କର୍ମସଂଗୀତ' (୧୯୪୦) । ଏହା ବ୍ୟତୀତ ପ୍ରାଥମିକ ଶିକ୍ଷାଦାନ ବିଧି (୧୯୩୪) ନାମରେ ଏକ ଆଲୋଚନା ପୁସ୍ତକ ମଧ୍ୟ ସେ ରଚନା କରିଥିଲେ ଯାହାକି ସେକାଳରେ ଶିକ୍ଷକ–ପ୍ରଶିକ୍ଷଣ ବେଳେ ଦରକାର ହେଉଥିଲା । ତାଙ୍କର ଯୁକ୍ତି ଥିଲା ସଫଳ ଶିକ୍ଷାପ୍ରାପ୍ତି ପାଇଁ ପ୍ରାଥମିକ ସ୍ତରରୁ ହସ୍ତକର୍ମ ଓ କୁଟୀରଶିଳ୍ପକୁ ପାଠକ୍ରମ ଅନ୍ତର୍ଭୁକ୍ତ କରାଯାଉ । ସେ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ବସାଇ ଥିଲେ ଯେଉଁଥିରେ ଶିକ୍ଷକ ତଥା ଛାତ୍ରଛାତ୍ରୀବୃନ୍ଦ ପାଠ ସହ ଗୋ–ସେବାରେ ମଧ୍ୟ ସଂପୃକ୍ତ ରହିଥିଲେ । ଏହା ୧୯୩୦–୪୦ ମସିହା ବେଳକୁ ଓଡିଶାରେ ଆଦର୍ଶ ସ୍ଥାନୀୟ ବିଦ୍ୟାଳୟ ଭାବେ ପରିଗଣିତ ହେଉଥିଲା ।

ପ୍ରାକ୍ ସ୍ୱାଧୀନତା କାଳରେ ମୟୂରଭଂଜ ଦେଶୀୟ–ରାଜ୍ୟ ଥିଲା ବହୁ ବିଭବରେ ଆଗୁଆ । ସେହି ରାଜ୍ୟ ତରଫରୁ ଭିକାରି ଚରଣଙ୍କୁ ୧୯୩୪ ମସିହାରେ କୁଟୀରଶିଳ୍ପ ଓ ପ୍ରାଥମିକ ଶିକ୍ଷାର ଉପଦେଷ୍ଟା ଭାବେ ନିଯୁକ୍ତି ଦିଆଯାଇଥିଲା । ଏହା ଦେଖି ଅନ୍ୟାନ୍ୟ ଗଡଜାତ ରାଜ୍ୟ ଯଥା– ଆଠମଲ୍ଲିକ, ବୌଦ୍ଧରାଜ (ବଉଦ), ସୋନପୁର, ପାଟଣାଗଡ ଓ କଳାହାଣ୍ଡି ତରଫରୁ ମଧ୍ୟ ତାଙ୍କର ପରାମର୍ଶ ଲାଭ ପାଇଁ ନିମନ୍ତ୍ରଣ ଆସିଥିଲା । ସେକାଳରେ ଶ୍ରୀ ପଟ୍ଟନାୟକ ଥିଲେ ପ୍ରାଥମିକ ଶିକ୍ଷା ତଥା କୁଟୀର ଶିଳ୍ପ ବାବଦରେ ବିଶିଷ୍ଟ ଉପଦେଷ୍ଟା ତଥା ପରାମର୍ଶଦାତା । ଅନେକ କ୍ଷେତ୍ରରେ ସେ ଶିକ୍ଷକମାନଙ୍କୁ ପ୍ରଶିକ୍ଷଣ ଦେଉଥିଲେ । ଶିକ୍ଷକମାନେ ଛାତ୍ରଛାତ୍ରୀଙ୍କୁ ଶିଖାଉଥିଲେ । ଏଇ କ୍ରମରେ କୁଟୀର ଶିଳ୍ପର ବିକାଶ ଓଡିଶାର ପ୍ରାୟ ୧/୩ ଅଂଶକୁ ବ୍ୟାପୀ ଯାଇଥିଲା । ତାଙ୍କର ରଚନା 'କର୍ମସଙ୍ଗୀତ' (୧୯୪୦)ରେ ନିହିତ ବାର୍ତ୍ତା ଥିଲା କୁଟୀର ଶିଳ୍ପର ପ୍ରସାର । ସେତେବେଳକୁ ସାରା ଦେଶରେ ମୌଳିକ ଶିକ୍ଷା (Basic Education)ର ଆଦର । ଅତଏବ ସଚ୍ଚିତ୍ର ଶିଳ୍ପ ସଂପର୍କିତ ସଂଗୀତରେ ଭରପୂର ପ୍ରୋକ୍ତ ରଚନା 'କର୍ମସଂଗୀତ' ସେ କାଳ ପାଇଁ ଥିଲା ଏକ ମହାର୍ଘ୍ୟ ଅର୍ଘ୍ୟ । ଅବଶ୍ୟ କର୍ମବାଦ ଦୃଷ୍ଟିରୁ ସେଥିରେ ରହିଛି ସର୍ବକାଳୀନ ମୂଲ୍ୟବୋଧ । ଏହି ବହିର ପ୍ରଥମ ଓ ଦ୍ୱିତୀୟ ଭାଗରେ ଯଥାକ୍ରମେ ନଅ ଓ ପନ୍ଦରଟି ଗୀତ ଥିଲା । ପଠନ–ଲିଖନ କୈନ୍ଦ୍ରିକ ମୁଖସ୍ଥ ସର୍ବସ୍ୱ ଶିକ୍ଷା ବ୍ୟବସ୍ଥାରୁ ଉତ୍ତୀର୍ଣ୍ଣ ପାଠୁଆମାନେ ଚାକିରି ନପାଇ ବେକାର ହୋଇ ଦୁଃଖ ପାଉଥିବା ଦେଖି ଶ୍ରୀ ପଟ୍ଟନାୟକ ଲେଖନ୍ତି ନିମ୍ନ ପ୍ରକାରେ, ଯଥା–

ଏବେ ଯୁଗତ ଓଲଟି ଗଲାଣିରେ
ବହି ପାଠ ତ ଅପାଠ ହେଲାଣିରେ
ପାଠୁଆ ପାଠସାରି ଦେଖ କି ହରବର
ମହତ ଗଲା ବୁଡି ଡିଗିରି କାଗଜର
ବୁଡିଲା ଜ୍ଞାନ–ଧ୍ୟାନ ସବୁ ଏବେ ତାଙ୍କର...

ଶ୍ରୀ ପଟ୍ଟନାୟକଙ୍କର ମହତ ଉଦ୍ଦେଶ୍ୟ ବହୁ ମାତ୍ରାରେ ସଫଳ ହୋଇଥିଲା । ଅଭଙ୍ଗା କଣ୍ଢେଇ ଦେଶ ବିଦେଶରେ ଆଦୃତ ହୋଇଛି ଓ ହେଉଅଛି ମଧ୍ୟ । ଅଦରକାରୀ କାଗଜ, କନାରେ ତିଆରି କଣ୍ଢେଇ ଯେପରି ହାଲୁକା, ସେପରି ଦୀର୍ଘସ୍ଥାୟୀ ଓ ମନୋରମ ମଧ୍ୟ । ଭିକାରି ଚରଣଙ୍କର Poor Cottage Industryରୁ ପ୍ରସ୍ତୁତ ଦ୍ରବ୍ୟମାନ ଧନୀ–ଗରିବ, ଦେଶ–ବିଦେଶ, ଆବାଳ–ବୃଦ୍ଧ–ବନିତାକୁ – ସମସ୍ତଙ୍କୁ ଆକର୍ଷିତ କରି ପାରିଥିଲା । ଏହି ଶିଳ୍ପଶାଳାକୁ ଦେଖିବା ପାଇଁ ଆସିଥିବା ବ୍ୟକ୍ତିଗଣ ଥିଲେ ମହାତ୍ମାଗାନ୍ଧୀ, ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍, ଡକ୍ଟର କୈଳାସନାଥ କାଟ୍‌ଜୁ, ଶ୍ରୀ ଜଗଜ୍ଜୀବନ ରାମ, ଶ୍ରୀ ଭି.ଭି.ଗିରି, ରାଜକୁମାରୀ ଅମୃତ କାଉର, ଶ୍ରୀ ସି.ଭି. ରମଣ, ଶ୍ରୀ ହୃଦୟନାଥ କୁଂଜୁରୁ, ମଧୁବାବୁ (ମଧୁସୂଦନ ଦାସ), ସାର୍ ଜନ୍ ହବାକ୍, କୃଷ୍ଣଚନ୍ଦ୍ର ଗଜପତି, ଡକ୍ଟର ମେଘନାଦ ସାହା, ଡକ୍ଟର ଶ୍ୟାମ ପ୍ରସାଦ ମୁଖାର୍ଜୀ, ଡକ୍ଟର ପ୍ରାଣକୃଷ୍ଣ ପରିଜା ଆଦି ।

ଶ୍ରୀ ପଟ୍ଟନାୟକଙ୍କ ଶିଳ୍ପଶାଳା ସଂପର୍କରେ ମଧୁବାବୁ ୧୯୩୩, ଫେବୃୟାରୀ ୦୯ ତାରିଖରେ ଲେଖିଥିବା ଚିଠିରୁ ସେ ସମୟର ସ୍ଥିତି, ମଧୁବାବୁଙ୍କ ଶିଳ୍ପ ବିକାଶ ଚିନ୍ତାର ଫଳାଫଳ ସହ ଅନେକ କଥା ଜଣାପଡେ । ତହିଁରୁ କିଂଚିତ୍ ତଳେ ଦିଆଗଲା ।

"x x x x I find from the contains of the Visitors Book that many people have appreciated your

activities. Education in India has hither to been confined to the cultivation of the intellect. Nature has given man a body every part of which is capable of culture in a manner which would place him above wants of life; if not, in a position of affluence. In Europe, for instance, nations have learnt to bring to a high state of culture the different parts of body, for instance the French have cultivated their eyes and their tongue and the result is France dictates fashion to the world and supplies the most expensive cooks to the world; the German has cultivated his sense of hearing and the result is Germany supplies all musical instruments to the world; the Italian has cultivated his throat and the most vocal musicians come from Italy. India has yet to learn this. I have been really struck with your sincere sympathy for the poor and your strenous efforts to improve their economic condition.

x x x x I do hope you will not meet with the failure that I met. Your present position requires something more than more expression of appreciation of your virtues".

ସାଧାରଣ ଲୋକଙ୍କର ଆର୍ଥିକ ସ୍ଥିତିରେ ଉନ୍ନତି ଆଣିବା ପାଇଁ ଅହରହ ଚିନ୍ତା କରୁଥିବା ଭିକାରି ଚରଣ ଓଡିଶାର ଜଳବାୟୁକୁ ଚାହିଁ ଏଣ୍ଡି ଚାଷକୁ ପ୍ରାଥମିକ ସ୍ତରରୁ ଛାତ୍ରଛାତ୍ରୀଗଣଙ୍କ ଦୃଷ୍ଟିକୁ ଆଣିବାକୁ ଚାହୁଁଥିଲେ । ଏଣୁ 'ଏଣ୍ଡି ଚାଷ' ନାମକ ପୁସ୍ତକ ରଚନା କରିଥିଲେ ଯାହାର ମୁଖବନ୍ଧରେ ତତ୍କାଳୀନ ଭାରପ୍ରାପ୍ତ ସ୍କୁଲ ଇନିସ୍ପେକ୍ଟର ଶ୍ରୀ ବି.ମୁଖାର୍ଜୀ ପୁସ୍ତକର ଉପଯୋଗିତା ସଂପର୍କରେ ଉଚ୍ଚମତ ଦେଇଥିଲେ ତା ୩୦.୦୪.୧୯୨୯ରେ ।

ପ୍ରକାଶ ଥାଉକି ଭିକାରୀ ଚରଣ ପଟ୍ଟନାୟକଙ୍କର ମୌଳିକ ଜନହିତକର କାର୍ଯ୍ୟଧାରାକୁ ମୂଲ୍ୟାୟନ କରି ତତ୍କାଳୀନ ଇଂରେଜ ସରକାର ୧୯୨୮ ମସିହାରେ ତାଙ୍କୁ ରାୟସାହେବ, ୧୯୩୭ରେ ରାୟବାହାଦୁର, ୧୯୪୬ରେ କାଇଜର୍-ଇ-ହିନ୍ଦ୍ ଉପାଧି ପ୍ରଦାନ କରିଥିଲେ । ସ୍ୱାଧୀନ ଭାରତରେ ୧୯୫୮ରେ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡି.ଲିଟ୍ ଉପାଧି ପ୍ରଦାନ କରିଥିଲେ । ଉତ୍କଳ ସାହିତ୍ୟ ସମାଜ, କଟକ ତରଫରୁ ୧୯୬୦ ମସିହାରେ ସେ ସମ୍ବର୍ଦ୍ଧିତ ହୋଇଥିଲେ ।

ଦେଶପ୍ରେମୀ ନାଟ୍ୟକାର ଭିକାରି ଚରଣଙ୍କ ସୃଷ୍ଟିମାନସ-ପ୍ରସୂତ ନାଟକଗୁଡିକ ବେଶ୍ ଶିକ୍ଷଣୀୟ । ସେଗୁଡିକର ନାମ ଓ କାଳ ନିମ୍ନରେ ପ୍ରଦତ୍ତ । ଯଥା- କଟକ ବିଜୟ (୧୯୦୧), ନନ୍ଦିକେଶ୍ୱରୀ (୧୯୧୫), ରତ୍ନମାଳୀ (୧୯୧୫), ସଂସାର ଚିତ୍ର (୧୯୧୫), ସୁଶୀଳା (୧୯୧୭), ଯୌତୁକ (୧୯୨୪), ରାଜା ପୁରୁଷୋତ୍ତମ (୧୯୨୫), ପଦ୍ମଲୋଚନ (୧୯୪୦), ନିରୂପମା (୧୯୫୨), କର୍ମକ୍ଷେତ୍ର (୧୯୬୦) । ଅନ୍ୟତମ ରଚନା ଅଦ୍ଭୁତ ଆଦର୍ଶ (୧୯୦୯) ହେଲା ଏକ ଏକ ହାସ୍ୟଧର୍ମୀ ପ୍ରହସନ ବହି ।

କବିତା ପୁସ୍ତକଗୁଡିକ ହେଲେ, କରଣ ସାଆନ୍ତଙ୍କ ଢମ(୧୯୧୫), ଭୋଟ ସୁମାରୀ (୧୯୧୫), ଭୋଟ ଭିକାରୀ (୧୯୧୫), ଭୋଟ (୧୯୧୫), ମାନ୍ୟବର (୧୯୧୫), ସାଆନ୍ତିଆ ବାହା (୧୯୧୫), ଶ୍ୟାମଦାସ (୧୯୧୬), ନେତା (୧୯୧୮), ନୂଆଯୋଗୀ (୧୯୨୦), ଚଷାଭାଇ (୧୯୩୫), ଗୀତଲହରୀ (୧୯୨୧) ଆଦି । ପ୍ରୋକ୍ତ 'ଗୀତଲହରୀ'ପୁସ୍ତକରେ ରାଗ-ତାଳ ନିର୍ଦ୍ଦେଶ ଥିବା ୧୦୨ଟି ଗୀତ ରହିଅଛି । ତହିଁରେ ଦେଶାତ୍ମବୋଧକ ସଂଗୀତ, ଧର୍ମସଂଗୀତ, ପ୍ରେମସଂଗୀତ ଓ କୌତୁକ ସଂଗୀତର ସଂଖ୍ୟା ଯଥାକ୍ରମେ ୪୪, ୩୩,୦୬ ଓ ୧୯.

ବହୁମୁଖୀ ପ୍ରତିଭା ରାୟ ବାହାଦୁର ଭିକାରି ଚରଣ ପଟ୍ଟନାୟକଙ୍କର ଦେହାନ୍ତ ହୁଏ ୧୯୬୨, ଜାନୁୟାରୀ ୨୩ ତାରିଖରେ, କଟକରେ ଥିବା ତାଙ୍କ ନିଜ ଘରେ, ଯାହାର ଗୋଟିଏ ଅଂଶରେ ଚାଲୁଥିଲା କୁଟୀରଶିଳ୍ପର କର୍ମଶାଳା । କୁଟୀରଶିଳ୍ପ ସ୍ରଷ୍ଟା ଭିକାରି ଚରଣ ସଂଜୀବିତ ପ୍ରତିଟି ଅଭଙ୍ଗ। କଣ୍ଢେଇର ମୁଣ୍ଡହଲାଣରେ ପ୍ରତିଟି ହସ୍ତକର୍ମ କର୍ମଶାଳାରେ ।

ସେକ୍ଟର-୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର-୨୧



# ମଧ୍ୟାହ୍ନ ଭୋଜନ ଓ ନିରୀହ ଜୀବନ

ଗଙ୍ଗାଧର ସାହୁ

ପ୍ରତ୍ୟେକ ଦିନ ସକାଳୁ ସକାଳୁ ଖବର କାଗଜ ପୃଷ୍ଠା ଓଲଟାଇଲେ ବା TV Channel ଖୋଲିଲେ ମଧ୍ୟାହ୍ନ ଭୋଜନରେ ପୋକ, ଝିଟିପିଟି, ସଁବାଳୁଆ, ମଧ୍ୟାହ୍ନ ଭୋଜନ ଖାଇ ବହୁ ଛାତ୍ରଛାତ୍ରୀ ଅସୁସ୍ଥ ଓ ଡାକ୍ତର ଖାନାରେ ଭର୍ତ୍ତି, ମଧ୍ୟାହ୍ନ ଭୋଜନରେ ଆର୍ଥିକ ଅନିୟମିତତା, ମଧ୍ୟାହ୍ନ ଭୋଜନ ପାଇଁ ବିଦ୍ୟାଳୟରେ ତାଲା, ମଧ୍ୟାହ୍ନ ଭୋଜନ ଯୋଗୁଁ ପାଠପଢା ବ୍ୟାଘାତ ଖବରମାନ ପଢି ପଢି ଓ ଦେଖି ଅନେକ ପାଠକ, ଅଭିଭାବକ ଓ ଜନସାଧାରଣ ମଧ୍ୟାହ୍ନ ଭୋଜନ ଉପରେ ଏକ ନାକାରତ୍ମକ ମତ ପ୍ରତିପାଦନ କରିଥାନ୍ତି । ବାରମ୍ବାର ଘଟଣା ଦୁର୍ଘଟଣା ଦେଖି ଦେଖି ପିଲାମାନେ ମଧ ମଧ୍ୟାହ୍ନ ଭୋଜନ ଖାଇବାକୁ ଉଚିତ୍ ମନେ କରୁ ନାହାନ୍ତି । ଅନେକ ବୁଦ୍ଧିଜୀବୀ ଏ ଯୋଜନା ଦେଶ ଗଠନ କରିବା ପରିବର୍ତ୍ତେ ଦେଶ ବିନାଶ କରୁଛି ବୋଲି ଅଭିମତ ଦେଇଥାନ୍ତି ।

ମଧ୍ୟାହ୍ନ ଭୋଜନ ଯୋଜନାର ଉଦ୍ଦେଶ୍ୟ ବଡ ମହତ । ଯଥା– ବିଦ୍ୟାଳୟ ପ୍ରତି ପିଲାଙ୍କୁ ଆକର୍ଷିତ କରିବା, ଶ୍ରେଣୀ ଗୃହରେ ପିଲାଙ୍କ କ୍ଷୁଧା ଦୂର କରି ପାଠରେ ମନୋନିବେଶ କରିବା, ବିଦ୍ୟାଳୟରେ ଭାଷାଗତ, ଧର୍ମଗତ, ଜାତିଗତ ଓ ବର୍ଣ୍ଣଗତ ବୈଷମ୍ୟ ଦୂରକରି ଗୋଟିଏ ଜାଗାରେ ବସି ଖାଇ ସାମାଜିକ ପରିବର୍ତ୍ତନ ଆଣିବା ଓ ସର୍ବୋପରି କୁପୋଷଣଜନିତ ବ୍ୟାଧିକୁ ସାମ୍ନା କରିବା ନିମିତ୍ତ ପରିପୂରକ ପୁଷ୍ଟି ପ୍ରଦାନ କରିବା (Supplementary Nutrition) । ଉଦ୍ଦେଶ୍ୟ ଯେତିକି ମହତ ହେଲେ ବି ପରିଣାମ ଯଦି ଭୟାବହ ହୁଏ, ତେବେ ଯୋଜନାକୁ ବିରୋଧ କରିବା ସ୍ୱାଭାବିକ । ମଧ୍ୟାହ୍ନ ଭୋଜନ ତର୍କ ଉତ୍‌ଥାପିତ ହେଲେ ସାଧାରଣ ଲୋକଙ୍କ ଛଡା ଜାଣିବା ଶୁଣିବା, ପାଠ ପଢିଥିବା, ଚାକିରି କରିଥିବା ଲୋକମାନେ, ଶିକ୍ଷାବିତ୍, ଡାକ୍ତର, ଓକିଲ ଏବଂ ବିଭିନ୍ନ ବର୍ଗର ବୁଦ୍ଧିଜୀବୀମାନେ ମଧ୍ୟାହ୍ନ ଭୋଜନ ବିରୋଧରେ ବିଶୋଦ୍‌ଗାର କରନ୍ତି । ଏହି ନାକାରତ୍ମକବାଦି ଜନମତକୁ ବିଶ୍ଳେଷଣ କଲେ, ଯାହା ଜଣାପଡେ ସେଗୁଡିକ ନିମ୍ନଲିଖିତ ଉକ୍ତି ଉପରେ ଆଧାରିତ ।

କ– ମଧ୍ୟାହ୍ନ ଭୋଜନ ପାଇଁ ପିଲା ପ୍ରତି ସରକାର ଯେଉଁ ହାରାହାରି ୫ ଟଙ୍କା ହିସାବରେ ଅର୍ଥ ବରାଦ କରିଛନ୍ତି, ତାହାଦ୍ୱାରା ବଜାର ଦର ଅନୁଯାୟୀ ମଧ୍ୟାହ୍ନ ଭୋଜନ ଯୋଗାଇବା ସମ୍ଭବ ନୁହେଁ ।

ଖ– ମଧ୍ୟାହ୍ନ ଭୋଜନ ପାଇଁ ପାଠପଢା ବ୍ୟାଘାତ ହେଉଛି ଚ ଗଣ୍ଡେ ଖାଇବା ନିମିତ୍ତ ପିଲାର କ୍ୟାରିୟର ନଷ୍ଟ କରାଯାଉଛି ।

ଗ– ମଧ୍ୟାହ୍ନ ଭୋଜନ ପରିଚାଳନାଗତ ତ୍ରୁଟି ନିମିତ୍ତ ଖାଦ୍ୟ ବିଷାକ୍ତ ହେଉଛି ଓ ପିଲାଙ୍କ ନିରୀହ ଜୀବନ ଚାଲିଯାଉଛି ।

ଘ– ମଧ୍ୟାହ୍ନ ଭୋଜନରେ ବ୍ୟବହୃତ ଡାଲି, ଚାଉଳ, ଅଣ୍ଡା ପିଲାଙ୍କୁ ଦେଇ ଦିଆଯାଉ ଓ ସେ ଘରେ ଖାଇକରି ଆସୁ ।

ଙ– ମଧ୍ୟାହ୍ନ ଭୋଜନ ବିଦ୍ୟାଳୟରେ ରୋଷେଇ ବନ୍ଦ କରି ଦିଆଯାଉ ଓ ଘରୋଇ ସଂସ୍ଥା ଦ୍ୱାରା ଏହା କରାଯାଉ ।

ଚ– ମଧ୍ୟାହ୍ନ ଭୋଜନରେ ବରାଦ ପିଲାପ୍ରତି ଧାର୍ଯ୍ୟ ପରିମାଣକୁ ପିଲାର ବ୍ୟାଙ୍କ ଆକାଉଣ୍ଟ୍‌ରେ ଜମା କରାଯାଉ ।

ଛ– ଏହି ଯୋଜନାକୁ ସଂପୂର୍ଣ୍ଣ ବନ୍ଦ କରି ଦିଆଯାଇ ସରକାର, ଶିକ୍ଷକ ଓ ଅଧିକାରୀମାନେ ଉତ୍ତମ ଶିକ୍ଷା ବ୍ୟବସ୍ଥା ପ୍ରତି ଧ୍ୟାନ ଦିଅନ୍ତୁ ।

ସୁନ୍ଦର ଜନମତଗୁଡିକ ବିଚାରଯୋଗ୍ୟ ଓ ତର୍କ ପରିବେଶିତ । ମଧ୍ୟାହ୍ନ ଭୋଜନକୁ ସାର୍ବଜନୀନ କରିବା ପୂର୍ବରୁ ଏହି ମତଗୁଡିକ ମାନ୍ୟବର ସୁପ୍ରିମକୋର୍ଟଙ୍କ ଆଗରେ

ରଖାଯାଇଥିଲା । ତର୍କ କରାଯାଇଥିଲା ଏବଂ ଅନେକ ବିଚାର ବିମର୍ଷ ପରେ ମଧ୍ୟାହ୍ନ ଭୋଜନକୁ ଏକ ସାର୍ବଜନୀନ ଯୋଜନାରେ ପରିବର୍ତ୍ତନ କରି ପ୍ରତ୍ୟେକ ବିଦ୍ୟାଳୟ ଦିବସରେ ନିର୍ଦ୍ଦିଷ୍ଟ କ୍ୟାଲୋରୀ ଯୁକ୍ତ ଓ ପ୍ରୋଟିନ ଯୁକ୍ତ ରନ୍ଧାଖାଦ୍ୟ ପରିବେଷଣ କରିବା ପାଇଁ ମାନ୍ୟବର ସୁପ୍ରିମକୋର୍ଟ କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଜନସାଧାରଣ ଯୋଜନାର ରୂପରେଖ ଓ କାର୍ଯ୍ୟକାରିତା ଜାଣିବା ପରେ ଯେଉଁ ଜନମତ ପ୍ରତିବାଦିତ କରିଛନ୍ତି, ତାକୁ ଆଲୋଚନା କରାଯାଉ ।

୧– ଭାରତବର୍ଷରେ ୨୦୦୫–୦୬ ମସିହାର National Family Health Survey-3 ସର୍ଭେ ଅନୁଯାୟୀ ଶତକଡା ୭୮.୯ ପ୍ରତିଶତ ପିଲାମାନେ ରକ୍ତ ହୀନତା ରୋଗରେ ବ୍ୟାଧିଗ୍ରସ୍ତ, ୪୪.୯ ପ୍ରତିଶତ ପିଲା stunting, ୨୨.୯ ପ୍ରତିଶତ ପିଲା ୱାଷ୍ଟିଙ୍ଗ ଓ ୪୦.୪ ପ୍ରତିଶତ ପିଲା under weight ବୋଲି ଜଣାଯାଇଛି । ଯଦି ଏହି ପରିସଂଖ୍ୟାନକୁ ଦକ୍ଷିଣ ଆଫ୍ରିକା ଓ ସାହାରା ଦେଶମାନଙ୍କ ସହିତ ତୁଳନା କରାଯାଏ ତେବେ କୁପୋଷଣ କ୍ଷେତ୍ରରେ ଭାରତ ଅନେକ ଆଗରେ । ଗୋଟିଏ ପାର୍ଶ୍ୱରେ ଅନେକ ଖାଦ୍ୟ ଦ୍ରବ୍ୟ ଏବଂ ଖାଦ୍ୟ ଶସ୍ୟ ନଷ୍ଟ କରାଯାଇ ବଙ୍ଗୋପ ସାଗରରେ ଫିଙ୍ଗି ଦିଆଯାଉଥିଲା ବେଳେ ଭାରତବର୍ଷରେ ଅନେକ ପିଲା ଅନାହାରରେ କାଳାତିପାତ କରନ୍ତି, କାଗଜ ଜରି ଗୋଟାନ୍ତି, ଗୁପଚୁପ୍ ବିକନ୍ତି, ଗାଈ ଓ ଛେଳି ଚରାନ୍ତି, ଇଟାଭାଟିରେ କାମ କରନ୍ତି ଏବଂ ବାପା ଓ ମା'ମାନଙ୍କୁ ସାହାଯ୍ୟ କରନ୍ତି । ତେଣୁ ଭାରତ ଗଠନ କରିବାକୁ ହେଲେ ସମସ୍ତେ ପାଠପଢିବା ଦରକାର ଏବଂ ସମସ୍ତେ ସୁସ୍ଥ ରହିବା ଦରକାର ।

୨– ମଧ୍ୟାହ୍ନ ଭୋଜନରେ ବରାଦ କରାଯାଇଥିବା ଅର୍ଥ ପେଟପୂରା ସୁଷମ ଖାଦ୍ୟ ନିମିତ୍ତ ଯଥେଷ୍ଟ ନୁହେଁ । ଗୋଟିଏ ପିଲାର ଦିନକୁ ଯେତିକି ଖାଦ୍ୟ ଦରକାର ତାକୁ ପରିବାର ଓ ସମାଜ ଉଭୟ ବହନ କରିବା ଦରକାର । ତେଣୁ ସରକାରଙ୍କ ଦ୍ୱାରା ପ୍ରଦତ୍ତ ବ୍ୟୟ ବରାଦ ପରିପୂରକ ପୋଷଣ ପାଇଁ ସଂପୂର୍ଣ୍ଣ ଭୋଜନ ପାଇଁ ନୁହେଁ ।

୩– ବିଦ୍ୟାଳୟରେ ରନ୍ଧନ ବନ୍ଦ କରି ଘରୋଇ ସଂସ୍ଥା ଦ୍ୱାରା ମଧ୍ୟାହ୍ନ ଭୋଜନ ପରିବେଷଣ କରିବା ମତକୁ ସର୍ବୋଚ୍ଚ ନ୍ୟାୟାଳୟ ବା ସରକାର ସଂମ୍ପୂର୍ଣ୍ଣ ବିରୋଧ କରନ୍ତି ନାହିଁ । ତେଣୁ ଓଡିଶାରେ 'ଅକ୍ଷୟ ପାତ୍ର ଫାଉଣ୍ଡେସନ' ଓ 'ମାନା ଟ୍ରଷ୍ଟ' ଭଳି ସଂସ୍ଥାମାନେ ଏ କାର୍ଯ୍ୟ କରି ଆସୁଛନ୍ତି । ସମ୍ପୂର୍ଣ୍ଣ ରୂପେ ଘରୋଇକରଣ ପ୍ରସ୍ତାବ ରଖିଲେ ଟାଟା ଓ ବିର୍ଲା କମ୍ପାନୀ ଭଳି କମ୍ପାନୀମାନେ ଏହି କାର୍ଯ୍ୟକୁ ଆବୋରି ନେଇ ସରକାରଙ୍କ ଉପରେ ସ୍ୱେଚ୍ଛାଚାରିତା ଓ ବ୍ଲାକମେଲିଂ କରିବା ପାଇଁ ପଛାଇବେ ନାହିଁ । ଘରୋଇକରଣ ଦ୍ୱାରା ଘଟଣା ଦୁର୍ଘଟଣା ଏଡାଇ ଦିଆଯାଇପାରିବ, ତାହାର କୈଣସି ଗ୍ୟାରେଣ୍ଟି ନାହିଁ । ଅନ୍ୟ ପକ୍ଷରେ ପାଚିକା ସହାୟିକା, ଶିକ୍ଷକ ବା ପରିଚାଳନା ସମିତିର ଅସାବଧାନତା ପାଇଁ ୫୦–୧୦୦ ପିଲା ଆକ୍ରାନ୍ତ ହେଉଥିବା ବେଳେ କୌଣସି କମ୍ପାନୀ ଦ୍ୱାରା ପରିଚାଳିତ ମଧ୍ୟାହ୍ନ ଭୋଜନରେ କୌଣସି ଛୋଟ ଅସାବଧାନତା ପାଇଁ ଲକ୍ଷ ଲକ୍ଷ ପିଲା ଆକ୍ରାନ୍ତ ହେବାର ସମ୍ଭାବନା ରହିଛି ।

୪– ଅନେକ ଲୋକଙ୍କର ମତାମତ ଯେ ରନ୍ଧାଖାଦ୍ୟ ବଦଳରେ ଶୁଖିଲା ଖାଦ୍ୟ ବା ପ୍ୟାକେଟ ଖାଦ୍ୟ ଦିଆଗଲେ ଏହି ଘଟଣା ଦୂର କରାଯାଇପାରିବ କିନ୍ତୁ ସର୍ବୋଚ୍ଚ ନ୍ୟାୟାଳୟରେ ଦର୍ଶାଯାଇଥିବା ଯୁକ୍ତି ଅନୁଯାୟୀ ଶୁଖିଲା ଖାଦ୍ୟ ବା ପ୍ୟାକେଟ ଖାଦ୍ୟରେ ମିଶୁଥିବା ରଙ୍ଗ ଓ Preservative junk food ଭଳି ହାନିକାରକ, ଯାହା ଅନବରତ ଖାଇଲେ କ୍ୟାନ୍ସରର କାରଣ ହୋଇପାରେ ।

୫– ରୋଷେଇ ବଦଳରେ ଚାଉଳ, ଅଣ୍ଡା ଓ ଡାଲି ପିଲାର ଘରକୁ ପଠାଇବା ପ୍ରସ୍ତାବ ଏକ ସୁସ୍ଥ ମତାମତ ହୋଇ ନପାରେ । ଏହାଦ୍ୱାରା ବିଦ୍ୟାଳୟରେ ବ୍ୟବସାୟ ଓ ଅଣ୍ଡା, ଡାଲି, ଚାଉଳ ଗୁଣବତ୍ତା ଏବଂ ପରିମାଣ ଉପରେ ଅନେକ ବିତର୍କର ଝଡ ସୃଷ୍ଟି କରିବ । କିନ୍ତୁ ପିଲାର Accountରେ ପଇସା ଜମା କରିବାର ଯେଉଁ ପ୍ରସ୍ତାବ ରହିଛି, ଏହା ସ୍ୱାଗତଯୋଗ୍ୟ ଏବଂ ସରକାରଙ୍କର ନୂଆ Direct Benefit Transfer ଯୋଜନାର ଅନୁରୂପ ଢାଞ୍ଚା ହୋଇପାରେ । କିନ୍ତୁ ମଧ୍ୟାହ୍ନ ଭୋଜନର ଉଦ୍ଦେଶ୍ୟ ପରିବାର ପୋଷଣ ନୁହେଁ, ପିଲାର କୁପୋଷଣ ଦୂର କରିବା ଓ ପିଲାକୁ ପାଠ ପ୍ରତି ଆକୃଷ୍ଟ କରିବା । ଦାରିଦ୍ର୍ୟରେ ପ୍ରପୀଡିତ ପରିବାର ଯଦି ପିଲାଟିର ପ୍ରାପ୍ୟକୁ ପିଲାପ୍ରତି ବିନିଯୋଗ ନକରି ପରିବାର ପ୍ରତି ବିନିଯୋଗ କରେ ତେବେ Account Transferÿ ¯ÿæ D.B.T. ବ୍ୟବସ୍ଥା ମଧ୍ୟାହ୍ନ ଭୋଜନର ଉଦ୍ଦେଶ୍ୟ ସାଧନ କରିବ ନାହିଁ ।

୬– ସର୍ବଶେଷରେ ମଧ୍ୟାହ୍ନ ଭୋଜନକୁ ବନ୍ଦ କରିଦେବା ପ୍ରସ୍ତାବ ବା ଜନମତ ବଡ ଆଶ୍ଚର୍ଯ୍ୟର ବିଷୟ । ମୁଣ୍ଡରେ ଉକୁଣି ହେଲେ ମୁଣ୍ଡକୁ କାଟିଦେବା କି ? ହାତରେ କ୍ଷତ ହେଲେ ହାତକୁ କାଟିଦେବା କି ? ଭାରତୀୟ ରେଳ ବ୍ୟବସ୍ଥାରେ ଅନେକ ଦୁର୍ଘଟଣା ଘଟି ଯାତ୍ରୀମାନଙ୍କର ଧନଜୀବନ ନଷ୍ଟ ହେଉଥିବାରୁ ଭାରତୀୟ

ରେଳକୁ ବନ୍ଦ କରି ଦିଆଯାଇପାରିବ କି ? ପରୀକ୍ଷାରେ କପି କଲେ ପରୀକ୍ଷା ବ୍ୟବସ୍ଥା ଉଠାଇ ଦେବା ଉଚିତ କି ? ସ୍ୱାସ୍ଥ୍ୟ ବ୍ୟବସ୍ଥାରେ କିଛି ଅଘଟଣ ଘଟିଲେ ସ୍ୱାସ୍ଥ୍ୟ ବ୍ୟବସ୍ଥା ବନ୍ଦ କରିଦିଆଯାଉଛି କି ? ଏସବୁର ଉତ୍ତର ଯଦି ନାଁ ହୁଏ ତେବେ ମଧ୍ୟାହ୍ନ ଭୋଜନ କାହିଁକି ବନ୍ଦ କରିଦିଆଯିବ ଓ ରୋଗର ନିରାକରଣ ନକରି ରୋଗୀକୁ କାହିଁକି ମାରି ଦିଆଯିବ ?

ପ୍ରଚଳିତ ମଧ୍ୟାହ୍ନ ଭୋଜନ ପରିଚାଳନା ବ୍ୟବସ୍ଥାରେ ବିଦ୍ୟାଳୟ ପରିଚାଳନା କମିଟି ଶିକ୍ଷକ, ଅଭିଭାବକ ଓ ସ୍ଥାନୀୟ ସ୍ୱୟଂ ସହାୟକ ଗୋଷ୍ଠୀମାନେ ମଧ୍ୟାହ୍ନ ଭୋଜନକୁ ପରିଚାଳନା କରିଥାନ୍ତି । ଏହି ବ୍ୟବସ୍ଥାରେ ଉନ୍ନତି ନିମିତ୍ତ ପରିଚାଳନାଗତ ତ୍ରୁଟି ସୁଧାରିବା ଉଚିତ । ବିଦ୍ୟାଳୟ ପରିଚାଳନା କମିଟି, ବାହ୍ୟସଂସ୍ଥା ମାଧ୍ୟମରେ ମଧ୍ୟାହ୍ନ ଭୋଜନକୁ ପରିଚାଳନା କରିବା ଉଚିତ । ବିଘ୍ନ ସୃଷ୍ଟିକାରୀ ଏବଂ ଅବହେଳାକାରୀଙ୍କ ପ୍ରତି କଠୋର ଦଣ୍ଡ ବିଧାନ ରହିବା ଉଚିତ ।

ଶେଷରେ ମାନ୍ୟବର ସର୍ବୋଚ୍ଚ ନ୍ୟାୟାଳୟଙ୍କର ନିର୍ଦ୍ଦେଶକୁ ସମ୍ମାନ ଜଣାଇବା ସହିତ ଜନସାଧାରଣଙ୍କର ମତାମତକୁ ମୋର କ୍ଷୁଦ୍ର ଦୃଷ୍ଟିକୋଣରେ ବିଚାର କରି ମୋର ବ୍ୟକ୍ତିଗତ ମତବ୍ୟକ୍ତ କରୁଛି ଯେ ମଧ୍ୟାହ୍ନ ଭୋଜନ ସର୍ବଶିକ୍ଷା, କୁପୋଷଣ ଦୂରୀକରଣ ଓ ଦେଶ ଗଠନ ପାଇଁ ଏକ ଅନନ୍ୟ ଯୋଜନା । ଏହି ଯୋଜନାକୁ ଗୋଟିଏ ପ୍ରକାର ଢାଞ୍ଚାରେ, ଗୋଟିଏ ପ୍ରକାର ନିୟମରେ ଦେଶ ସାରା ଚଲାଇବା କଷ୍ଟକର । ପିତାମାତାଙ୍କର ବିକଳ୍ପ କେବେହେଲେ ସରକାର ବା ଶିକ୍ଷକ ବା ପରିଚାଳନା ସମିତି ବା ସ୍ୱୟଂ ସହାୟକ ଗୋଷ୍ଠୀ ହୋଇପାରିବ ନାହିଁ । ତେଣୁ ସ୍ଥାନ ଅନୁଯାୟୀ ମଧ୍ୟାହ୍ନ ଭୋଜନର ପରିଚାଳନା ଭିନ୍ନ ଭିନ୍ନ ହେବା ଦରକାର । କେଉଁଠି ଶିକ୍ଷକ, କେଉଁଠି ଅଭିଭାବକ, କେଉଁଠି ମାତୃସଂଘ ଏ କାର୍ଯ୍ୟଭାର ଗ୍ରହଣ କରିପାରନ୍ତି । କିନ୍ତୁ ଶିକ୍ଷକଙ୍କୁ ଏହି କାର୍ଯ୍ୟରୁ ବିରତି ଦେବା ଉଚିତ । ସ୍ୱୟଂ ସହାୟକ ଗୋଷ୍ଠୀ, ମାତୃସଂଘ, ଅଭିଭାବକ ଗୋଷ୍ଠୀ ଘରୋଇ ଅନୁଷ୍ଠାନମାନେ ଏହି ଦାୟିତ୍ୱ ନେବା ଉଚିତ । ପ୍ରତ୍ୟେକ ବିଦ୍ୟାଳୟ ଦିବସରେ ଭିନ୍ନ ଭିନ୍ନ ସ୍ୱାଦର ଗରମ ଖାଦ୍ୟ ପରିବେଷଣ କରିବା ନିମିତ୍ତ ରନ୍ଧନ ସଂସ୍ଥାକୁ ଦାୟିତ୍ୱ ସହିତ ଉତ୍ତର ଦାୟିତ୍ୱ, କାମ ସହିତ ପାରିଶ୍ରମିକ ଦେବା ଉଚିତ । ଏହାଦ୍ୱାରା ସମାଜରେ ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ମଧ୍ୟାହ୍ନ ଭୋଜନ ଜନିତ ରୋଜଗାର ମଧ୍ୟ ସୃଷ୍ଟି ହୋଇ ପାରିବ ଏବଂ ମଧ୍ୟାହ୍ନ ଭୋଜନ ତା'ର ଲକ୍ଷ୍ୟ ହାସଲ କରିପାରିବ ।

ପିଲାପ୍ରତି ମଧ୍ୟାହ୍ନ ଭୋଜନ ବ୍ୟୟବରାଦ ବଢ଼ାଇବା ଉଚିତ । ପରିଚାଳନା ସଂସ୍ଥା ଓ ରନ୍ଧନ ସଂସ୍ଥା ଓଡିଶା ସରକାରଙ୍କ MDM Quality Protocol and Contingency Planକୁ ଅକ୍ଷରେ ଅକ୍ଷରେ ମାନିବା ଉଚିତ ।

ରାଜ୍ୟ ନୋଡାଲ ଅଫିସର (ମଧ୍ୟାହ୍ନ ଭୋଜନ)
ଓ ଯୁଗ୍ମ ସଚିବ,
ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ



# ରାଷ୍ଟ୍ର ନିର୍ମାଣରେ ସ୍ୱାମୀ ବିବେକାନନ୍ଦଙ୍କ ଅବଦାନ

ପ୍ରତାପସିଂହ ମହାପାତ୍ର

ଆମ ମହାନ୍ ଭାରତ ଭୂମିରେ ଶ୍ରୀ ରାମକୃଷ୍ଣ ପରମହଂସ ଏବଂ ସ୍ୱାମୀ ବିବେକାନନ୍ଦଙ୍କ ପରି ମହାପୁରୁଷ ଦ୍ୱୟଙ୍କ ଅବତରଣ ଏକ ଅଦ୍ଭୁତ, ଅନୁପମ ଏବଂ ଅଦ୍ୱିତୀୟ ଘଟଣା ଅଟେ । ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଦ୍ୱାରା ସାଧନା ପୂର୍ବକ ଧର୍ମର ଯେଉଁ ଅପୂର୍ବ ଅନୁଭୂତିମାନ ପ୍ରାପ୍ତ ହୋଇଥିଲା, ସେସବୁର ବ୍ୟବହାରିକ ସିଦ୍ଧାନ୍ତ ସମୂହର ପ୍ରତିପାଦନ କରିବାର କାର୍ଯ୍ୟ ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ସଫଳ ଭାବରେ ରୂପାୟନ ହୋଇଥିଲା । ଡଃ ରାମଧାରୀ ସିଂହ ଦିନକର ଗୋଟିଏ ସ୍ଥାନରେ ଯଥାର୍ଥରେ ଲେଖିଛନ୍ତି, ରାମକୃଷ୍ଣ ଏବଂ ବିବେକାନନ୍ଦ ଗୋଟିଏ ଜୀବନର ଦୁଇଟି ଅଂଶ ଏବଂ ଏକ ସତ୍ୟର ଦୁଇପକ୍ଷ ଅଟନ୍ତି । ରାମକୃଷ୍ଣ ଅନୁଭୂତି ଥିଲେ, ବିବେକାନନ୍ଦ ଏହାର ବ୍ୟାଖ୍ୟାକାର ରୂପେ ଆସିଥିଲେ । ରାମକୃଷ୍ଣ ଦର୍ଶନ ଥିଲେ, ବିବେକାନନ୍ଦ ଏହାର କ୍ରିୟାପକ୍ଷର ଆଖ୍ୟାନ କରିଥିଲେ । ଯଦି ରାମକୃଷ୍ଣ ହିନ୍ଦୁଧର୍ମର କମଣ୍ଡଳୁ ମଧ୍ୟରେ ବନ୍ଦୀ ହୋଇଥିବା ଗଙ୍ଗା ଥିଲେ, ତେବେ ବିବେକାନନ୍ଦ ଏହି ଗଙ୍ଗାର ଭଗୀରଥ ଥିଲେ । ସେ ସେହି ପବିତ୍ର ଗଙ୍ଗା ଜଳକୁ କମଣ୍ଡଳୁ ମଧ୍ୟରୁ ବାହାର କରି ସମଗ୍ର ବିଶ୍ୱରେ ଖେଳାଇ ଦେଇଥିଲେ ।

୧ ଜାନୁଆରୀ ୧୮୬୩ ମସିହାରେ ଦିବ୍ୟ ବିଭୂତି ସମ୍ପନ୍ନ ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମ କଲିକତାରେ ହୋଇଥିଲା । ତାଙ୍କର ପିତୃଦତ୍ତ ନାମ ନରେନ୍ଦ୍ର ଦତ୍ତ ଥିଲା । ପିତାଙ୍କ ନାମ ବିଶ୍ୱନାଥ ଦତ୍ତ ଏବଂ ମାତାଙ୍କ ନାମ ଭୁବନେଶ୍ୱରୀ ଥିଲା । ତାଙ୍କର ମହାସମାଧି ୪ ଜୁଲାଇ ୧୯୦୨ ମସିହାରେ ହୋଇଥିଲା । ଅର୍ଥାତ୍ ସେ ମାତ୍ର ୩୯ ବର୍ଷ ପାଞ୍ଚମାସ ଏବଂ ଚବିଶଦିନ ଧରାଧାମରେ ବଞ୍ଚି ରହିଥିଲେ ଚ ଏହି ସ୍ୱଳ୍ପ ଅବଧି ମଧ୍ୟରେ ସେ ରାଷ୍ଟ୍ରୋତ୍ଥାନ, ପୁନର୍ଜାଗରଣ ତଥା ଭାରତୀୟ ମହାନ୍ ସଂସ୍କୃତିକୁ ସାରା ବିଶ୍ୱରେ ଚିହ୍ନିତ କରାଇ ସୁପ୍ତ ଯୁବଶକ୍ତି ଏବଂ ଉର୍ଜାକୁ ନିଜ ଧର୍ମରେ ପରିଚିତ କରାଇ ଭାରତ ପ୍ରତି ଗୌରବ ଏବଂ ଭବିଷ୍ୟତ ପ୍ରତି ଆସ୍ଥା ଉତ୍ପନ୍ନ କରିବା ପ୍ରଭୃତି ଯେଉଁ ମହାନ୍ କାର୍ଯ୍ୟମାନ ସମ୍ପାଦନ କରିଥିଲେ ଏହା ହଜାର ବର୍ଷ ମଧ୍ୟରେ ମଧ୍ୟ ସମ୍ଭବ ହୋଇପାରି ନ ଥିଲା । ତାଙ୍କର ସମଗ୍ର ଜୀବନର ଏକ ଏକ ମୁହୂର୍ତ୍ତ ଭାରତର ନବନିର୍ମାଣ, ଦେଶ ଭକ୍ତିର ଦୃଢ଼ ଭାବନା ଜାଗ୍ରତ କରିବା ଏବଂ ଧର୍ମର ଯଥାର୍ଥ ବ୍ୟାଖ୍ୟାରେ ବ୍ୟତୀତ ହୋଇଥିଲା ।

ସ୍ୱାମୀ ବିବେକାନନ୍ଦଙ୍କ ମତରେ କର୍ମ କରିବା ହିଁ ଉପାସନା କରିବା, ବିଜୟପ୍ରାପ୍ତ କରିବା ହିଁ ତ୍ୟାଗ କରିବା ଅଟେ । ସ୍ୱୟଂ ଜୀବନ ହିଁ ଧର୍ମ ଅଟେ । କର୍ମ ଜ୍ଞାନ ଭକ୍ତିଠାରୁ ଭିନ୍ନ ନୁହେଁ, ବରଂ ଏହା ଅଭିବ୍ୟକ୍ତ କରିବା ଅଟେ । ତାଙ୍କ ପାଇଁ କାରଖାନା, ଅଧ୍ୟୟନ କକ୍ଷ, କ୍ଷେତ ଓ ଖେଳପଡ଼ିଆ ପ୍ରଭୃତି ଈଶ୍ୱରଙ୍କ ସାକ୍ଷାତ୍କାରର ଏପରି ଉତ୍ତମ ଏବଂ ଯୋଗ୍ୟ ସ୍ଥାନ ଅଟେ, ଯେପରି ସାଧୁଙ୍କ କୁଟୀର ବା ମନ୍ଦିର ଦ୍ୱାରା ସେମାନଙ୍କ ପାଇଁ ମାନବ ସେବା ଏବଂ ଈଶ୍ୱରଙ୍କ ପୂଜା, ପୌରୁଷ ତଥା ଶ୍ରଦ୍ଧା, ସତ୍ୟନିଷ୍ଠ ନୈତିକବଳ ଏବଂ ଆଧ୍ୟାତ୍ମିକତାରେ କୌଣସି ପ୍ରଭେଦ ନାହିଁ । ଥରେ ସେ କହିଥିଲେ କଳା, ବିଜ୍ଞାନ ଏବଂ ଧର୍ମ ଗୋଟିଏ ସତ୍ୟର ଅଭିବ୍ୟକ୍ତିର ବିଭିନ୍ନ ମାଧ୍ୟମ ଅଟେ । ସ୍ୱାମୀଜୀ ବହୁ ମହତ୍ ଉଦ୍ଦେଶ୍ୟ ରଖି ସମଗ୍ର ଭାରତବର୍ଷ ଭ୍ରମଣ କରିଥିଲେ । ସେ ଭାରତର ପ୍ରତି କୋଣରେ ଭ୍ରମଣ କରି ସାଧାରଣ ଜନତାଙ୍କ ବ୍ୟଥା–କଥାକୁ ପ୍ରତ୍ୟକ୍ଷ ଭାବରେ ଦର୍ଶନ କରିଥିଲେ, ସେମାନଙ୍କ ଦୁଃଖ ଦୁର୍ଦ୍ଦଶାକୁ ବୁଝି ପାରିଥିଲେ ତଥା ସେମାନଙ୍କ ମାନସିକତା ସହିତ ପରିଚିତ ହୋଇ ପାରିଥିଲେ । ଆଦି ଶଙ୍କରାଚାର୍ଯ୍ୟଙ୍କ ପରେ କନ୍ୟାକୁମାରୀଠାରୁ କାଶ୍ମୀର ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ ସର୍ବାଧିକ ଭ୍ରମଣ କରିଥିବା ତଥା ଦେଶବାସୀଙ୍କ ସ୍ଥିତିକୁ ଯଥାର୍ଥ ଭାବରେ ଅଧ୍ୟୟନ କରିଥିବା ବ୍ୟକ୍ତି ଥିଲେ ଏକମାତ୍ର ସ୍ୱାମୀ ବିବେକାନନ୍ଦ । ସେ ଅନୁଭବ କରିଥିଲେ, ସବୁଠାରୁ ବଡ଼କାର୍ଯ୍ୟ ଧର୍ମର ପୁନଃସ୍ଥାପନା ଅଟେ । ବୁଦ୍ଧିବାଦୀ ମନୁଷ୍ୟମାନଙ୍କର ଧର୍ମ

ଉପରେ ଶ୍ରଦ୍ଧା, ବିଶ୍ୱାସ କେବଳ ଭାରତବର୍ଷରେ ନୁହେଁ, ଅପିତୁ ସମସ୍ତ ଦେଶରେ ଦେଦୀପ୍ୟମାନ ହୋଇଯାଇଛି । ଏଣୁ ଏହା ଆବଶ୍ୟକ ହୋଇ ପଡ଼ିଛି ଯେ, ଧର୍ମର ଏପରି ବ୍ୟାଖ୍ୟା ପ୍ରସ୍ତୁତ କରାଯିବ, ଯାହା ଅଭିନବ ହୋଇଥିବ, ମନୁଷ୍ୟର ଗ୍ରହଣଯୋଗ୍ୟ ହୋଇଥିବ ଏବଂ ମନୁଷ୍ୟମାନଙ୍କ ନିମିତ୍ତ ଗ୍ରହଣଯୋଗ୍ୟ ହୋଇପାରୁଥିବ ତଥା ବିଜୟମାର୍ଗରେ କେହି ବାଧା ଦେଉ ନ ଥିବେ । ଦ୍ୱିତୀୟ କାର୍ଯ୍ୟ, ହିନ୍ଦୁଧର୍ମ ଉପରେ ହିନ୍ଦୁମାନଙ୍କ ଶ୍ରଦ୍ଧାଭାବ ଅତୁଟ ରଖିବା । କିନ୍ତୁ ହିନ୍ଦୁଗଣ ୟୁରୋପ ଦେଶ ଦ୍ୱାରା ଅଧିକ ପ୍ରଭାବିତ ହୋଇଯାଇଛନ୍ତି ଏବଂ ନିଜର ଧର୍ମ ଓ ଇତିହାସ ଉପରେ ମଧ୍ୟ ସେମାନେ ସେ ପର୍ଯ୍ୟନ୍ତ ବିଶ୍ୱାସ କରିବାକୁ ପ୍ରସ୍ତୁତ ନ ଥିଲେ, ଯେପର୍ଯ୍ୟନ୍ତ ୟୁରୋପ ଲୋକେ ସେମାନଙ୍କୁ ପ୍ରଶଂସା ନ କରିଛନ୍ତି । ତାଙ୍କର ତୃତୀୟ କାର୍ଯ୍ୟ ଥିଲା, ଭାରତବାସୀଙ୍କ ହୃଦୟରେ ଆତ୍ମଗୌରବ ଭାବନାକୁ ପ୍ରେରିତ କରିବା, ସେମାନଙ୍କୁ ନିଜ ସଂସ୍କୃତି, ଇତିହାସ ଏବଂ ଆଧ୍ୟାତ୍ମିକ ପରଂପରାର ସୁଯୋଗ୍ୟ ଉତ୍ତରାଧିକାରୀ ଭାବେ ସାବ୍ୟସ୍ତ କରିବା, ଏହି ତିନିଗୋଟି କାର୍ଯ୍ୟକୁ ସ୍ୱାମୀ ବିବେକାନନ୍ଦ ସଫଳତା ପୂର୍ବକ ସମ୍ପନ୍ନ କରି ପାରିଥିଲେ । ତାଙ୍କ ସମ୍ବନ୍ଧରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଏହି କଥନ ସମୀଚୀନ ଅଟେ । ସେ ଏକଦା ଯଥାର୍ଥରେ କହିଥିଲେ, ଯଦି କେହି ଭାରତକୁ ବୁଝିବାକୁ ଚାହେଁ, ତେବେ ସେ ସ୍ୱାମୀ ବିବେକାନନ୍ଦଙ୍କୁ ପାଠ କରିବା ଉଚିତ । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଶବ୍ଦରେ ସ୍ୱାମୀ ବିବେକାନନ୍ଦଙ୍କ ଧର୍ମ ରାଷ୍ଟ୍ରୀୟତାକୁ ଉତ୍ତେଜନା ଦେବା ପରି ଧର୍ମ ଥିଲା । ନୂତନ ପିଢ଼ି ଲୋକମାନଙ୍କ ହୃଦୟରେ ଭାରତ ପ୍ରତି ଭକ୍ତିଭାବ ଜାଗ୍ରତ, ସେମାନଙ୍କ ଅତୀତ ପ୍ରତି ଗୌରବ ଗାଥା ଏବଂ ସେମାନଙ୍କ ଭବିଷ୍ୟତ ପ୍ରତି ନୂତନ ଆସ୍ଥା ଉତ୍ପନ୍ନ କରିଥିଲା । ତାଙ୍କର ଉଦ୍‌ଘୋଷଣା ଦ୍ୱାରା ଲୋକମାନଙ୍କ ମଧ୍ୟରେ ଆତ୍ମନିର୍ଭରତା ଏବଂ ସ୍ୱାଭିମାନର ଭାବନା ଜାଗ୍ରତ ହୋଇଥିଲା ।

୧୧ ସେପ୍ଟେମ୍ବର ୧୮୯୩ ମସିହାରେ ସିକାଗୋ ସହରର ଆର୍ଟ ଇନ୍‌ଷ୍ଟିଚ୍ୟୁଟର ପ୍ରସିଦ୍ଧ 'କଲମ୍ବସ୍' ସମ୍ମିଳନୀ ଗୃହଟି ସାତ ହଜାର ଶ୍ରୋତାଙ୍କ ଉପସ୍ଥିତିରେ ଭରପୂର ହୋଇ ଯାଇଥିଲା । ଏହିଠାରେ ସ୍ୱାମୀ ବିବେକାନନ୍ଦ ଯେଉଁ ଐତିହାସିକ ଭାଷଣ ପ୍ରଦାନ କରିଥିଲେ, ତାହା ଆଜି ମଧ୍ୟ ବିଶ୍ୱର ସର୍ବଶ୍ରେଷ୍ଠ ଭାଷଣ ଭାବରେ ସ୍ୱୀକୃତ । ଏହି ଭାଷଣର ପ୍ରଥମ ସମ୍ବୋଧନକାରୀ ବାକ୍ୟାଂଶ, ଆମେରିକାର ଭଉଣୀ ଓ ଭାଇମାନେ (ସିଷ୍ଟର୍ସ ଏଣ୍ଡ ବ୍ରଦର୍ସ ଅଫ୍ ଆମେରିକା) ଏତିକି ମାତ୍ର ଶୁଣି ସାରିବା ପରେ ଭବନର ସମସ୍ତ ଶ୍ରୋତା ନିଜ ନିଜର ଆସନରେ ଦଣ୍ଡାୟମାନ ହୋଇ କରତାଳି ଧ୍ୱନିରେ ସମଗ୍ର ପ୍ରେକ୍ଷାଳୟଟିକୁ ମୁଖରିତ କରି ଦେଇଥିଲେ । ତାଙ୍କର ଏତିକିମାତ୍ର ବାକ୍ୟାଂଶ ବିଦ୍ୟୁତ୍ ତରଙ୍ଗ ସଦୃଶ ପ୍ରଭାବ ମହାସାଗରରେ ଉପସ୍ଥିତ ଜନମେଦିନୀ ଉପରେ ଯେପରି ହୋଇଥିଲା । କରତାଳି ଧ୍ୱନିରେ ସଭାଗୃହ କମ୍ପି ଉଠିଥିଲା । ଭାରତୀୟ ସଂସ୍କୃତିର 'ବସୁଧୈବ କୁଟୁମ୍ବକମ୍'ର ଅବଧାରଣା ସହିତ ଉପସ୍ଥିତ ଶ୍ରୋତାମାନଙ୍କର ପରିଚୟ ହୋଇଥିଲା । ବୈଶ୍ୱିକ ପରିବାରର ବିଚାର ଧାରାର ଏହି ସମ୍ବୋଧନ ଥିଲା, ଆଧାରଶିଳା, ଯାହା ସମସ୍ତ ବନ୍ଧୁମାନଙ୍କ ଉପରେ ଚୁମ୍ବକୀୟ ପ୍ରଭାବ ପକାଇଥିଲା । ସ୍ୱାମୀଜୀ ନିଜ ବ୍ୟାଖ୍ୟାନରେ କହିଥିଲେ, ମୁଁ ଏପରି ଏକ ଧର୍ମର ଅନୁଗାମୀ ହୋଇଥିବାରୁ ଗର୍ବ ଅନୁଭବ କରୁଛି, ଯାହା ସମଗ୍ର ବିଶ୍ୱକୁ ସହିଷ୍ଣୁତା ତଥା ସାର୍ବଭୌମ ସଂସ୍କୃତି ଉଭୟର ଶିକ୍ଷା ପ୍ରଦାନ କରିଥାଏ । ଆମ୍ଭେମାନେ ସମସ୍ତେ ବିଭିନ୍ନ ଧର୍ମ ପ୍ରତି ସହିଷ୍ଣୁତାରେ ବିଶ୍ୱାସ କରୁ ଏବଂ ସମସ୍ତ ଧର୍ମକୁ ସତ୍ୟନିଷ୍ଠ ଭାବରେ ସ୍ୱୀକାର କରୁ । ମୁଁ ଏପରି ଏକ ଦେଶର ବ୍ୟକ୍ତି ହୋଇଥିବାରୁ ନିଜକୁ ଅତ୍ୟନ୍ତ ଗର୍ବିତ ଅନୁଭବ କରେ । ଯାହା ଏହି ପୃଥିବୀର ସମସ୍ତ ଧର୍ମ ଏବଂ ଦେଶର ଉତ୍ପୀଡ଼ିତ ବର୍ଗ ତଥା ଶରଣାର୍ଥୀମାନଙ୍କୁ ଆଶ୍ରୟ ପ୍ରଦାନ କରିଅଛି । ଏହା ଆପଣମାନଙ୍କୁ ଅବଗତ କରାଇବାରେ ମୁଁ ନିଜକୁ ଗୌରବାନ୍ୱିତ ମନେକରୁଛି ଯେ, ଆମ୍ଭେମାନେ ନିଜ ପକ୍ଷରେ ୟୁହୂଦୀମାନଙ୍କ ବିଶୁଦ୍ଧତମ ଅବଶିଷ୍ଟ ଅଂଶକୁ ସ୍ଥାନ ପ୍ରଦାନ କରିଥିଲୁ । ଯେଉଁମାନେ ଦକ୍ଷିଣ ଭାରତ ଆସି ସେହି ବର୍ଷ ଶରଣ ନେଇଥିଲେ । ଯେଉଁବର୍ଷ ସେମାନଙ୍କର ପବିତ୍ର ମନ୍ଦିର ରୋମାନ ଜାତିର ଅତ୍ୟାଚାର ଦ୍ୱାରା ଧୂଳିସାତ୍ ହୋଇଯାଇଥିଲା । ଏପରି ଧର୍ମର ଅନୁଯାୟୀ ହୋଇଥିବାରୁ ମୁଁ ନିଜକୁ ଗର୍ବିତ ଅନୁଭବ କରୁଛି । ଯାହା ମହାନ୍ ଜରଥୁଷ୍ଟ୍ର ଜାତିର ଅବଶିଷ୍ଟ ଅଂଶକୁ ଶରଣ ଦେଇଥିଲା ଏବଂ ଯାହାର ପାଳନ ସେ ଆଜି ପର୍ଯ୍ୟନ୍ତ କରୁଅଛି । ଭାଇମାନେ ମୁଁ ଆପଣମାନଙ୍କୁ ଏକ ସ୍ତୋତ୍ରର କିଛି ପଙ୍‌କ୍ତି ଶୁଣାଉଅଛି, ଯାହାର ଆବୃତ୍ତି ମୁଁ ବାଲ୍ୟକାଳରୁ କରିଆସୁଛି ଏବଂ ଯାହାର ଆବୃତ୍ତି ପ୍ରତିଦିନ ଲକ୍ଷ ଲକ୍ଷ ମନୁଷ୍ୟ କରୁଛନ୍ତି ।

'ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥ ଜୁଷାମ୍,
ନୃଣାମେକୋଗମ୍ୟସ୍ତ୍ୱମସି ପୟସାର୍ଣ୍ଣବ ଇବ ।'

ଯାହାର ସରଳାର୍ଥ ହେଲା, ଯେପରି ବିଭିନ୍ନ ନଦୀ ଭିନ୍ନ ଭିନ୍ନ ସ୍ରୋତରୁ ନିଃସରି ଆସି ସମୁଦ୍ରରେ ମିଳିତ ହୋଇଥାଏ, ସେହିପରି ହେ ପ୍ରଭୋ ! ଭିନ୍ନ ଭିନ୍ନ ରୁଚି ଅନୁସାରେ ବିଭିନ୍ନ ବିଷମ ଅଥବା ସରଳ ମାର୍ଗରେ ଯାଉଥିବା ଲୋକେ ଶେଷରେ ଆପଣଙ୍କ ନିକଟକୁ ଆସି ସମ୍ମିଳିତ ହୋଇଥାନ୍ତି । ସ୍ୱାମୀଜୀ ତାଙ୍କର ବକ୍ତବ୍ୟକୁ ଜାରି ରଖି କହିବାକୁ ଲାଗିଲେ, ଏହି ସଭା, ଯାହା ଏ ପର୍ଯ୍ୟନ୍ତ ଆୟୋଜିତ ସର୍ବଶ୍ରେଷ୍ଠ ପବିତ୍ର ସମ୍ମେଳନମାନଙ୍କ ମଧ୍ୟରୁ ଏକ ଅଟେ । ସ୍ୱତଃ ଶ୍ରୀମଦ୍ ଭଗବଦ୍ ଗୀତାର ଏହି ଅଦ୍ଭୁତ ଉପଦେଶର ପ୍ରତିପାଦନ ଏବଂ ସମଗ୍ର ଜଗତ୍ ପ୍ରତି ଏହାର ଘୋଷଣା ଅଟେ,

'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍,
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।'

ଯିଏ ମୋ ଆଡ଼କୁ ଆଗେଇ ଆସେ, ସେ ଯେଉଁ ପ୍ରକାରର ହୋଇଥିଲେ ମଧ୍ୟ ମୁଁ ତାହାକୁ ପ୍ରାପ୍ତ ହୋଇଥାଏ । ମନୁଷ୍ୟ ଭିନ୍ନ ଭିନ୍ନ ମାର୍ଗ ଦ୍ୱାରା ପ୍ରଯତ୍ନ କରି ଶେଷରେ ମୋ ଆଡ଼କୁ ହିଁ ଆସିଥାଏ । ସାମ୍ପ୍ରଦାୟିକତା, ହଠଧର୍ମିତା ଏବଂ ଏହାର ବୀଭତ୍ସ ବଂଶଧରଗଣ ଧର୍ମାନ୍ଧତା ନାମରେ ଆମର ଏହି ସୁନ୍ଦର ପୃଥ୍ୱୀ ଉପରେ ବହୁତକାଳ ପର୍ଯ୍ୟନ୍ତ ରାଜ୍ କରି ସାରିଛନ୍ତି । ସେମାନେ ଧରିତ୍ରୀକୁ ହିଂସାରେ ପୂର୍ଣ୍ଣ କରିଦେଇଛନ୍ତି, ଏହାକୁ ବାରମ୍ବାର ମାନବତାର ରକ୍ତରେ ସ୍ନାନ କରିଛନ୍ତି, ସଭ୍ୟତାକୁ ବିଧ୍ୱସ୍ତ କରିଛନ୍ତି ଏବଂ ସମଗ୍ର ଦେଶକୁ ନିରାଶା ଗର୍ତ୍ତରେ ପକାଇ ଦେଇଛନ୍ତି । ଯଦି ସେମାନେ ବୀଭତ୍ସ ଦାନବ ହୋଇ ନ ଥାନ୍ତେ, ତେବେ ଆମର ମାନବ ସମାଜ ଆଜିର ଅବସ୍ଥାଠାରୁ ଆହୁରି କେତେ ସମୁନ୍ନତ ହୋଇଯାଇ ଥାଆନ୍ତା । କିନ୍ତୁ ଏବେ ସେହି ସମୟ ଆସିଯାଇଛି ଏବଂ ମୁଁ ଆନ୍ତରିକ ରୂପେ ଆଶା କରୁଛି ଯେ, ଆଜି ପ୍ରାତଃକାଳରେ ଏହି ସଭାର ସମ୍ମାନରେ ଯେଉଁ ଘଣ୍ଟାଧ୍ୱନି ହୋଇଥିଲା, ତାହା ସମସ୍ତ ଧର୍ମାନ୍ଧତାର ତରବାରୀ କିମ୍ବା ଲେଖନୀ ଦ୍ୱାରା ସଂଗଠିତ ହେଉଥିବା ସମସ୍ତ ଉତ୍ପୀଡ଼ନର ତଥା ଏକ ଲକ୍ଷ୍ୟ ଦିଗରେ ଅଗ୍ରସର ହେଉଥିବା ମାନବର ପାରମ୍ପରିକ କଟୁତାର ମୃତ୍ୟୁ ନିନାଦ ସିଦ୍ଧ ହେଉ । ଏହାପରେ ୧୫, ୧୯,୨୦,୨୬ ତଥା ୨୭ ଡିସେମ୍ବର ୧୮୯୩ ମସିହାରେ ସ୍ୱାମୀ ବିବେକାନନ୍ଦ ତାଙ୍କର ମହତ୍ୱପୂର୍ଣ୍ଣ ଭାଷଣ ବିଶ୍ୱ ଧର୍ମ ମହାସଭାରେ ପ୍ରଦାନ କରିଥିଲେ । ପରେ ଆମେରିକା ତଥା ୟୁରୋପର ବିଭିନ୍ନ ନଗରରେ ବହୁ ଭାଷଣର ଆୟୋଜନ କରାଯାଇଥିଲା । ସ୍ୱାମୀ ବିବେକାନନ୍ଦ ଜଣେ ଯୋଦ୍ଧା ସନ୍ନ୍ୟାସୀ ରୂପେ ସମଗ୍ର ବିଶ୍ୱରେ ନିଜର ଅପ୍ରତୀମ ବିଦ୍ୱତ୍ତାକୁ ସିଦ୍ଧ କରିଥିଲେ । ଧର୍ମସଭାର ଆୟୋଜକ ପ୍ରଫେସର ବୈରୋଜ୍‌ଙ୍କୁ ପ୍ରଫେସର ରାଇଟ୍, ସ୍ୱାମୀ ବିବେକାନନ୍ଦଙ୍କୁ ବିଶ୍ୱଧର୍ମ–ମହାସଭାରେ ବ୍ୟାଖ୍ୟାନ ଦେବା ନିମିତ୍ତ ଯେଉଁ ପ୍ରଶଂସାପତ୍ର ଲେଖିଥିଲେ, ତାହା ଶତ ପ୍ରତିଶତ ସିଦ୍ଧ ସାବ୍ୟସ୍ତ ହୋଇଥିଲା । ସେହି ଐତିହାସିକ ପ୍ରଶଂସା ପତ୍ରଟି ଏହିପରି ଥିଲା ।

'ସମଗ୍ର ଆମେରିକାର ସମସ୍ତ ପ୍ରଫେସରବୃନ୍ଦଙ୍କ ବିଦ୍ୱତ୍ତା ଗୋଟିଏ ପଟରେ ଏବଂ ଏହି ବ୍ୟକ୍ତିଙ୍କ ବିଦ୍ୱତ୍ତା ଅନ୍ୟପଟରେ ରହିଲେ ମଧ୍ୟ ତଥାପି ଆମ୍ଭେମାନେ ଏହା ସମକକ୍ଷ ହୋଇପାରିବା ନାହିଁ, କୃପା କରି ଏହାଙ୍କୁ ଧର୍ମ ସଭାରେ ଅଂଶ ଗ୍ରହଣ କରିବାକୁ ଅନୁମତି ପ୍ରଦାନ କରନ୍ତୁ ।' ଏହି କ୍ରମରେ ସ୍ୱାମୀ ବିବେକାନନ୍ଦ ଚାରିବର୍ଷ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଦେଶରେ ଧାର୍ମିକ ବ୍ୟାଖ୍ୟାନମାନ କରି ଚାଲିଥିଲେ । ୧୫ ଫେବୃଆରୀ ୧୮୯୭ ମସିହାରେ ସେ ସ୍ୱଦେଶ ଫେରି ଆସିଥିଲେ । ଭାରତର ଧରାଧାମରେ ପହଞ୍ଚିବା ମାତ୍ରେ ସେ ଭାରତ ମାତାର ଚରଣରେ ପ୍ରଣାମ ନିବେଦନ କରିଥିଲେ ତଥା ମାତୃଭୂମିର ପବିତ୍ରରଜକୁ ନିଜ ମସ୍ତକରେ ଲଗାଇ ଥିଲେ । ମାତାଙ୍କର ପବିତ୍ର ମାଟିଦ୍ୱାରା ସେ ନିଜର ଅପବିତ୍ର ଶରୀରକୁ ପବିତ୍ର କରି ଦେଇଥିଲେ । ସେତେବେଳେ ସେ ଅତ୍ୟନ୍ତ ଭାବପୂର୍ଣ୍ଣ ସ୍ୱରରେ କହିଥିଲେ, 'ହେ ମାତୃଭୂମି ! ମାତା ମୋର, ମୋର ଅପବିତ୍ରତା ନଷ୍ଟ କରିଦିଅ । ତୁମଠାରୁ ଦୂରରେ ମୋର ଏହି ଶରୀର ଅପବିତ୍ର ହୋଇଯାଇଥିଲା । ଆଜି ତୋ କୋଳରେ ମୋତେ ଶାନ୍ତି ମିଳିଛି ।'

ସ୍ୱାମୀ ବିବେକାନନ୍ଦ ସେନାପତି ରୂପେ ନିଜର ଅଭିଯାନର ଯୋଜନା ବୁଝାଇବାକୁ ଯାଇ ନିଜ ଲୋକମାନଙ୍କୁ ଏକତ୍ରିତ ଭାବେ ଉଠି ଠିଆ ହେବା ପାଇଁ ଆହ୍ୱାନ ଦେଇ କହିଥିଲେ, 'ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ନିବୋଧତ । ସେ କହିଥିଲେ, ମୋର ଯୋଜନା ହେଲା – ଭାରତରେ ଏପରି ସଂସ୍ଥାମାନ ହେଉ, ଯିଏ ଆମ ଶାସ୍ତ୍ରମାନଙ୍କର ସତ୍ୟକୁ ଦେଶ ଦେଶାନ୍ତରରେ ପ୍ରସାରିତ କରିବା ପାଇଁ ନବଯୁବକମାନଙ୍କୁ ପ୍ରଶିକ୍ଷିତ କରୁ । ମୋତେ ଲୋକ ଦରକାର ଏବଂ ସବୁ କିଛି ମିଳିଯିବ । କିନ୍ତୁ ମୋତେ ବଳବାନ୍, ଉତ୍ସାହୀ, ବିଶ୍ୱାସୀ, ସତ୍ୟନିଷ୍ଠ ନବଯୁବକ ଦରକାର । ଏପରି ଏକ ଶତ ନବଯୁବକ ସଂସାରରେ କ୍ରାନ୍ତି ଆଣିପାରିବେ । ସବୁଠାରୁ ବଡ଼କଥା ହେଲା ସଂକଳ୍ପ, ଏହା ସର୍ବଜୟୀ ହେଉ, କାରଣ ଏହା ଈଶ୍ୱରଙ୍କ ଅବଦାନ । ଶୁଦ୍ଧ ଦୃଢ଼ ସଂକଳ୍ପ ସର୍ବଶକ୍ତିମାନ ଅଟେ । ଏହା ଏକ ସର୍ବମାନ୍ୟ ତଥ୍ୟ ଅଟେ ଯେ, ସ୍ୱାମୀ ବିବେକାନନ୍ଦ ଆଧୁନିକ ମାନବର ଆଦର୍ଶ ପ୍ରତିନିଧି ଅଟନ୍ତି । ବିଶେଷକରି ଭାରତୀୟ ଯୁବବର୍ଗଙ୍କ ନିମିତ୍ତ ସ୍ୱାମୀଜୀଙ୍କଠାରୁ ଆଉ କେହି ବଡ଼ ନେତା ହୋଇ ନ ପାରନ୍ତି । ଶ୍ରୀମଦ୍ ଭଗବତ୍‌ଗୀତାର ଏହି ବାଣୀ 'ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ' ଏହି ସ୍ୱାମୀଜୀଙ୍କ ନିମିତ୍ତ ଅକ୍ଷରଶଃ ସତ୍ୟ ଅଟେ । ଏପରି ଏକ ଦିବ୍ୟ ବିଭୂତିଙ୍କ ଅବତରଣ ଭାରତରେ ହେବା ଏକ ଅଭୂତପୂର୍ବ ଘଟଣା ଅଟେ । ଭଗିନୀ କ୍ରିଷ୍ଟିନ୍‌ଙ୍କ କଥନ ରେଖାଙ୍କିତ କରିବା ଯୋଗ୍ୟ ଅଟେ । ଧନ୍ୟ ଅଟେ ସେହି ଦେଶ, ଯିଏ ଏହାଙ୍କୁ ଜନ୍ମ ଦେଇଛି, ଧନ୍ୟ ଅଟେ ସେହି ମନୁଷ୍ୟ, ଯିଏ ସେହି ସମୟରେ ଏହି ପୃଥିବୀରେ ଜୀବିତ ଥିଲେ ଏବଂ ଧନ୍ୟ ଅଟନ୍ତି କେତେକ ଲୋକ ଯେଉଁମାନଙ୍କୁ ତାଙ୍କ ପାଦପଦ୍ମରେ ଉପବେଶନ କରିବାର ଦୁର୍ଲଭ ସୌଭାଗ୍ୟ ମିଳିଥିଲା ।

ପ୍ଲଟ ନଂ.–୨୭୬/ଏ, ଶହୀଦ ନଗର
ଭୁବନେଶ୍ୱର–୭୫୧୦୦୭

# ଉଦ୍ଭିଦ ପ୍ରତୀକ ଦୁର୍ଗାପୂଜା

**କାର୍ତ୍ତିକ ଚନ୍ଦ୍ର ଷଡ଼ଙ୍ଗୀ**

ଭଗବାନ ଶ୍ରୀକୃଷ୍ଣ ବ୍ରହ୍ମବୈବର୍ତ୍ତ ପୁରାଣରେ କହିଛନ୍ତି, ମା' ତୁମେ ମୂଳ ପ୍ରକୃତିର ଅଧିଶ୍ୱରୀ । ଏ ପ୍ରକୃତି ପୁଣି ଦୁଇ ପ୍ରକାରର– ବାହ୍ୟ ଓ ଅନ୍ତଃ । ଅନ୍ତଃକରଣର ମା' ଶକ୍ତି ରୂପେ ବିରାଜିତା । ସପ୍ତଶତୀ ଚଣ୍ଡୀରେ ସେଥିପାଇଁ କୁହାଯାଇଛି– 'ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା । ଶକ୍ତି ବିନା ଜୀବ ଶିବ ସଂଗେ ସମାନ । ବାହ୍ୟ ପ୍ରକୃତିରୁ ଆମକୁ ମିଳେ ଜୀବନୀଶକ୍ତି । ଯଥାର୍ଥରେ କୁହାଯାଇଛି, ପ୍ରକୃତି ପରମାଂ ଅଭୟଂ ବରଦାଂ ଅର୍ଥାତ୍ ପ୍ରକୃତି କ୍ରୋଡ଼ ହିଁ ଶ୍ରେଷ୍ଠ ଏବଂ ପ୍ରକୃତି କୋଳରେ ଅବସ୍ଥାନ, ବିଚରଣ ହିଁ ଆମକୁ ଅଭୟ ପ୍ରଦାନ କରିଥାଏ । ପ୍ରକୃତି ହେଉଛି ଆମର ମା' । ଗଛ ପତ୍ରରୁ ଆମେ ପାଇଥାଉ ଖାଦ୍ୟ, ବସ୍ତ୍ର ଓ ପବନ । ଆମେ ଯାହାଠାରୁ ଯାହା ପାଉ ସେମାନଙ୍କୁ କୃତଜ୍ଞତା ଜଣାଉ । ଅଟୋପ ସହକାରେ କୃତଜ୍ଞତା ଜଣାଇବାର ପ୍ରକ୍ରିୟାକୁ ଆମେ କହୁ ପୂଜା – ଅର୍ଥାତ୍ ପୂର୍ଣ୍ଣ ଭାବରେ ଜାଗ୍ରତ ବା ସମ୍ପୂର୍ଣ୍ଣ ଜାଗ୍ରତ ।

ପତ୍ର ହେଉଛି ବୃକ୍ଷର ରୋଷେଇଶାଳା । ଅଙ୍ଗାରକାମ୍ଳ ବାୟୁ ଗ୍ରହଣ କରି ଅଙ୍ଗାର ଆତ୍ମୀକରଣ ପ୍ରକ୍ରିୟାରେ ଗଛକୁ ପରିପୁଷ୍ଟ କରନ୍ତି ପତ୍ରମାନ । ଏହି ଗଛ ବା ବୃକ୍ଷ ମନୁଷ୍ୟର ଉପାସ୍ୟ । ବଣ ଜଙ୍ଗଲର ଆଦିମାନବ ପରମାପ୍ରକୃତିର ହିଁ ପୂଜା କରୁଥିଲା । ବୃକ୍ଷ ପୂଜା ଥିଲା ଆଦିମାନବର ପୂଜା । ସେହି ପରମ୍ପରାକୁ ମଥାର ତିଳକ କରି ଆଦିବାସୀ ସମ୍ପ୍ରଦାୟ ଶୁଖିଲା ବୃକ୍ଷର ଗଣ୍ଡିକୁ ପୋତି 'ଖମ୍ବ ପୂଜା' ଏବେ ବି ଅବ୍ୟାହତ ରଖିଛନ୍ତି । କୃତଜ୍ଞତାର ଏହା ଏକ ମହାନ୍ ସଂସ୍କୃତି । ଏହି ସଂସ୍କୃତିକୁ ମନେରଖିବା ପାଇଁ ଓ ଯୁଗେ ଯୁଗେ ସମସ୍ତଙ୍କର ହୃଦ୍‌ବୋଧ କରାଇବା ପାଇଁ ନବପତ୍ରିକା ପୂଜା ଦୁର୍ଗାପୂଜାର ଏକ ଅଂଶବିଶେଷ ହୋଇଯାଇଛି । ନବପତ୍ରିକା କହିଲେ, ନଅଗୋଟି ପତ୍ରର ସମାହାର । ପତ୍ର ସମନ୍ୱିତ ନଅଗୋଟି ଗଛର ଶାଖାକୁ ଶ୍ୱେତ ଅପରାଜିତା ଲତାରେ ବାନ୍ଧି ନଅଗୋଟି ଲାଲ ରଂଗର କପଡ଼ାରେ ଓଢ଼ଣୀ ଢାଙ୍କି ଦେବୀଙ୍କର ଶସ୍ୟ ଓ ବୃକ୍ଷର ପ୍ରତୀକ ଭାବେ ନବବଧୂ ବେଶରେ ଦୁର୍ଗାରୂପେ ପୂଜା କରାଯାଏ । ମହାସପ୍ତମୀର ପ୍ରଭାତରେ ଦେବୀଙ୍କର ସ୍ନାନ, ପ୍ରତିଷ୍ଠା ଓ ପୂଜାର ନାମ ନବପତ୍ରିକା । ନବପତ୍ରିକାଙ୍କ ପ୍ରବେଶ ଓ ଦେବୀ ରୂପେ ଉପାସନା ବୃକ୍ଷ ଉପାସନାର ଏକ ଅଂଶବିଶେଷ ।

ନଅଟି ଗଛର ଶାଖା ଓ ପତ୍ରମାନ ହେଲା – ସାରୁ, ହରିଦ୍ରା (ହଳଦୀ), ଜୟନ୍ତୀ, ବିଲ୍ୱ (ବେଲ), ଡାଳିମ୍ବ, ଅଶୋକ, ମାନସାରୁ, ଧାନ୍ୟ (ଧାନ) ସପତ୍ର (କଦଳୀଗଛ) । ଦେବୀଙ୍କର ପ୍ରତୀକ ଭାବରେ ନଅଗୋଟି ପତ୍ରଗୁଡ଼ିକ ପୂଜା ପାଆନ୍ତି । ସାରୁପତ୍ର କାଳିକା, ହଳଦୀ ପତ୍ର ଦୁର୍ଗା, ଜୟନ୍ତୀ ପତ୍ର କାର୍ତ୍ତିକୀ, ବେଲପତ୍ର ଶିବା, ଡାଳିମ୍ବ ପତ୍ର ରକ୍ତ ଦନ୍ତିକା, ଅଶୋକ ପତ୍ର ଶୋକର ହିତା, ମାନସାରୁ ପତ୍ର ଚାମୁଣ୍ଡା, ଧାନଗଛ ଲକ୍ଷ୍ମୀ, କଦଳୀ ଗଛ ବ୍ରହ୍ମାଣୀ ଆଦି ଦେବୀ ରୂପେ ପୂଜା ପାଆନ୍ତି । ପଣ୍ଡିତମାନେ ନବପତ୍ରିକା ପୂଜାକୁ ଶସ୍ୟଦେବୀ, ଶସ୍ୟମାତା, ବୃକ୍ଷଦେବୀ ଆଦି ନାମରେ ନାମିତ କରିଥାନ୍ତି । ଆଦିମାନବର ବୃକ୍ଷଦେବୀ ପୂଜାର ବିବର୍ତ୍ତନ ରୂପ ଦୁର୍ଗାପୂଜା । ଏହି ଦୁର୍ଗାପୂଜା ହିଁ ପରମାପ୍ରକୃତିର ପୂଜା । ବୃକ୍ଷଲତାଦି ନବଜୀବନର ପ୍ରତୀକ । ଦେବୀଙ୍କର ଅନ୍ୟନାମ ଶାକମ୍ଭରୀ ବୋଲି କୁହାଯାଇଛି କାରଣ ଦେବୀ ପୃଥିବୀକୁ ଶସ୍ୟରେ ପରିପୂର୍ଣ୍ଣ କରନ୍ତି ।

ତାମିଲନାଡ଼ୁର ଦଶହରାକୁ ତାଙ୍କର ଆଞ୍ଚଳିକ ଭାଷାରେ 'ଦୋମାଇକୋଲୁ' କୁହାଯାଏ । ତାମିଲ ହିନ୍ଦୁମାନେ ମହାଳୟାଠାରୁ ପୂଜା ଆରମ୍ଭ କରି ବିଜୟାଦଶମୀ ଦିନ ଉଦ୍‌ଯାପିତ କରିଥାନ୍ତି । ସେମାନଙ୍କ ପୂଜାରେ ପ୍ରସ୍ତୁତ ବ୍ୟଞ୍ଜନ ବିନ୍ ମଞ୍ଜି ଓ ନଡ଼ିଆରେ ପ୍ରସ୍ତୁତ ହୋଇଥାଏ । ଦେବୀଙ୍କର ପୂଜା ଶସ୍ୟର ପୂଜା ବା ଦେବୀ ଶସ୍ୟ, ବୃକ୍ଷ ଓ ପତ୍ରର ପ୍ରତୀକ ଏଇ ବିଶ୍ୱାସରେ ବିନ୍‌ମଞ୍ଜି ପ୍ରସ୍ତୁତ ବ୍ୟଞ୍ଜନ ଅତ୍ୟନ୍ତ ଲୋକପ୍ରିୟ । ଧର୍ମକୁ ଚଳଣି ଭିତରେ ରଖି

ଦିଆଯାଇ ସଂସ୍କୃତିରେ ପରିଣତ କରିଦିଆଯାଇଛି । ପ୍ରଶ୍ନ ଉଠେ କେଉଁ ସନ୍ଦେଶର ପ୍ରଚାର ପାଇଁ ଓ କେଉଁ ଉଦ୍ଦେଶ୍ୟରେ ଏ ପୂଜାର ଆୟୋଜନ ? ପ୍ରତ୍ୟେକ ପୂଜାପାର୍ବଣର କିଛି ନା କିଛି ଅନ୍ତର୍ନିହିତ ତତ୍ତ୍ୱ ରହିଛି । ଦୁର୍ଗାପୂଜାର ଉଦ୍ଦେଶ୍ୟ ଅସୁରମାନଙ୍କୁ ବିନାଶ କରିବା । ଯେଉଁମାନେ ନିର୍ଦ୍ଦୟ ବ୍ୟକ୍ତି ନିୟମ ଭଙ୍ଗ କରି ବେନିୟମ କାମକୁ ନୀତିରେ ପରିଣତ କରନ୍ତି, ସମାଜ ବା ସଂସାରକୁ ପୀଡ଼ା ଦିଅନ୍ତି, ସେଇମାନେ ଅସୁର ପଦବାଚ୍ୟ । ଅନ୍ୟର ସମ୍ପତ୍ତି, ଦେଶର ସମ୍ପତ୍ତି ପ୍ରତି ଲୋଲୁପ ଦୃଷ୍ଟି ଓ ପକ୍ଷାନ୍ତରେ ଅପହରଣ ଏକ ଆସୁରିକ ଗୁଣ । ଅପର୍ଣ୍ଣା ରୂପେ ବିରାଜିତା । ପ୍ରକୃତି ମା'କୁ ଆମେ ଦୋହନ କରି ଚାଲିଛେ । ବୃକ୍ଷମାନଙ୍କ ଠାରେ ଦେବତ୍ୱ ଆରୋପ କରି ବୃକ୍ଷ ସଂସ୍କୃତିକୁ ଆପଣେଇ ନେଇ ବୃକ୍ଷ ପୂଜା, ପତ୍ରପୂଜା କରୁଥିଲେ ହେଁ ସ୍ୱାର୍ଥପୂର୍ତ୍ତି ପାଇଁ ଅବାରିକ ଗଛକଟା, ଚୋରାବେପାର ବୃକ୍ଷ ସଂସ୍କୃତି ପ୍ରତି ଘୋର ଅବମାନନା ବ୍ୟତୀତ ଅନ୍ୟକିଛି ନୁହେଁ । ପ୍ରକୃତିର ପ୍ରତ୍ୟେକ ସୃଷ୍ଟି ଅଦ୍ୱିତୀୟ । ପୁନଶ୍ଚ ପ୍ରକୃତିର ନିଷ୍କ୍ରିୟ ସୃଷ୍ଟି ବି ମଣିଷ ପାଇଁ ରହସ୍ୟମୟ । ଉଦ୍ଭିଦ ପ୍ରତୀକ ଦୁର୍ଗାପୂଜା ସୂଚେଇ ଦିଏ ବୃକ୍ଷ, ପତ୍ର, ଶାଖା ଆଦି ପରମା ପ୍ରକୃତିର ସମ୍ଭାର ଓ ଅଙ୍ଗବିଶେଷ । ମନୁଷ୍ୟ ଯାହାଠାରୁ ଶସ୍ୟ, ବନସ୍ପତି, ଔଷଧ, ଖାଦ୍ୟ ଓ ଜୀବନ ପାଉଛି, ତା' ପ୍ରତି ନିର୍ଦ୍ଦୟ ନ ହେଉ । ନିର୍ଦ୍ଦୟ ହେବା ହିଁ ଆସୁରିକ ପ୍ରବୃତ୍ତି । ବୃକ୍ଷ ରୋପଣ, ବୃକ୍ଷ ପୂଜା ଓ ବୃକ୍ଷର ରକ୍ଷଣାବେକ୍ଷଣ ଦ୍ୱାରା ଉଦ୍ଭିଦ ପ୍ରତୀକ ଦୁର୍ଗାପୂଜା ଆମ ପାଇଁ ହୋଇଥାଏ ମୂର୍ତ୍ତିମନ୍ତ, ସାରାଂଶ ଓ ସରସ ।

ଆସିଷ୍ଟାଣ୍ଟ ପୋଷ୍ଟମାଷ୍ଟର, ଜିପିଓ
କଟକ – ୭୫୩୦୦୧



## ଆସନ୍ତା ଜାନୁଆରୀ ୮ରୁ ୧୪ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେବ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବାଣିଜ୍ୟ ମେଳା

ଆସନ୍ତା ଜାନୁଆରୀ ୮ରୁ ୧୪ ତାରିଖ ପର୍ଯ୍ୟନ୍ତ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବାଣିଜ୍ୟ ମେଳା ଭୁବନେଶ୍ୱରର ୟୁନିଟ୍–୩ ଇଡ୍‌କୋ ପ୍ରଦର୍ଶନୀ ପଡିଆରେ ଅନୁଷ୍ଠିତ ହେବ । ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗର ଶାସନ ସଚିବ ଶ୍ରୀ ପଞ୍ଚାନନ ଦାଶ ଏ ସଂକ୍ରାନ୍ତୀୟ ଏକ ସାମ୍ବାଦିକ ସମ୍ମିଳନୀକୁ ସମ୍ବୋଧିତ କରି କହିଲେ ଯେ ଓଡ଼ିଶା ସରକାର, ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିକାଶ ଲକ୍ଷ୍ୟ ନେଇ ନୂତନ ଭାବେ ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରିବା ପରେ ଗତ ତିନି ବର୍ଷ ଧରି ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ ବାଣିଜ୍ୟ ମେଳାର ଆୟୋଜନ କରିଆସୁଛି । ପୂର୍ବ ବର୍ଷମାନଙ୍କ ପରି ୨୦୧୫ ଜାନୁଆରୀ ୮ରୁ ୧୪ ତାରିଖ ପର୍ଯ୍ୟନ୍ତ ଏହି ମେଳା ଅନୁଷ୍ଠିତ ହେବ । ଏହି ମେଳାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଉଦ୍‌ଘାଟନ କରିବେ । ସାତଦିନ ବ୍ୟାପି ଆୟୋଜିତ ହେବାକୁ ଥିବା ଏହି ଉଦ୍ୟୋଗ ମେଳାରେ ୨୫୦ଟି ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ସହ ବୃହତ ଉଦ୍ୟୋଗ ଏବଂ ଯନ୍ତ୍ରପାତି ପ୍ରସ୍ତୁତକାରୀ କମ୍ପାନୀ ଭାଗ ନେବେ । ଏହା ଛଡା ବିଭିନ୍ନ ସରକାରୀ ବିଭାଗ, ଉଦ୍ୟୋଗ ଏବଂ ଜାତୀୟକରଣ ବ୍ୟାଙ୍କ ଏହି ପ୍ରଦର୍ଶନୀରେ ଭାଗ ନେବେ । ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗମାନଙ୍କର ଉତ୍ପାଦିତ ସାମଗ୍ରୀର ବିକ୍ରିବଟା, ବଜାର ଓ ପ୍ରଦର୍ଶନୀ ପାଇଁ ଏହି ଶିଳ୍ପ ମେଳା ସହାୟକ ହେବ । ସରକାରୀ ଉଦ୍ୟୋଗ ଏବଂ ବୃହତ ଶିଳ୍ପ ସଂସ୍ଥାଗୁଡିକ ସେମାନଙ୍କ ଦ୍ୱାରା ପ୍ରତିବର୍ଷ କ୍ରୟ କରାଯାଉଥିବା ବିଭିନ୍ନ ଭଣ୍ଡାର ସାମଗ୍ରୀର ପ୍ରଦର୍ଶନ କରିବେ । ଏହା ଦ୍ୱାରା ଆନୁସଙ୍ଗିକ ଶିଳ୍ପ ପ୍ରତିଷ୍ଠା ପାଇଁ ମାର୍ଗ ସୁଗମ ହୋଇପାରିବ । ଉଦ୍ୟୋଗୀମାନେ ବିଭିନ୍ନ ଆଧୁନିକ ଯନ୍ତ୍ରପାତି ଏବଂ ବୈଷୟିକ ଜ୍ଞାନ ସମ୍ବନ୍ଧରେ ମଧ୍ୟ ଆଲୋଚନା କରିବାର ସୁଯୋଗ ପାଇପାରିବେ । ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ ପାଇଁ ସ୍ୱତନ୍ତ୍ର ହାଙ୍ଗର ବ୍ୟବସ୍ଥା କରାଯିବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାରର ଆଧୁନିକ ଯନ୍ତ୍ରପାତି ଓ କୌଶଳର ପ୍ରଦର୍ଶନ କରାଯିବ । ଜାନୁଆରୀ ୯ ତାରିଖରେ ଖାଦ୍ୟ ପ୍ରକ୍ରିୟାକରଣ ସମ୍ବନ୍ଧରେ ଏକ ଆଲୋଚନା ଚକ୍ର ଆୟୋଜନ କରାଯିବ ।

# ପୁରାତନ ଐତିହାସିକ କ୍ଷେତ୍ର ଗୋହିରାଟିକିରି

**ଦଇତାରି ଦାଶ**

ପୁରାତନ ଇତିହାସରୁ ଜଣାଯାଏ ଯେ ବୈତରଣୀ ଅବବାହିକାରେ ଥିବା ଶ୍ରୀ ବିରଜା କ୍ଷେତ୍ର ଉଡ୍ର ରାଷ୍ଟ୍ର ରୂପେ ପ୍ରଥମରୁ ସ୍ଥାନ ପାଇ ଆସୁଅଛି । ଉଡ୍ର ସଭ୍ୟତା ଓ ସଂସ୍କୃତି ଏହି ଅଞ୍ଚଳରୁ ସୃଷ୍ଟି ବୋଲି ପ୍ରାଚୀନ ଗ୍ରନ୍ଥକାରମାନେ ତାଙ୍କ ଲେଖନୀ ମୁନରେ ଲିପିବଦ୍ଧ କରି ସ୍ୱୀକାର କରିଛନ୍ତି । ଉଡ୍ର ଶବ୍ଦର ଅର୍ଥ ପତିତ ଆର୍ଯ୍ୟ ବା ନିଷାଦ ସଭ୍ୟତା ।

ପ୍ରଥମେ ଏହି ବିରଜା କ୍ଷେତ୍ର ଘନ ଅରଣ୍ୟରେ ପୂର୍ଣ୍ଣ ଥିଲା । ଏହି ଅରଣ୍ୟରେ କେବଳ ନିଷାଦ ତଥା ଶବର ଶ୍ରେଣୀୟ ଲୋକମାନେ ବସବାସ କରୁଥିଲେ । କାଳକ୍ରମେ ବିଭିନ୍ନ ଆର୍ଯ୍ୟ ଋଷିମାନେ ଏହି ଘନ ଜଂଗଲରେ ତପୋବନ ନିର୍ମାଣ କରି ତପ ଆଚରଣ କରୁଥିଲେ । ସେମାନଙ୍କ ସାଧନା ଓ ପ୍ରଚେଷ୍ଟା ବଳରେ ପରବର୍ତ୍ତୀ ସମୟରେ ବୈତରଣୀ ଅବବାହିକାରେ ଉଡ୍ର ରାଷ୍ଟ୍ରର ପୃଷ୍ଠଭୂମି ସ୍ଥାପିତ ହେଲା । ପ୍ରାଚୀନ ନିଷାଦମାନେ ଦେବୀ ଉପାସକ ଥିଲେ । ଜଂଗଲ ମଧ୍ୟରେ ସ୍ଥାନେ ସ୍ଥାନେ ଶକ୍ତି ପୀଠମାନ ପ୍ରତିଷ୍ଠା କରିଥିଲେ । ଆଜି ପର୍ଯ୍ୟନ୍ତ ସେସବୁ ସ୍ଥାନମାନ ପ୍ରଖ୍ୟାତି ଲାଭ କରି ଆସୁଛି । ଏହି ଶକ୍ତି ପୀଠମାନ ନିଷାଦ ସଭ୍ୟତାର ପ୍ରତୀକ । ଅଦ୍ୟାବଧି ପାରମ୍ପରିକ ରୀତିରେ ତାହା ପ୍ରଚଳିତ ହୋଇ ଆସୁଅଛି ।

ଜଠା ବଂଶର ବିବରଣୀରୁ ଜଣାଯାଏ ଗୁହକ ଶିବ, ବୌଦ୍ଧ ରାଜା ଥିଲେ । ସେ ବୁଦ୍ଧଙ୍କର ପବିତ୍ର ଦନ୍ତକୁ ପୂଜା କରୁଥିଲେ । ଏହି ରାଜବଂଶର ରାଜଧାନୀ ପ୍ରଥମେ ବାଗୁହେଶ୍ୱର ପାଟକ ନାମକ ସ୍ଥାନରେ ସ୍ଥାପନ କରିଥିଲେ, ଯାହାର ଆଧୁନିକ ନାମ 'ଗୋହିରାଟିକିରି' । ଏହି ଗୋହିରା କ୍ଷେତ୍ର ବିଷୟରେ ଓଡ଼ିଶା ଇତିହାସ ପୁରାଣ ଓ ପଞ୍ଚସଖାଙ୍କ ରଚିତ ମାଳିକାମାନଙ୍କରେ ଏହାର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ପ୍ରାଚୀନ କାଳରୁ ଏହି ସ୍ଥାନ ବିଷୟରେ ବହୁ ଲୋକକଥା ଶୁଣାଯାଏ ।

ଏହି କ୍ଷେତ୍ର ଭଦ୍ରକ ଜିଲ୍ଲାର ଧାମନଗର ପଞ୍ଚାୟତ ସମିତି ଅଧୀନରେ ଅବସ୍ଥିତ । ଧାମନଗରର ଦକ୍ଷିଣ ପଶ୍ଚିମ କୋଣରେ ପ୍ରାୟ ୪/୫ କିମି ଦୂରରେ ଅବସ୍ଥିତ ଏପରି ଏକ ପ୍ରସିଦ୍ଧ କ୍ଷେତ୍ର ଅବହେଳିତ ଅବସ୍ଥାରେ ମୃତ ତଥା ସୁପ୍ତ ପ୍ରାୟ ହୋଇ ରହିଅଛି । ଏହି ସ୍ଥାନ ପୁଣ୍ୟତୋୟା ବୈତରଣୀର ଶାଖାନଦୀ ଗେଙ୍ଗୁଟି ନଦୀର ବାମପଟେ ଅବସ୍ଥିତ । ଯତ୍ନର ଅଭାବରୁ ଏ ସ୍ଥାନଟି କଣ୍ଟାବୁଦା, ବାଉଁଶ ବଣ ଓ ନାନା ଜାତିର ଲତା ବୁଦାରେ ପୂର୍ଣ୍ଣ । ଏହି କ୍ଷେତ୍ର ଯାଜପୁରର ପଞ୍ଚକୋଶୀ ମଧ୍ୟରେ ରହିଅଛି । ଏହି ସ୍ଥାନର ଚତୁଃପାର୍ଶ୍ୱରେ ବିଶାଳ କୃଷିକ୍ଷେତ୍ର ।

ପୁରାଣ ବର୍ଣ୍ଣନାନୁସାରେ ସତ୍ୟ ଯୁଗରେ ବ୍ରହ୍ମା ଏଠାରେ ଯଜ୍ଞ କରିଥିଲେ । ଏହି ସ୍ଥାନର ନିକଟରେ ଥିବା ସେନାପତିଆ ପୋଖରୀକୁ ପିତାମହ ବ୍ରହ୍ମା ଯଜ୍ଞକୁଣ୍ଡ ରୂପେ ବ୍ୟବହାର କରିଥିଲେ । ଦ୍ୱାପର ଯୁଗରେ ପାଣ୍ଡବମାନେ ଅଜ୍ଞାତ ବନବାସ ସମୟରେ ଏଠାରେ ଅଳ୍ପକ୍ଷଣ ପାଇଁ ଅବସ୍ଥାନ କରିଥିଲେ । ତ୍ରେତୟା ଯୁଗରେ ଶ୍ରୀରାମଚନ୍ଦ୍ର ଏଠାକୁ ଆସି ଥିବାର ପ୍ରମାଣ ମଧ୍ୟରୁ ମହାବୀର ହନୁମାନଙ୍କ ଏକ ପ୍ରସ୍ତର ମୂର୍ତ୍ତି ଅକ୍ଷତ ଅବସ୍ଥାରେ ପୂଜା ପାଉଛନ୍ତି । ଶ୍ରୀକ୍ଷେତ୍ରର କଳ୍ପଦ୍ରୁମ ସଦୃଶ ଏକ ବିଶାଳ ଅର୍ଜୁନ ବୃକ୍ଷ ଆଜି ପର୍ଯ୍ୟନ୍ତ ଅକ୍ଷତ ଅବସ୍ଥାରେ ରହିଅଛି, ଯାହାର ମୂଳରେ ମହାବୀରଙ୍କ ଆସ୍ଥାନ ଅଛି । ବହୁ ଝଡ଼ ବାତ୍ୟା ହେଲେ ମଧ୍ୟ ଏହି ବୃକ୍ଷର କୌଣସି କ୍ଷୟକ୍ଷତି ହୋଇନାହିଁ ।

ପ୍ରାଚୀନ ଯୁଗରୁ ମୁନୀଋଷିମାନଙ୍କର ଆଶ୍ରମ ଏଠାରେ ଥିବାର ଜଣାପଡ଼ୁଛି । ଏଠାରେ ଏକ ବିଶାଳ ପୁରାତନ ଚକାପଥର ଆଜିଯାଏ ପଡ଼ି ରହିଛି । ଏଠାରେ ଏକ ମହାପୁରୁଷଙ୍କର ସମାଧି ରହି ପୂଜା ପାଉଅଛି । ଆଉ ଏକ ପୌରାଣିକ ତଥ୍ୟରୁ ଜଣାଯାଇଛି ଯେତେବେଳେ ଏହି ଅଞ୍ଚଳରେ ନିଷାଦମାନେ ରାଜତ୍ୱ କରୁଥିଲେ,

ସେତେବେଳେ ଏ ଅଞ୍ଚଳ ଘନ ଜଂଗଲରେ ପୂର୍ଣ୍ଣ ଥିଲା । ଦିନବେଳା ସୂର୍ଯ୍ୟଙ୍କ କିରଣ ଲତାଗହଳ ମଧ୍ୟ ଦେଇ ତଳେ ପଡୁ ନଥିଲା ।

ଏହି ଜଂଗଲର ଆକାର 'ଠ' ଅକ୍ଷର ପରି ଥିଲା । ଜଂଗଲ ପରିସୀମା ଦୀର୍ଘ ୫ କୋଶ ବ୍ୟାପୀ ଥିଲା । ଏହି ଜଂଗଲ ମଧ୍ୟରେ ଗୋଟିଏ ଅଣଓସାରିଆ ରାସ୍ତା ଏହି ସ୍ଥାନରୁ ଆଦି ଶକ୍ତି ବିରଜାଙ୍କ ପୀଠ ପର୍ଯ୍ୟନ୍ତ ଲମ୍ବି ଥିଲା । ଏହି ରାସ୍ତା ମଧ୍ୟ ଦେଇ ଗଲେ ବିନ୍ଧ୍ୟବାସିନୀ ମା' ବିରଜାଙ୍କ ଦର୍ଶନ ମିଳୁଥିଲା । ଉକ୍ତ ଜଂଗଲରେ ନାନା ଜାତିର ଫୁଲ ଫଳ ଗଛମାନ ପୂରି ରହିଥିଲା । ଏ ଜଂଗଲଟି ଶ୍ୱାପଦଶଙ୍କୁଳ ଥିଲା ।

ଏହି ଘନ ଅରଣ୍ୟରେ ମୌନକା ନାମକ ଏକ ଦ୍ରାବିଡ଼ ଋଷିଙ୍କ ଆଶ୍ରମ ଥିଲା । ଋଷିଙ୍କର ଧର୍ମପତ୍ନୀଙ୍କ ନାମ ଥିଲା କୃଷ୍ଣା । ଆଶ୍ରମରେ ନାନା ଜାତିର ଫଳପୁଷ୍ପ ଗଛ ଥାଇ ଆଶ୍ରମର ଶୋଭାକୁ ବଢ଼ାଉ ଥିଲା । ଏଠାରେ ଜଣେ ଦେବୀ ଭକ୍ତ କିରାତ ଯୁବକ ଗୋହିରା ନାମକ ଯୁବକ ରହି ବିରଜାଙ୍କୁ ସେବା କରୁଥାଏ । ଏକଦା ମୌନକା ମୁନୀ ତୀର୍ଥ ଭ୍ରମଣ କରି ଫେରିଥାନ୍ତି । ଏହି ସମୟରେ ବନ ମଧ୍ୟରେ ଏକ ନବଜାତ ଶିଶୁ କନ୍ୟାର କ୍ରନ୍ଦନ ଶବ୍ଦ ଶୁଣି ପାରିଲେ । କ୍ରନ୍ଦନ ଶବ୍ଦର ଦିଗ ବାରି ମୁନୀ ତା'ନିକଟକୁ ଯାଇ ଦେଖିଲେ ଯେ ଏକ ନବଜାତ ଶିଶୁକନ୍ୟା ଭୂମିରେ ପଡ଼ି କ୍ରନ୍ଦନ କରୁଛି । ମୁନି ଶିଶୁକନ୍ୟାକୁ ଯତ୍ନ ସହକାରେ ନେଇ ବୃଦ୍ଧା ତପସ୍ୱିନୀ କୃଷ୍ଣାଙ୍କୁ ଅର୍ପଣ କଲେ । କନ୍ୟାଟିକୁ ବନ ମଧ୍ୟରୁ ପାଇ ଥିବାରୁ ତା' ନାମ ଦେଲେ ଟିକିରା । ମୁନୀଙ୍କ ଆଶ୍ରମରେ ରହି କନ୍ୟାଟି ଚନ୍ଦ୍ରମା ପ୍ରାୟ ବଢ଼ିବାକୁ ଲାଗିଲା । ବିଭିନ୍ନ କ୍ରୀଡ଼ା କୌତୁକ ମଧ୍ୟରେ ୧୪ ବର୍ଷ ପର୍ଯ୍ୟନ୍ତ ମୁନୀଙ୍କ ଆଶ୍ରମରେ ରହି ଯୌବନ ପ୍ରାପ୍ତ ହେଲା ।

ଏଣେ କ୍ଷେତରା ଶବରପୁଅ ଗୋହିରା ପିଲାଟି ଦିନରୁ ମାତୃହରା ହୋଇଥିଲା । ଯେତେବେଳେ ତାକୁ ୫ ବର୍ଷ ହୋଇଥିଲା । ସେତେବେଳେ ତା' ବାପା ମରିଗଲେ । କ୍ଷେତରା ବନ ମଧ୍ୟରେ ଶିକାର କରିବା ସମୟରେ ଏକ ମହାବଳ ବାଘ ତାକୁ ମାରି ଦେଇଥିଲା । ପିତୃମାତୃ ହରା ଗୋହିରା ବୃଦ୍ଧା ଗୋସେଇଁମାଙ୍କ ନିକଟରେ ରହିଥାଏ । ତାକୁ ଯେତେବେଳେ ୯ ବର୍ଷ ତା'ର ବୃଦ୍ଧା ଗୋସେଇଁମା ମଧ୍ୟ ମରିଗଲେ । ନିଃସହାୟ ହୋଇ ଗୋହିରା ବନ ମଧ୍ୟରେ କିପରି ବଞ୍ଚିବ ସେ କଥା ଚିନ୍ତା କଲା । ତା'ର ମନର ଆକୁଳ ବେଦନା ଜାଣିପାରି ମା' ବିରଜାଙ୍କୁ ଦର୍ଶନ ଦେଇ ପ୍ରବୋଧନା ସହ ତାକୁ ସଙ୍ଗରେ ନେଇଗଲେ । ମା' ଆସ୍ଥାନ ନିକଟରେ ପହଞ୍ଚି ଦେବୀ ଯେତେବେଳେ ନିଜ ଆସ୍ଥାନରେ ବିରାଜମାନ ହୋଇ ମୂର୍ତ୍ତିମନ୍ତ ହେଲେ ପରେ ଗୋହିରା ସମସ୍ତ ବିଷୟ ବୁଝିପାରି ମାଙ୍କୁ ପ୍ରଣିପାତ ହୋଇ ନିଜକୁ ଅର୍ପଣ କରି ଭକ୍ତି ସହକାରେ ନାନା ସୁଗନ୍ଧ ପୁଷ୍ପ ଦେଇ ପୂଜା କରିବାରେ ଲାଗି ପଡ଼ିଲା । ସୁସ୍ୱାଦୁ ଫଳ ସଂଗ୍ରହ କରି ଦେବୀଙ୍କୁ ନୈବେଦ୍ୟ ଦେଇ ସେହି ଫଳମୂଳ ଖାଇ ଆନନ୍ଦରେ ରହିଲା । ବନ ମଧ୍ୟରେ ଗୋହିରା ବିଚରଣ କରିବା ସମୟରେ ଟିକିରା ସହିତ ଭେଟ ହେଲା । ପରସ୍ପରକୁ ଭଲ ପାଇ ବିବାହ ବନ୍ଧନରେ ଛନ୍ଦି ହେଲେ । ଏମାନଙ୍କର ସମସ୍ତ ଆଚରଣକୁ ହରିଆ ସେମାନଙ୍କ ଅଲକ୍ଷ୍ୟରେ ସବୁ ଲକ୍ଷ୍ୟ କରୁଥାଏ ।

କିଛିଦିନ ବିତିଗଲା ପରେ ବଦ୍ରିକାରୁ ତୀର୍ଥ ସାରି ଋଷି ଆଶ୍ରମକୁ ଫେରିଲେ । ସେତେବେଳକୁ ପ୍ରଚଣ୍ଡ ଗ୍ରୀଷ୍ମ ସମୟ । ମୁନୀଙ୍କ ଦେହରୁ ଝାଳ ବାହାରୁଥାଏ । ଧର୍ମପତ୍ନୀ କୃଷ୍ଣା ନିକଟରେ ବସି ବିଞ୍ଚଣାରେ ବିଞ୍ଚୁଥାନ୍ତି । ଋଷି ଆଶ୍ରମର ଚାରିଆଡ଼କୁ ନଜର କରୁଥାନ୍ତି । ଏହି ସମୟରେ ଟିକିରା ଆସି ମୁନୀଙ୍କ ଚରଣ ବନ୍ଦନା କରି ସରମରେ ତଳକୁ ମୁହଁ ପୋତି କିଛି ଦୂରରେ ଠିଆ ହେଲା । ପୂର୍ବପରି ଟିକିରା ଆଉ ମୁନୀଙ୍କ ନିକଟକୁ ଆସିଲା ନାହିଁ । ଟିକିରାର ଏପରି ଭାବ ଦେଖି ଋଷି ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । ତାଙ୍କ ଆଖିରୁ ଦୁଇଧାର ଲୁହ ବୋହି ଆସିଲା । ନିଜର କ୍ରୋଧ ନିଜ ମନ ମଧ୍ୟରେ ଚାପି ରଖିଲେ । ମୁନୀଙ୍କର ଏପରି ବିମର୍ଷ ଭାବ ଦେଖି କୃଷ୍ଣା ତାଙ୍କୁ ଏହାର କାରଣ ପଚାରିଲେ । ମୁନୀ ତା'ର ଉତ୍ତରରେ କହିଲେ, ଏହି ସ୍ଥାନ ଶ୍ମଶାନରେ ପରିଣତ ହେବ ଓ ଏହିଠାରେ ଯୁଦ୍ଧ ହୋଇ ଏହା ଯୁଦ୍ଧକ୍ଷେତ୍ର ମଧ୍ୟ ହେବ । ଏହା କହି ମୁନୀ ସେହିଠାରେ ଟଳି ପଡ଼ିଲେ । ତାହା ହିଁ ହେଲା । ଏହିଠାରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ପରେ ମୁକୁନ୍ଦ ଦେବ ଓ କଳାପାହାଡ଼ ମଧ୍ୟରେ ଯୁଦ୍ଧ ମଧ୍ୟ ଏହି କ୍ଷେତ୍ରରେ ହୋଇଥିଲା । ମୁକୁନ୍ଦଦେବ ନିହତ ହେଲେ, ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା । ଲୋକ ମୁଖରୁ ଶୁଣାଯାଏ ତାହା ଭାରତ ଯୁଦ୍ଧ ଆଉ ଓଳିଏ ବାକି ଅଛି, ତାହା ହିଁ ଓଡ଼ିଶାରେ ଶେଷ ହେବ ।

ପଞ୍ଚସଖାଙ୍କ ରଚିତ ଭବିଷ୍ୟ ମାଳିକାମାନଙ୍କରେ ଏହି କ୍ଷେତ୍ର ବିଷୟରେ ଲେଖାଯାଇଛି । ଏଠାରେ ଥିବା ଅର୍ଜୁନ ଗଛ ମୂଳରୁ ୧୨ ହାତ ଖଣ୍ଡା ବାହାରିବ, ଯାହାକୁ ଧରି ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର କଳା ଘୋଡ଼ା ଓ ଧଳା ଘୋଡ଼ାରେ ଚଢ଼ି ମ୍ଳେଚ୍ଛ ସଂହାରଣ କରିବେ । ଏହାପରେ ସ୍ଥିର ହେଲା ଯେ ହରିଆ ସହିତ ଟିକିରାର ବିବାହ ହେବ । ଦିନ ସ୍ଥିର ହେଲା । ଟିକିରା ବରମାଲ୍ୟ ଧରି ଉପସ୍ଥିତ ହେବା ସମୟରେ ଏକ ମହାବଳ ବାଘ ଆସି ଟିକିରାକୁ ଝାମ୍ପି ନେଇ ପଳାଇଗଲା । ଏହା ଦେଖି ହରିଆ ପଥର ପାଲଟି ଗଲାପରି ନିଶ୍ଚଳ ହୋଇ ଠିଆ ହୋଇ ରହିଲା । ବୃଦ୍ଧା କୃଷ୍ଣା ମଧ୍ୟ

ଝିଅର ଏ ଅବସ୍ଥା ଦେଖି କାନ୍ଦିବାକୁ ଲାଗିଲା । କୃଷ୍ଣା ଝିଅ ସନ୍ଧାନ ନେବା ପାଇଁ ହରିଆକୁ କହିଲେ । ହରିଆ ମଧ୍ୟ ବ୍ୟସ୍ତ ହୋଇ ବନ ମଧ୍ୟରେ ଟିକିରାକୁ ଖୋଜିବାକୁ ଲାଗିଲା । ମାତ୍ର ଟିକିରାର କୌଣସି ସନ୍ଧାନ ପାଇଲା ନାହିଁ । ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ଶେଷରେ ହରିଆ ନିରାଶ ହୋଇ ଆଶ୍ରମକୁ ଫେରିଲା । ତା'ପର ଠାରୁ ହରିଆ ପାଗଳପ୍ରାୟ ହୋଇ ଜଂଗଲ ମଧ୍ୟରେ ହିଂସ୍ରଜନ୍ତୁ ଓ ଗଛଲତାଙ୍କୁ ଟିକିରାର ଖବର ପଚାରି ବୁଝିବାରେ ଲାଗିଲା । ମାତ୍ର କୌଣସି ସମ୍ବାଦ ପାଇଲା ନାହିଁ ।

ଏଣେ ପତିବିରହୀ ଟିକିରା ସଦାସର୍ବଦା ହରିଆକୁ ମନେ ମନେ ଭାବୁଥାଏ । ସୀତା ଅଶୋକ ବନରେ ରହି ଶ୍ରୀରାମଚନ୍ଦ୍ରଙ୍କ ପାଦପଦ୍ମରେ ଲୟ ରଖିଲା ପରି ଟିକିରା ବନ ମଧ୍ୟରେ ଅଜ୍ଞାତ ସ୍ଥାନ ରେ ରହି ହରିଆକୁ ଚିନ୍ତା କରୁଥାଏ । ଆହାର ନିଦ୍ରା ତ୍ୟାଗ କରି ମନ ମଧ୍ୟରେ ଦୁଃଖ ରଖି କାଳ କାଟୁଥାଏ । ସମୟେ ସମୟେ ନିଦ୍ରାବସ୍ଥାରେ ହରିଆର ଉନ୍ମାଦ ରୂପ ଦେଖି ମନ ମଧ୍ୟରେ ଭୟ କରୁଥାଏ । ପରେ ଗୋହିରା ସହିତ ଟିକିରାର ବିବାହ କାର୍ଯ୍ୟ ଶେଷ ହୋଇଯାଇଥାଏ । ସେମାନେ ଏକ କୁଟୀରରେ ରହି ସମୟ କଟାଉଥାନ୍ତି ।

କିଛିଦିନ ପରେ ଦିନେ ସକାଳେ ଗୋହିରା ତା' କୁଡ଼ିଆର ପଶ୍ଚିମଦ୍ୱାର ଖୋଲି ଦେଇ ଦେଖିଲା ଅନତି ଦୂରରେ ଗୋଟିଏ ସୁନ୍ଦର ହରିଣୀ ଚରୁଛି । ତାହାକୁ ଶିକାର କରିବା ଉଦ୍ଦେଶ୍ୟରେ ସେ ଧନୁଶର ଧରି କୁଟୀରରୁ ବାହାରିଗଲା । ଶିକାରକୁ ବାହାରିବା ସମୟରେ ତାର ସ୍ତ୍ରୀ ଟିକିରା ଗୋହିରାକୁ ଅନୁସରଣ କରିବାକୁ ଲାଗିଲା ଏବଂ କହିଲା, ଏ ଆଶ୍ରମର ମୃଗ ପରି ଦେଖାଯାଉଛି । ଏହାକୁ ଜୀବନରୁ ନମାରି ଧରିଆଣି ମୋତେ ଦିଅ । ମୁଁ ଏହାକୁ ଆଦରରେ ପାଳିବି ଏବଂ ପାଖରେ ରଖି ଏହା ସହିତ ଖେଳ କୌତୁକରେ ଦିନ କଟାଇବି । ସ୍ତ୍ରୀର ଅନୁରୋଧକୁ ଶୁଣି କିରାତ ହରିଣୀକୁ ଧରିବା ପାଇଁ ତା' ପଛେ ପଛେ ଗୋଡ଼ାଇଲା । ସ୍ତ୍ରୀ ମଧ୍ୟ ସ୍ୱାମୀକୁ ଅନୁସରଣ କରିବାକୁ ଲାଗିଲା । ସ୍ୱାମୀକୁ ଅନୁସରଣ କଲାବେଳେ ବନ ମଧ୍ୟରେ କଣ୍ଟାବୁଦା ପୂର୍ଣ୍ଣ ବଣ ଖମଣରେ ପଶି ନିଜକୁ କ୍ଳାନ୍ତି ଅନୁଭବ କରି ମଝିରେ ମଝିରେ ବିଶ୍ରାମ ନେଉଥାଏ । ଶେଷରେ ଦିନ ଅବସାନ ହେବାରୁ ସ୍ୱାମୀ ଓ ସ୍ତ୍ରୀ ଏକ ବଟବୃକ୍ଷ ମୂଳରେ ଆଶ୍ରୟ ନେଇ ରାତିଟି କଟାଇଲେ ।

ପରଦିନ ସକାଳୁ ହରିଆ ଏହି ଦୁଇଜଣଙ୍କୁ ବନ ମଧ୍ୟରେ ବୁଲୁ ଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ବହୁ ପ୍ରଶ୍ନ ପଚାରିଲା । ଏଭଳି ସୁନ୍ଦରୀ ସ୍ତ୍ରୀକୁ ତୁ କେଉଁଠୁ ଚୋରାଇ ଆଣିଛୁ କିମ୍ବା ମନ୍ତ୍ର ବଳରେ ଏ ରୂପଲାବଣ୍ୟ କନ୍ୟାକୁ ଆଣି ଏ ବଟ ମୂଳରେ ରାତି କଟାଇଛୁ । ସତ କଥା ନକହିଲେ ମୁଁ ତୁମକୁ ଯିବାକୁ ଦେବି ନାହିଁ । ମୋ ନାଁ ହରିଆ, ମୁଁ ତୁମର କାଳଯମ । ଏହା ଶୁଣି ଗୋହିରା ଉତ୍ତର ଦେଲା – ମୁଁ ଜାତିରେ ଶବର, ଏ ହେଉଛି ମୋର ସ୍ତ୍ରୀ । ଶ୍ରୀବିରଜାଙ୍କ ପୀଠର ଅଳ୍ପ ଦୂରରେ ମୋର ପଲ୍ଲୀ । ମୁଁ ମା' ବିରଜାଙ୍କୁ ସେବା କରି ଏ ରୂପବତୀକୁ ସ୍ତ୍ରୀ ରୂପରେ ପାଇଛି ।

ଏହି ଉତ୍ତର ଶୁଣିଲା ପରେ ହରିଆ ରାଗରେ ପ୍ରଜ୍ୱଳିତ ହୋଇ କହିଲା, ତେବେ ତୁ ମୋ ସ୍ତ୍ରୀକୁ ଚୋରାଇ ନେଇଛୁ । ମୁଁ ତୋତେ ଏଠାରୁ ନ ଛାଡ଼ି ତୋତେ ଏହିଠାରେ ଶେଷ କରିଦେବି । ଏହା ଶୁଣି ଗୋହିରା ଉତ୍ତର ଦେବାକୁ ପଛାଇଲା ନାହିଁ । ତା'ପରେ ହରିଆ ଓ ଗୋହିରା ମଧ୍ୟରେ ଆରମ୍ଭ ହେଲା ଯୁଦ୍ଧ । ଯୁଦ୍ଧରେ ହରିଆ ଜ୍ଞାନଶୂନ୍ୟ ହୋଇ ତଳେ ପଡ଼ିଗଲା ବେଳେ ଗୋହିରା ତାର ବକ୍ଷରେ ପଥର ପ୍ରହାର କରି ତା' ଜୀବନ ନେଲା । ମୃତ ହରିଆର ଶବ ଉପରେ ବସି ଗୋହିରା ବାହାସ୍ଫୋଟ ମାରିବା ସମୟରେ ସେ ମଧ୍ୟ ଜ୍ଞାନଶୂନ୍ୟ ହୋଇ ତଳେ ପଡ଼ିଗଲା । ତା'ର ନିଃଶ୍ୱାସ ପ୍ରଶ୍ୱାସ ରୁଦ୍ଧ ହୋଇଯିବାରୁ ସେ ମଧ୍ୟ ସେହିଠାରେ ଶେଷ ନିଃଶ୍ୱାସ ତ୍ୟାଗକଲା ।

ଗୋହିରାର ମରଣ ହେବା ଦେଖି ଟିକିରା ବିକଳରେ କ୍ରନ୍ଦନ କରି ମୃତ ସ୍ୱାମୀର ଶବକୁ କାନ୍ଧରେ ପକାଇ ବନ ମଧ୍ୟରେ ଭ୍ରମଣ କରିବାକୁ ଲାଗିଲା । ସହଯେ ତ ଅଳ୍ପ ବୟସ୍କା ପୂର୍ଣ୍ଣ ଯୌବନା ଓ କ୍ଳାନ୍ତ ଶରୀରା ତଥାପି ପଡ଼ି ଉଠି ବନ ମଧ୍ୟରେ ଭ୍ରମଣ କରିବା ସମୟରେ ଏକ ଜଳାଶୟ ନିକଟରେ ପ୍ରବେଶ କଲା । ପାଗଳୀ ପ୍ରାୟ ହୋଇ କାଳେ ମୋ ସ୍ୱାମୀ ବଞ୍ଚିବ ଏହି ଆଶା ରଖି ଜଳାଶୟରୁ ଜଳ ଆଣି ମୃତ ସ୍ୱାମୀର ମୁଖରେ ସିଞ୍ଚିଲା ଏବଂ ନିଜର ପଣତ କାନିରେ ବିଞ୍ଚିବାକୁ ଲାଗିଲା । ଶେଷରେ ସ୍ୱାମୀର ବଞ୍ଚିବାର ଆଶା ତ୍ୟାଗ କରି ବିଧିକୁ ନିନ୍ଦା କଲା । ନିଜର କପାଳକୁ ଦୋଷ ଦେଇ ମୃତ ସ୍ୱାମୀର ପାଦ ଧରି ମୃତ ସ୍ୱାମୀ ସହ ଜଳାଶୟକୁ ଲମ୍ଫ ପ୍ରଦାନ କରି ସ୍ୱାମୀ ସହ ସଲୀଳ ସମାଧି ନେଲା ।

ଏଣେ ବୃଦ୍ଧା ତପସ୍ୱିନୀ ଶିଷ୍ୟ ହରିଆକୁ ଖୋଜିବା ପାଇଁ ବନ ମଧ୍ୟରେ ବୁଲୁ ବୁଲୁ ହରିଆର ଶବ ପଡ଼ିଥିବାର ଦେଖିଲା । କିଏ ସେ ନିଷ୍ଠୁର ମୋର ଶିଷ୍ୟକୁ ମାରିଛି । ଏହା ଦେଖି ମନେ ମନେ କ୍ରୋଧୀ ହୋଇ ମାରିବା ଲୋକର ଅନୁସନ୍ଧାନ କରିବାକୁ ଲାଗିଲା । ଶେଷରେ ନିରାଶ ହୋଇ ମୌନକା ଋଷିଙ୍କ କଥାକୁ ମନେପକାଇବାକୁ ଲାଗିଲା । ହରିଆର ଶବ ଏଇଠି ହିଁ ରହିବ । ତା' ଉପରେ ଏକ ଜଳାଧାର ବହିବ । ଏହି ଜଳାଧାରର ନାମ

ହେବ ହରିଆ ଜଳଧାର । ବର୍ତ୍ତମାନ ଏହି ଜଳାଧାରର ନାମ ହେଉଛି ହରିଆ ନାଳ । ଏତିକି କଥାରେ ବୃଦ୍ଧାଙ୍କ ମନ ମାନିଲା ନାହିଁ ।

ସେ ବନ ମଧ୍ୟରେ ଭ୍ରମଣ କରି ହରିଆର ଘାତକର ସନ୍ଧାନରେ ଭ୍ରମଣ କରିବାକୁ ଲାଗିଲା । ଶେଷରେ ସେ ଏକ ଜଳାଶୟ ନିକଟରେ ପହଞ୍ଚି ଦେଖିଲା ଜଳାଶୟରେ ଦୁଇଟି ଶବ ଭାସୁଛନ୍ତି । ସେ ଶବ ଦୁଇଟିକୁ ବୃଦ୍ଧା ଚିହ୍ନି ପାରିଲେ । ସେ ଶବ ଦୁଇଟି ଥିଲା ଗୋହିରା ଏବଂ ଟିକିରାର । ଶେଷରେ ବୃଦ୍ଧା ତପସ୍ୱିନୀ ଋଷିଙ୍କ କଥାକୁ ସ୍ମରଣ କରି କହି ଉଠିଲେ, ଏହି ସ୍ଥାନର ନାମ ହେବ ଟିକରାଗୋହିରୀ । ବର୍ତ୍ତମାନ ନାମ ହେଉଛି ଗୋହିରାଟିକିରି । ସେହି କାଳରୁ ଏ ସ୍ଥାନର ନାମ ରହିଆସୁଛି ଗୋହିରାଟିକିରି । ଏହା ଏକ ପବିତ୍ର କ୍ଷେତ୍ର ହୋଇଥିବାରୁ ପୁରାତନ କାଳରେ ବହୁ ମୁନୀ ଋଷିମାନେ ଏଠାକୁ ତପସ୍ୟା କରିଥିବାର ଲୋକମୁଖରୁ ଶୁଣାଯାଏ । ଋଷିଙ୍କ ମୁଖନିସୃତ ବାଣୀ ଅନୁସାରେ ଏହି କ୍ଷେତ୍ର ଏକ ଯୁଦ୍ଧ କ୍ଷେତ୍ରରେ ପରିଣତ ହେଲା । ମାଳିକା ଅନୁସାରେ ଏହିଠାରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ଇତିହାସ ଲେଖାନୁସାରେ ଏହିଠାରେ ମୁକୁନ୍ଦଦେବ ଓ କଳାପାହାଡ଼ ମଧ୍ୟରେ ଯୁଦ୍ଧ ହୋଇ ୧୫୬୮ ମସିହାରେ ମୁକୁନ୍ଦଦେବ ନିହତ ହେଲେ । ଏହି ଯୁଦ୍ଧ ପରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା ।

ମୁକୁନ୍ଦଦେବ ଉଡ୍ର ବଂଶୀୟ ରାଜା ଥିଲେ । ଓଡ଼ିଶାର ତତ୍କାଳୀନ ନାମ ଥିଲା ଉଡ୍ର ରାଷ୍ଟ୍ର । କଳାପାହାଡ଼ ସହିତ ଯୁଦ୍ଧ ସମୟରେ ମୁକୁନ୍ଦଦେବଙ୍କ ସୈନ୍ୟସାମନ୍ତମାନେ ଏହି ସ୍ଥାନର ଉତ୍ତର–ପଶ୍ଚିମ ଦିଗରୁ ମାଡ଼ିଆସି ଛାଉଣୀ ପକାଇଥିଲେ । ପ୍ରତ୍ୟେକ ସୈନ୍ୟ ଛାଉଣୀ ନିକଟରେ ଏକ ଜଳାଶୟ ଖୋଳାଯାଇ ଥିବାର ଅନୁମାନ କରାଯାଏ । ଏହି ଜଳାଶୟଗୁଡ଼ିକ ଏକ ଏକ ଗାଡ଼ିଆ ଆକାରରେ ଖୋଳାଯାଇଥିଲା । ସୈନ୍ୟଛାଉଣୀଙ୍କ ନାମାନୁସାରେ ଛାଉଣୀର ନାମକରଣ କରାଯାଇ ଶେଷରେ ଗାଡ଼ିଆ ଶବ୍ଦ ଯୋଗ କରାଯାଇଅଛି । ସୈନ୍ୟ ଛାଉଣୀର ମୁଖ୍ୟଙ୍କ ନାମାନୁ ସାରେ ଗ୍ରାମଗୁଡ଼ିକର ନାମ କରାଯାଇଥିବାର ଅନୁମାନ କରାଯାଏ । ସେହି ନାମାନୁସାରେ ଗ୍ରାମଗୁଡ଼ିକର ନାମ ରଖାଯାଇଛି ନାଉରୀ ଗଡ଼ିଆ, ଗୋବିନ୍ଦା ଗଡ଼ିଆ, ରାଣୀ ଗଡ଼ିଆ ଓ ବେଲଗଡ଼ିଆ ଇତ୍ୟାଦି । ଏହି ଗ୍ରାମମାନଙ୍କରେ ଉଡ୍ରବଂଶୀୟ କ୍ଷତ୍ରୀୟମାନେ ବସବାସ କରି ଆସୁଛନ୍ତି । ଏହି ସ୍ଥାନର ଉତ୍ତରପୂର୍ବ କୋଣରେ ବିରାଟ ପୁଷ୍କରିଣୀ ଅଛି ଯାହାର ନାମ ସେନାପତିଆ ପୋଖରୀ ଓ ଉତ୍ତରପଶ୍ଚିମ କୋଣରେ ଥିବା ବୃହତ୍ ପୁଷ୍କରିଣୀର ନାମ ଆଲାମଚାନ୍ଦ ପୋଖରୀ ।

ଏହି ଆଲାମ ଚାନ୍ଦ ପୋଖରୀ ବିଷୟରେ ବହୁ ଲୋକକଥା ଶୁଣିବାକୁ ମିଳେ । ଏପରି ଏକ ମହାନ୍ ପବିତ୍ର କ୍ଷେତ୍ର ଆଜି ଅବହେଳିତ ଅବସ୍ଥାରେ ପଡ଼ି ରହିଛି । ଏଣୁ ଏହି କ୍ଷେତ୍ରର ଉନ୍ନତି ପାଇଁ ନିମ୍ନଲିଖିତ ବ୍ୟବସ୍ଥା କରାଗଲେ କ୍ଷେତ୍ରର ମାହାତ୍ମ୍ୟ ପରିପ୍ରକାଶ ହୋଇପାରନ୍ତା ।

୧. ମଠର ନିଜସ୍ୱ ଭୂସମ୍ପତ୍ତିର ସୀମା ନିର୍ଦ୍ଧାରଣ କରାଯାଇ ଚାଷ ଜମିର ସୁରକ୍ଷା କରାଇବା ସହିତ ପରିବେଶର ସୁରକ୍ଷା ଓ ସ୍ଥାନର ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ମଠର ଚାରିପାଖରେ ଥିବା କଣ୍ଟାବୁଦା ଓ ଅନାବନା ଗଛଗୁଡ଼ିକୁ କାଟି ସଫା କରାଇବା ଆବଶ୍ୟକ ।

୨. ମଠ ପରିସର ମଧ୍ୟରେ ଥିବା ଜଳାଶୟରୁ ପଙ୍କ ଉଦ୍ଧାର କରାଯାଇ ସର୍ବସାଧାରଣଙ୍କ ବ୍ୟବହାର ଉପଯୋଗୀ ହେବା ସଙ୍ଗେ ସଙ୍ଗେ ବୃକ୍ଷରୋପଣ କରାଗଲେ ମଠର ସୌନ୍ଦର୍ଯ୍ୟ ବୃଦ୍ଧି ପାଇବ ।

୩. ମଠକୁ ସବୁଦିନିଆ ଯିବା ଆସିବା ପାଇଁ ରାସ୍ତା ନିର୍ମାଣ ନିହାତି ଜରୁରୀ ।

୪. ମଠକୁ ଏ ପର୍ଯ୍ୟନ୍ତ ବିଦ୍ୟୁତ୍ ସଂଯୋଗ କରାଯାଇ ନାହିଁ । ଏହା କରାଗଲେ ସର୍ବସାଧାରଣଙ୍କର ସୁବିଧା ହୋଇ ପାରନ୍ତା ।

୫. ଯୁବ ମହନ୍ତ ଶ୍ରୀ ବୀରବର ଦାସଙ୍କ ଉଦ୍ୟମରେ ଏକ ଜଗନ୍ନାଥ ନିର୍ମାଣ କରାଯାଇ ଦିଅଁମାନଙ୍କୁ ପ୍ରତିଷ୍ଠା କରାଯାଇଛି ।

୬.ଭଦ୍ରକର ମାନ୍ୟବର ସାଂସଦ ଶ୍ରୀ ଅର୍ଜୁନ ଚରଣ ସେଠୀ ମହୋଦୟଙ୍କ ଦାନରୁ ମହାପୁରୁଷଙ୍କ ଆସ୍ଥାନ ଓ ମଠର ସେବାୟତମାନଙ୍କ ପାଇଁ ଦୁଇଟି କୋଠରି ବିଶିଷ୍ଟ କୋଠାଘର ନିର୍ମାଣ କରାଯାଇଛି, ଯାହା କି ମଠ ପାଇଁ ଯଥେଷ୍ଟ ନୁହେଁ ।

୭. ମଠଟି ସଂପୂର୍ଣ୍ଣ ବନ୍ୟାଞ୍ଚଳରେ ଅବସ୍ଥିତ ହୋଇଥିବାରୁ ଏଠାରେ ପୂର୍ବଭଳି ଝାଟିମାଟି ଘର କରାନଯାଇ ପକ୍କାଘର ନିର୍ମାଣ ନିହାତି ଜରୁରୀ ।

ଏସବୁ କାମଗୁଡ଼ିକ ମଠର ଅର୍ଥାଭାବରୁ ହୋଇପାରୁ ନାହିଁ । ଏଥିପ୍ରତି ସରକାର ତଥା ସର୍ବସାଧାରଣ ଯତ୍ନବାନ୍ ହେବା ନିହାତି ଆବଶ୍ୟକ ।

୮. ଏହି କ୍ଷେତ୍ରକୁ ପର୍ଯ୍ୟଟନ କ୍ଷେତ୍ରର ମାନ୍ୟତା ଦିଆଯାଉ ।

ଅବସରପ୍ରାପ୍ତ ପ୍ରଧାନଶିକ୍ଷକ
ପାହାଡପୁର, ଧାମନଗର

# କୀର୍ତ୍ତିମାନ ଓଡ଼ିଆ ବୈଜ୍ଞାନିକ ନାଗଭୂଷଣ ସେନାପତି

ପଣ୍ଡିତ ତ୍ରିଲୋଚନ ମିଶ୍ର

କଳାହାଣ୍ଡିର ସଦରମହକୁମା ଭବାନୀପାଟଣାରୁ ବାଲ୍ୟଶିକ୍ଷା ଆରମ୍ଭ କରି ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ହୋଇଥିବା କୀର୍ତ୍ତିମାନ ଓଡ଼ିଆ ଥିଲେ ଡକ୍ଟର ନାଗଭୂଷଣ ସେନାପତି । ସ୍ୱୀୟ ପ୍ରତିଭା ବଳରେ ନିଜର ୩୫ ଗୋଟି ଆବିଷ୍କାରକୁ ସେ ପେଟେଣ୍ଟ କରାଇପାରିଥିଲେ । ଏଭଳି ସୌଭାଗ୍ୟ ବିଶ୍ୱର ଖୁବ୍ କମ୍ ବୈଜ୍ଞାନିକଙ୍କୁ ମିଳିଛି । ଏହି ପ୍ରଥିତଯଶା ବୈଜ୍ଞାନିକ ନାଗଭୂଷଣ ୧୯୪୫ ମସିହାରେ ଭବାନୀପାଟଣା ସହରରେ ଜନ୍ମ ନେଇଥିଲେ । ପିତା ଥିଲେ ସ୍ୱନାମଧନ୍ୟ ଶିକ୍ଷାବିତ୍ ରାମସ୍ୱାମୀ ସେନାପତି ଏବଂ ମାତା ଥିଲେ ମାଣିକ୍ୟଦେବୀ । ଭବାନୀପାଟଣା ଉଚ୍ଚ ବିଦ୍ୟାଳୟର ପ୍ରଥମ ପ୍ରଧାନ ଶିକ୍ଷକ ରାଜଗୁରୁ ଧର୍ମାନନ୍ଦ ତ୍ରିପାଠୀଙ୍କ ପ୍ରିୟ ଛାତ୍ର ଥିଲେ ରାମସ୍ୱାମୀ ସେନାପତି । ସେ ମଧ୍ୟ ପ୍ରଧାନଶିକ୍ଷକଙ୍କ ସୁପୁତ୍ର ଦୁର୍ଗାପ୍ରସାଦ ତ୍ରିପାଠୀ, ଆଇଏଏସ୍, କଳାହାଣ୍ଡି ଯୁବରାଜ ପ୍ରତାପ କିଶୋର ଦେଓଙ୍କ ସହପାଠୀ ଥିଲେ । କଳାହାଣ୍ଡି ମହାରାଜଙ୍କ ବୃତ୍ତି ଲାଭ କରି ସେ ଉଚ୍ଚଶିକ୍ଷା ପ୍ରାପ୍ତହୋଇ ବରିଷ୍ଠ ରାଜକର୍ମଚାରୀର ମର୍ଯ୍ୟାଦା ପ୍ରାପ୍ତ ହୋଇଥିଲେ । ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର ସମ୍ମାନଜନକ ପଦବୀ ପାଇ କଟକ ଚାଲି ଆସିଥିଲେ । ପିତାଙ୍କ ସହ କଳାହାଣ୍ଡିରୁ ଆସି ୧୯୫୩ ମସିହାରେ ନାଗଭୂଷଣ ରେଭେନ୍ସା କଲିଜିଏଟ ସ୍କୁଲରେ ପାଠପଢ଼ା ଆରମ୍ଭ କଲେ । ୧୯୬୨ ମସିହାରେ ଖଡ଼ଗପୁର ଆଇଆଇଟିର ଟପ୍ପର ହୋଇ ରାଷ୍ଟ୍ରପତି ସ୍ୱର୍ଣ୍ଣପଦକ ପାଇଲେ । ୧୯୬୯ରେ ମେକାନିକାଲ ଇଂଜିନିୟରିଂରେ ଉଚ୍ଚଶିକ୍ଷା ନିମନ୍ତେ ଟାଟା ମେମୋରିଆଲ ଫେଲୋସିପ୍ ପାଇ ଆମେରିକା ଗଲେ । ୧୯୭୪ରେ ଆମେରିକା ଏମ୍ଆଇଟିର ଟପ୍ପର ହୋଇ ସେଠାରେ ରାଷ୍ଟ୍ରପତିଙ୍କ ପଦକ ଲାଭ କରି ବିଶ୍ୱର ନାମକରା ବୈଜ୍ଞାନିକ ଗୋଷ୍ଠୀରେ ସାମିଲ ହୋଇଗଲେ । ଆମେରିକାରେ ପ୍ରତିଷ୍ଠା ଲାଭ କରିଥିବା ଭାରତୀୟ ଡାକ୍ତର ପଦ୍ମାକର ଲେଲେଙ୍କ ଅନୁରୋଧ ରକ୍ଷା କରି ସେ ତାଙ୍କ ଅଲଟ୍ରାସୋନିକ୍ ପ୍ରୟୋଗଶାଳାର ମୁଖ୍ୟ ଗବେଷକ ପଦ ମଣ୍ଡନ କଲେ । ଅତି ଜଟିଳ ଲିଭର ଓ ବୃକ୍କ ସଂକ୍ରମଣର ନିଦାନ ପାଇଁ ଅଲଟ୍ରାସୋନିକ୍‌ର ସଫଳତା ଦର୍ଶାଇ ସେ ସେଠା ବରିଷ୍ଠ ଡାକ୍ତରମାନଙ୍କ ଦ୍ୱାରା ସମ୍ମାନିତ ହୋଇ ଡାକ୍ତରମାନଙ୍କୁ ଏହାର ପ୍ରୟୋଗ ବିଧି ପଢ଼ାଇବାକୁ ଲାଗିଲେ । ବିଶ୍ୱ ମାନ୍ୟତାପ୍ରାପ୍ତ ବାଟଲ ମେମୋରିଆଲ ପ୍ରତିଷ୍ଠାନର ଅନୁରୋଧ ରକ୍ଷା କରି ସେ ଓହିଓ ଯାଇ ସେଠାରେ ଗବେଷଣା ମାର୍ଗଦର୍ଶୀ ଭାବେ ସୁନାମ ଅର୍ଜିଲେ । ପ୍ରତିଷ୍ଠାନର ଯୁବ ବିଜ୍ଞାନୀ, ଯନ୍ତ୍ରୀମାନଙ୍କୁ ନିଜ ଗବେଷଣା ସହଯୋଗୀ ବାଛି ଆମେରିକାର ବଡ଼ ବଡ଼ ଶିଳ୍ପ ସଂସ୍ଥାରେ ଦେଖାଯାଉଥିବା ଯାନ୍ତ୍ରିକ ଓ ରାସାୟନିକ ବିକୃତିଗୁଡ଼ିକୁ ସ୍ୱଳ୍ପ ସମୟରେ ସ୍ୱଳ୍ପ ଖର୍ଚ୍ଚରେ ଦକ୍ଷତାର ସହ ସମାଧାନ କରାଇ ଶିଳ୍ପପତିମାନଙ୍କର ଭରସାର କେନ୍ଦ୍ରବିନ୍ଦୁ ପାଲଟିଗଲେ ।

ଯଶସ୍ୱୀ ଓଡ଼ିଆ ଇଞ୍ଜିନିୟର ନାଗଭୂଷଣ ଜଣେ ସୁଦକ୍ଷ ମେକାନିକାଲ ଇଂଜିନିୟର ହୋଇ ମଧ୍ୟ ସ୍ୱାସ୍ଥ୍ୟ ବିଜ୍ଞାନ, ଶିଳ୍ପବିଜ୍ଞାନ, ରାସାୟନିକ ବିଜ୍ଞାନ, ପଦାର୍ଥ ବିଜ୍ଞାନରେ ଉଚ୍ଚସ୍ତରୀୟ ପାରଦର୍ଶିତା ପ୍ରଦର୍ଶନ କରିଥିଲେ । ବିମାନ ନିର୍ମାଣ କମ୍ପାନୀମାନେ ନିଜ ନିଜ ପ୍ରସ୍ତୁତ ବିମାନର ଯାନ୍ତ୍ରିକ ତ୍ରୁଟିର ସମାଧାନ ପାଇଁ ନାଗଭୂଷଣଙ୍କ ଦ୍ୱାରସ୍ଥ ହେଉଥିଲେ । ସେ ଅନେକ ଉଦ୍ଭାବନର ଜନକ ଥିଲେ । ତାଙ୍କର ୩୫ଟି ଯାକ ଉଦ୍‌ଭାବନକୁ ବିଶ୍ୱ ପେଟେଣ୍ଟ ମାନ୍ୟତା ମିଳିବା କମ୍ ସୌଭାଗ୍ୟର କଥା ନୁହେଁ । ସେ ମଧ୍ୟ ଆମେରିକାର ଆନ୍ତର୍ଜାତିକ ଇଲେକ୍ଟ୍ରୋ ମେକାନିକାଲ କମିଶନର ପ୍ରତିନିଧି ଥିଲେ । ଆମେରିକା ଅଲଟ୍ରାସୋନିକ୍ ଶିଳ୍ପ ସଂଘର ଜାତୀୟ ପରିଷଦ ଉପସଭାପତି ପଦ ତାଙ୍କୁ ହିଁ ଅର୍ପଣ କରାଯାଇଥିଲା ।

ସ୍ୱାଭିମାନୀ ଓଡ଼ିଆ ନାଗଭୂଷଣ ସେନାପତି ଏକାଧାରରେ ଥିଲେ ଜଣେ ବିଶ୍ୱ ମାନ୍ୟତାପ୍ରାପ୍ତ ବୈଜ୍ଞାନିକ, ଇଞ୍ଜିନିୟର, ଦକ୍ଷ

ଅଧ୍ୟାପକ, ସଫଳ ଗବେଷକ, ଆବିଷ୍କାରକ, ନୀତିନିଷ୍ଠ ନିଷ୍ଠଳଙ୍କ ବ୍ୟକ୍ତିତ୍ୱ । ବିଦେଶରେ ରହି ମଧ ସେ ଜନ୍ମମାଟି ଓଡ଼ିଶାକୁ ଭୁଲି ନଥିଲେ । ଆମେରିକାସ୍ଥ ଓଡ଼ିଶା ସୋସାଇଟି ଗଠନର ସେ ପ୍ରତିଷ୍ଠାତା ସଦସ୍ୟ ଥିଲେ ଓ ଦୀର୍ଘଦିନ ଧରି ଏହାର ମୁଖ୍ୟ ସଂଯୋଜକ ଦାୟିତ୍ୱ ତୁଲାଇଥିଲେ । ବହୁକ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ବିଦେଶୀ ଓଡ଼ିଆମାନଙ୍କୁ ଏକତ୍ର କରିବା ଓ ସେମାନଙ୍କୁ ସମ୍ମାନିତ କରାଇବା ଏହି ପ୍ରତିଷ୍ଠାନର ମୁଖ୍ୟ ଦାୟିତ୍ୱ ଥିଲା । ସୁଦୂର ଆମେରିକାରେ ଶ୍ରୀଜଗନ୍ନାଥ ରଥଯାତ୍ରା ପରିଚାଳନା, ଓଡ଼ିଶୀ ସଙ୍ଗୀତ ସମାରୋହ, ଓଡ଼ିଶୀ ନୃତ୍ୟ ସମାରୋହ ଓ ଓଡ଼ିଶୀ କଳା ଶିକ୍ଷା କେନ୍ଦ୍ର ତାଙ୍କରି ଉଦ୍ୟମରୁ କ୍ରିୟାଶୀଳ ହୋଇଥିଲା । ଜନ୍ମମାଟିକୁ ଓ ଜନ୍ମମାଟିର ସଂସ୍କୃତିକୁ ଆମେରିକାରେ ପ୍ରଚାର କରିପାରିଥିବା ଏହି ଯୋଗଜନ୍ମା ଓଡ଼ିଆ ଜଣକ ୨୦୧୨ ନଭେମ୍ବର ୨୪ ତାରିଖ ଦିନ ଆମେରିକା ମାଟିରେ ଶେଷ ନିଃଶ୍ୱାସ ଛାଡ଼ିଥିଲେ । ଲେଖକଙ୍କ ପିତା ସୁଦୂର ଭବାନୀପାଟଣାରେ ମାମୁ ରାଜଗୁରୁ ଧର୍ମାନନ୍ଦ ତ୍ରିପାଠୀଙ୍କ ପାଖରେ ଅଧ୍ୟୟନ କରୁଥିବାରୁ ତଥା ନାଗଭୂଷଣଙ୍କ ପିତାଙ୍କ ସହପାଠୀ ଥିବାରୁ ଉଭୟ ପରିବାର ମଧ୍ୟରେ ଉତ୍ତମ ସମ୍ପର୍କ ଥିଲା । ତାଙ୍କ ବିୟୋଗ କେବଳ ଲେଖକଙ୍କୁ ବ୍ୟଥିତ କରିଛି ତାହା ନୁହେଁ ବରଂ ତାଙ୍କୁ ଜାଣିଥିବା ଅଗଣିତ ବନ୍ଧୁ, ପରିଜନ ଓ ଶ୍ରଦ୍ଧାଳୁମାନଙ୍କୁ ବ୍ୟଥିତ କରିଛି । ତାଙ୍କ ବିୟୋଗରେ ଉତ୍କଳ ଜନନୀ ନିଶ୍ଚିତ ଭାବରେ ଜଣେ ସୁପୁତ୍ରଙ୍କୁ ହରାଇଲା ଏଥିରେ ସନ୍ଦେହ ନାହିଁ ।

ପ୍ରକୃତି ଭବନ, ପ୍ରାଚୀ ବିହାର
କାକଟପୁର, ପୁରୀ

## ରାଜ୍ୟ ଅର୍ଥମନ୍ତ୍ରୀମାନଙ୍କ ଉଚ୍ଚ କ୍ଷମତା ସମ୍ପନ୍ନ କମିଟି ବୈଠକ

ଅର୍ଥମନ୍ତ୍ରୀ ଶ୍ରୀ ପ୍ରଦିପ କୁମାର ଅମାତ ଡିସେମ୍ବର ୧୧ ତାରିଖରେ ଦିଲ୍ଲୀଠାରେ ରାଜ୍ୟ ଅର୍ଥମନ୍ତ୍ରୀଙ୍କୁ ନେଇ ଗଠିତ ଉଚ୍ଚ କ୍ଷମତା ସମ୍ପନ୍ନ କମିଟି ବୈଠକରେ ରାଜ୍ୟ ସରକାରଙ୍କର କେତେକ ଜିଏସ୍‌ଟି (ଦ୍ରବ୍ୟ ଓ ସେବା କର) ସମ୍ପର୍କିତ ଦାବି ଉପସ୍ଥାପନ କରିଛନ୍ତି । କେନ୍ଦ୍ରୀୟ ବିକ୍ରି କର ୪% ରୁ ୨%କୁ ହ୍ରାସ କରାଯିବା ପରେ ଭାରତ ସରକାରଙ୍କଠାରୁ ରାଜ୍ୟର କ୍ଷତି ଭରଣା ପାଇଁ ୨୦୦୭–୦୮ରୁ ୨୦୧୩–୧୪ ପର୍ଯ୍ୟନ୍ତ ୪୭୨୦.୨୧ କୋଟି ଟଙ୍କା ରାଜ୍ୟ ସରକାର ଦାବି କରିଥିଲେ । ଏଥିରୁ ବର୍ତ୍ତମାନ ସୁଦ୍ଧା ୧୩୦୩.୮୦୮ କୋଟି ଟଙ୍କା କେନ୍ଦ୍ର ସରକାରଙ୍କଠାରୁ ମିଳିଛି । ବକେୟା ୩୪୧୭.୧୩ କୋଟି ଟଙ୍କା ତୁରନ୍ତ ପ୍ରଦାନ କରିବା ପାଇଁ ସେ ଦାବି କରିଥିଲେ । ଏଣୁ ଜିଏସ୍‌ଟି କାର୍ଯ୍ୟକାରିତା ପୂର୍ବରୁ କ୍ଷତି ଭରଣା ବାବଦରେ ବକେୟା ରାଶି ପ୍ରଦାନ କରାଗଲେ ରାଜ୍ୟ ସରକାରଙ୍କର କେନ୍ଦ୍ର ପ୍ରତି ବିଶ୍ୱାସନୀୟତା ବୃଦ୍ଧିରେ ସହାୟକ ହେବ ବୋଲି ଅର୍ଥମନ୍ତ୍ରୀ ଶ୍ରୀ ଅମାତ ପ୍ରକାଶ କରିଛନ୍ତି । ଓଡିଶା ରାଜ୍ୟ ପ୍ରବେଶ କର ବାବଦରେ ୨୦୧୩–୧୪ ଆର୍ଥିକ ବର୍ଷରେ ୧୬୧୮ କୋଟି ଟଙ୍କା ପାଇଛି । ପ୍ରବେଶ କର ଜିଏସ୍‌ଟିରେ ଅନ୍ତର୍ଭୁକ୍ତ ହେବାକୁ ଯାଉଥିବାରୁ ରାଜ୍ୟର ରାଜସ୍ୱ ନିଷ୍ପକ୍ଷ ହାର ଅଧିକ ହେବ । ଏଣୁ, ରାଜ୍ୟ କ୍ଷତିଭରଣା ପରିମାଣ ହିସାବ କରିବା ପୂର୍ବରୁ ପ୍ରବେଶ କର ଜନିତ ରାଜସ୍ୱ ହାନିର ପରିମାଣକୁ ବିଚାରକୁ ନେବାକୁ ସେ ଦାବି କରିଛନ୍ତି । ଜିଏସ୍‌ଟି ଲାଗୁ ହେଲେ ରାଜ୍ୟମାନଙ୍କୁ କ୍ଷତିପୂରଣ ପ୍ରଦାନ କରିବା ପାଇଁ ଏକ ସ୍ୱତନ୍ତ୍ର ସ୍ଥାୟୀ ସାମ୍ବିଧାନିକ ସଂସ୍ଥା ଆବଶ୍ୟକ ବୋଲି ଅର୍ଥମନ୍ତ୍ରୀ ପ୍ରକାଶ କରିଛନ୍ତି । ଜିଏସ୍‌ଟି ଲାଗୁ କରାଗଲେ ଦ୍ରବ୍ୟ ଓ ସେବାର ବ୍ୟବହାରକାରୀ ରାଜ୍ୟଗୁଡିକ ରାଜସ୍ୱ ପାଇବେ । ଓଡ଼ିଶା ପରି ଖଣିଜ ପଦାର୍ଥ ସମୃଦ୍ଧ ରାଜ୍ୟରେ ଉତ୍ତୋଳନ ଓ ପରିବହନ ଜନିତ ପ୍ରଦୂଷଣ ହେତୁ ଜନସାଧାରଣ କ୍ଷତିଗ୍ରସ୍ତ ହେଉଥିଲେ ମଧ୍ୟ ରାଜ୍ୟ କୌଣସି ରାଜସ୍ୱ ପାଇବ ନାହିଁ । ପରିବେଶ ପ୍ରତି କୁପ୍ରଭାବକୁ ଦୃଷ୍ଟିରେ ରଖି ଖଣିଜ ସମ୍ପଦ ଉତ୍ତୋଳନକାରୀ ରାଜ୍ୟଗୁଡିକୁ ଜିଏସ୍‌ଟି ପରିଷଦର ପରାମର୍ଶ ଭିତ୍ତିରେ ସବୁଜ କର (ଅଣରିହାତି ସେସ୍) ଆଦାୟ ପାଇଁ ଅଧିକାର ଦିଆଯିବା ସପକ୍ଷରେ ସେ ଦାବି ଜଣାଇଛନ୍ତି । ରାଜ୍ୟର ବହୁ ବ୍ୟବସାୟୀ ରାଜ୍ୟ ଜିଏସ୍‌ଟି ଓ କେନ୍ଦ୍ର ଜିଏସ୍‌ଟି ବ୍ୟତୀତ ଆନ୍ତଃରାଜ୍ୟ ଦ୍ରବ୍ୟ ଓ ସେବା କର ମାଧ୍ୟମରେ କାରବାର କରିବା ଆଶା କରାଯାଏ । ଆନ୍ତଃରାଜ୍ୟ ଦ୍ରବ୍ୟ ଓ ସେବା କର ପରିଚାଳନା ପାଇଁ ରାଜ୍ୟସରକାରଙ୍କୁ କେନ୍ଦ୍ର ସରକାରଙ୍କ ସହିତ ଆଇନ ଅନୁଯାୟୀ ମଧ ଅଧିକାର ପ୍ରଦାନ କରିବାକୁ ଦାବି କରାଯାଇଛି । ଫଳରେ ରାଜ୍ୟ ସରକାର ଆନ୍ତଃରାଜ୍ୟ କାରବାର କରୁଥିବା ବ୍ୟବସାୟୀମାନଙ୍କ କ୍ଷେତ୍ରରେ ହିସାବ ସମୀକ୍ଷା, ଆକଳନ ଏବଂ ଉପଯୁକ୍ତ ନ୍ୟାୟିକ ପଦକ୍ଷେପ ଗ୍ରହଣ କରିବାକୁ ସକ୍ଷମ ହେବେ ।

# ଆନ୍ତର୍ଜାତିକ ଭିନ୍ନକ୍ଷମ ଦିବସ ଉପଲକ୍ଷେ
# କ୍ଷମ, ଅକ୍ଷମ ଏବଂ ଭିନ୍ନକ୍ଷମ

ବିପିନ ବିହାରୀ ମହାନ୍ତି

ସାଧାରଣ ବ୍ୟକ୍ତିଟିଏ ତା' ଦୈନନ୍ଦିନ ଚଳଣିରେ ସମସ୍ତ ନିଜର ବ୍ୟବହାରିକ କାର୍ଯ୍ୟ ପାଇଁ ସମର୍ଥ ବା କ୍ଷମ ଥାଏ କାରଣ ତା'ର ସମସ୍ତ ଅଙ୍ଗ ତଥା ଇନ୍ଦ୍ରିୟମାନେ ଠିକ୍ କାମ କରୁଥାନ୍ତି। ତା'ର ଅନ୍ୟ ଉପରେ ଆଙ୍ଗିକ ଏବଂ ଇନ୍ଦ୍ରିୟ ଜନିତ ଯଥା ସ୍ପର୍ଶ, ସ୍ୱାଦ, ଘ୍ରାଣ, ଦର୍ଶନ ଏବଂ ଶ୍ରବଣ ଇତ୍ୟାଦି ପାଇଁ ନିର୍ଭରଶୀଳତା ପ୍ରାୟତଃ ନଥାଏ। ଏଣୁ ସେ ସମସ୍ତ ମାନବ ସମ୍ବଳକୁ ଯଥାଯଥ ସେ ବିନିଯୋଗ କରିଥାଏ।

ଅକ୍ଷମ ବ୍ୟକ୍ତିର କାର୍ଯ୍ୟ କରିବାର କ୍ଷମତା ନଥାଏ। ଯେମିତି ଜଣେ ଜନ୍ମାନ୍ଧ। ସେ ତା'ର ଦର୍ଶନ ଜନିତ କାର୍ଯ୍ୟ କେମିତି ସମ୍ପାଦନ କରିବ? ଅର୍ଥାତ୍ ସେ ଦର୍ଶନକୁ ଅକ୍ଷମ। ଏହା ଅର୍ଥ ନୁହେଁ ତା'ର ଅନ୍ୟାନ୍ୟ ଇନ୍ଦ୍ରିୟ ବା ଅଙ୍ଗ ପ୍ରତଙ୍ଗ କାମ କରୁ ନାହାଁନ୍ତି। ସେ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ସମର୍ଥ ଅଟେ। ଅନ୍ୟ ଅର୍ଥରେ ଭିନ୍ନ କାର୍ଯ୍ୟ ପାଇଁ ସେ କ୍ଷମ। ଏଣୁ ଭିନ୍ନକ୍ଷମ। ସବୁଥିରେ ଅକ୍ଷମ ବ୍ୟକ୍ତି ଏମିତି ଜଣେ କେହି ନାହିଁ।

କୌଣସି ଅଙ୍ଗର ଅକ୍ଷମତା ଦୁଇଟି କାରଣରୁ ହୋଇଥାଏ। ଗୋଟିଏ ଜନ୍ମଗତ ଏବଂ ଅନ୍ୟଟି ଜୀବଦ୍ଦଶା କାରଣରୁ ଅର୍ଜିତ। ଜନ୍ମଗତ ଯାହା ସେଥିପାଇଁ ଉକ୍ତ ବ୍ୟକ୍ତି ଦୁଃଖ ପ୍ରକାଶ କରେ ନାହିଁ କାରଣ ସେ ଯାହାର 'ନାହିଁ'ରେ ଜନ୍ମ ହୋଇଛି, ସେ ତା'ର ବ୍ୟବହାର ଜାଣେ ନାହିଁ ଯାହାର 'ଅଛି'ରେ ସେ ଅଛି, ସେଥିରେ ସେ ସନ୍ତୁଷ୍ଟ ଏବଂ ତାକୁ ହିଁ ନେଇ ସେ ପ୍ରକୃତି ସହିତ ଠିକ୍ ସମାୟୋଜନ କରିଥାଏ। ଏହି କାରଣରୁ ଜନ୍ମାନ୍ଧଟିଏ ତା' ଅନ୍ଧ ରାଜ୍ୟରେ ସମ୍ରାଟଟିଏ। ସେ କିଛି ପାଇବା ଜିନିଷ ହଜାଇ ନାହିଁ। ଏଣୁ ଖୋଜିବାର ନାହିଁ। ଖୋଜିବା କଥା ହିଁ ଦୁଃଖ। ଅଥଚ ଅର୍ଜିତ ବ୍ୟକ୍ତିଟିଏ ପାଇ ହରାଇଛି ବୋଲି ଦୁଃଖ। ପକେଟରେ ପଇସା ଥିଲେ ହଜିପାରେ। ହଜିଲେ ଖୋଜିବା ଅବଶ୍ୟମ୍ଭାବୀ। ଖୋଜି ନପାଇବା ହିଁ ଦୁଃଖ ଓ ମନସ୍ତାପ। ଅକ୍ଷମତା ଏକ ବିକଳ ଅଙ୍ଗ ନୁହେଁ। ପ୍ରତିଟି ବ୍ୟକ୍ତି ମାନବ ସମ୍ବଳ ନେଇ ଜନ୍ମ ହୋଇଛି। ତା'ର ବୁଦ୍ଧି, ବୃତ୍ତି ଓ ସାମର୍ଥ୍ୟ ଅଛି। ସେ କାମ କରିବାକୁ ସମର୍ଥ। ଆମର ଉଦ୍ଦେଶ୍ୟ ସମସ୍ତଙ୍କର ମାନବ ସମ୍ବଳର ଯଥାଯଥ ବିନିଯୋଗ ହେଉ। ଯିଏ ଯେଉଁଥିପାଇଁ ଯୋଗ୍ୟ, ଯେଉଁ ଭିନ୍ନତାକୁ କ୍ଷମ, ତାକୁ ସେଇଠି ବିନିଯୋଗ କରାଯାଉ।

ଏକଥା କହି ରଖୁ ଯେ ଭିନ୍ନକ୍ଷମ ସାଧାରଣ ବ୍ୟକ୍ତିଟିଏଠାରୁ ଭିନ୍ନ କଥାରେ ଏମିତିରେ ଅଧିକ କ୍ଷମ। ଜଣେ ବ୍ୟକ୍ତିର ତା' ସଂପତ୍ତିକୁ ଯଦି ତା' ପାଞ୍ଚ ସନ୍ତାନ ଭିତରେ ସମାନ ଭାବରେ ବାଣ୍ଟିଦିଏ, ଚାରୋଟି ସନ୍ତାନ ଥିଲେ ଅଧିକ ପଡ଼ିଥାନ୍ତା ନିଶ୍ଚୟ। ସେହି ଅର୍ଥରେ ପାଞ୍ଚଟି ଇନ୍ଦ୍ରିୟ ଭିତରୁ ଗୋଟିଏ ଅକାମୀ ହୋଇଗଲେ ଅନ୍ୟମାନେ ଅଧିକ ବଳଶାଳୀ ଓ କ୍ରିୟାଶୀଳ ହୋଇ ଯାଆନ୍ତି, ଏକଥା ସତ୍ୟ।

ଜନ୍ମଗତ ବା ଅର୍ଜିତ ଭିନ୍ନକ୍ଷମ ସମାଜରେ ଏକ ବିଶେଷ ଅଙ୍ଗ। 'ନାହିଁ' ଅର୍ଥରେ ଆମେ ସେମାନଙ୍କୁ ପଛକୁ ଠେଲି ଅବହେଳା କରିବା ନାହିଁ। ହେଲେନ୍ କେଲର ପରି ଜନ୍ମାନ୍ଧ ବିଶ୍ୱରେ ଯେଉଁ କୃତିତ୍ୱ ଦେଖାଇଛନ୍ତି, ତା'ର ପଟାନ୍ତର ନାହିଁ। ଏବେ ବି କର୍ମ କ୍ଷେତ୍ରରେ ନିଯୁକ୍ତି ଭିନ୍ନକ୍ଷମମାନେ ତାଙ୍କର ବ୍ୟକ୍ତିତ୍ୱ ଓ କୃତିତ୍ୱ ଦେଖାଇ ସାରିଲେଣି।

ଆମକୁ ସେମାନଙ୍କର ଅସୁବିଧାକୁ ଦେଖିବାକୁ ହେବ, ସେମାନଙ୍କର ବିଭିନ୍ନ ସମସ୍ୟାକୁ ବିଚାରକୁ ନେବାକୁ ହେବ, ବିଭିନ୍ନ କର୍ମ କ୍ଷେତ୍ରରେ ସେମାନଙ୍କୁ ଯୋଗ୍ୟତା ଭିତ୍ତିକ ସମାନ ଅଧିକାର ଦେବାକୁ ହେବ, ଏନେଇ ସଂରକ୍ଷଣ ବ୍ୟବସ୍ଥା ଲାଗୁ କରାଯାଇପାରେ । ସେମାନଙ୍କ ଥଇଥାନ କରିବାକୁ ହେବ ଯେଉଁଠି ସମ୍ଭବ, ସେମାନଙ୍କର ଅକର୍ମଣ୍ୟତାକୁ କୃତ୍ରିମ ଉପାୟରେ

ସୁଧାରିବାକୁ ହେବ, ସେମାନଙ୍କର ବେକାରୀଙ୍କୁ ବେକାରୀ ଭିନ୍ନତା ଏବଂ ଚଳପ୍ରଚଳକୁ ଗାଡ଼ି ଅଥବା ତତ୍‌ଜନିତ ନିୟମିତ ଭତ୍ତା ଯୋଗାଇବାକୁ ହେବ ଏବଂ ସର୍ବୋପରି ସମାଜରେ ଏକ ବ୍ୟକ୍ତିତ୍ୱ ସଂପୂର୍ଣ୍ଣ ବ୍ୟକ୍ତି ହିସାବରେ ବଂଚିବାକୁ ଦିଆଯିବ । ଏହି ବାର୍ତ୍ତା ପ୍ରତିଟି ବ୍ୟକ୍ତି, ଅଞ୍ଚଳ, ଦେଶ ତଥା ବିଶ୍ୱରେ ସୂଚାଇ ଦେବା ପାଇଁ ୩ ଡ଼ିସେମ୍ବର ୧୯୯୨ରୁ ମିଳିତ ଜାତିସଂଘ ତରଫରୁ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି ଏବଂ ପ୍ରତିବର୍ଷ ୩ ଡ଼ିସେମ୍ବରକୁ ବିଶ୍ୱ ଭିନ୍ନକ୍ଷମ ଦିବସ ରୂପେ ପାଳନ କରାଯାଉଛି । ଦୁଃଖ ଯେ ଏତେ ସତ୍ତ୍ୱେ ଭିନ୍ନକ୍ଷମଙ୍କ ଅବସ୍ଥା ସୁଧୁରେ ନାହିଁ । ଏମିତିକି ଗାଡ଼ି ମଟର କି ଅନ୍ୟାନ୍ୟ ଯାନବାହନରେ ତାଙ୍କ ପାଇଁ ସଂରକ୍ଷିତ ସ୍ଥାନଗୁଡ଼ିକ କଥା କଥିତ ବାବୁମାନେ ମାଡ଼ି ବସନ୍ତି । କାହାକୁ କହିଲେ କେହି ଶୁଣିବାର ନାହିଁ । ଏପରି ସ୍ଥଳେ ସହାନୁଭୂତି, ସହଯୋଗ ଓ ସମବେଦନା କଥା କିପରି କହିବା ?

ତଥାପି ଆସନ୍ତୁ, ସେମାନଙ୍କ ପାଇଁ ସାହାଯ୍ୟ ଏବଂ ଅନୁକମ୍ପାର ହାତଟିଏ ବଢ଼ାଇ ଦେବା । ସମାଜରେ ମର୍ଯ୍ୟାଦା ସମ୍ପନ୍ନ ବ୍ୟକ୍ତି ହିସାବରେ ବଞ୍ଚିବାରେ ସେମାନଙ୍କ ପାଇଁ ସୁଯୋଗ ସୃଷ୍ଟି କରିବା ।

ଓଡ଼ିଶା ଭାଷା ସଂରକ୍ଷଣ ଏବଂ ଗବେଷଣା ପ୍ରତିଷ୍ଠାନ
ବିପିନ ବିହାରୀ ପାଠାଗାର, ଜଟଣୀ



## ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷର ନାଗରିକ ସେବା କେନ୍ଦ୍ର ଉଦ୍‌ଘାଟିତ

ରାଜ୍ୟ ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ପୁଷ୍ପେନ୍ଦ୍ର ସିଂହଦେଓ ଓ ମୁଖ୍ୟ ଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତିଙ୍କ ଦ୍ୱାରା ବି.ଡି.ଏର ଏକ ନାଗରିକ ସେବା କେନ୍ଦ୍ର ନାଲକୋ ଛକ ସାମନ୍ତ ବିହାର ବି.ଡି.ଏ ମାର୍କେଟ କମ୍ପ୍ଲେକ୍ସ ପ୍ରଥମ ମହଲାରେ ଉଦ୍‌ଘାଟିତ ହୋଇଛି ।

ଏହି ସେବା କେନ୍ଦ୍ରରେ ନିର୍ମାଣ ଯୋଜନାର ଅନୁମୋଦନ ଏବଂ ଦାଖଲ ପ୍ରମାଣପତ୍ର ହାସଲ ନିମନ୍ତେ ବି.ଡି.ଏ ପ୍ରୋସେସିଂ ନିମନ୍ତେ ଆବେଦନ ଗ୍ରହଣ କରାଯିବ । ଭୁବନେଶ୍ୱର ସହରକୁ ଦେଶର ଏକ ଅଗ୍ରଣୀ ସହରରେ ପରିଣତ କରିବା ଦିଗରେ ଉଦ୍ୟମ ହେବା ସହିତ ଏକ ଉନ୍ନତ, ଆଧୁନିକ ଏବଂ ସୁପ୍ରବାହୀ ସେବା ପ୍ରଦାନ ଦିଗରେ ଏହି ସେବା ପ୍ରଦାନ କରିବ ବୋଲି ମନ୍ତ୍ରୀ ଶ୍ରୀ ସିଂହ ଦେଓ ଆଶା ପ୍ରକଟ କରିଥିଲେ । ଓଡ଼ିଶା ସାର୍ବଜନୀନ ସେବା ଅଧିକାର ଅଧିନିୟମ ୨୦୧୨ ଅନୁଯାୟୀ ନିର୍ମାଣ ଯୋଜନା ସମ୍ପର୍କିତ ସମସ୍ତ ଆବେଦନ ୬୦ଦିନ ମଧ୍ୟରେ ସମାପନ କରାଯିବ ବୋଲି ବି.ଡି.ଏ ଉପାଧ୍ୟକ୍ଷ ଡ. କ୍ରିଷନ୍ କୁମାର ପ୍ରକାଶ କରିଥିଲେ । ଏହି ସେବା ଯୋଗାଇ ଦେବା ପାଇଁ ବି.ଡି.ଏ ଭିଏଫ୍‌ଏସ୍ ଗ୍ଲୋବାଲ ସହିତ ସହବନ୍ଧନ କରିଛି । ଓଡିଏ ଆକ୍ଟ ୧୯୮୨ଅନୁଯାୟୀ ବି.ଡି.ଏ ୧୯୮୩ ମସିହାରୁ ଗଠନ ହେବା ପରଠାରୁ ଅଦ୍ୟାବଧି ୫୫୬ଟି ରାଜସ୍ୱ ଗ୍ରାମ ମୋଟ ୧୧୧୦ ବର୍ଗ କିଲୋମିଟର ଅଞ୍ଚଳ ପରିବ୍ୟାପ୍ତ ହୋଇଛି । ବର୍ତ୍ତମାନ ପ୍ରତିବର୍ଷ ହାରାହାରି ୩୫୦୦ ନକ୍ସା ଅନୁମୋଦନ ଦରଖାସ୍ତ ବି.ଡି.ଏରେ ପହଞ୍ଚୁଛି । ଏହାଛଡା ବି.ଡି.ଏକୁ Occupancy Certificate, Plot Allotment ଏବଂ ବିଭିନ୍ନ NOC Issue କରିବା ପାଇଁ ମଧ୍ୟ ଦରଖାସ୍ତ ସଂଖ୍ୟା ବୃଦ୍ଧି ପାଉଛି । ଭିଏଫ୍‌ଏସ୍ ଗ୍ଲୋବାଲ ପ୍ରଥମ ପର୍ଯ୍ୟାୟରେ ଗୃହ ନକ୍ସା ଅନୁମୋଦନ, Occupancy Certificate ତଥା ଅନ୍ୟାନ୍ୟ ଆନୁସଙ୍ଗିକ କାର୍ଯ୍ୟ କରିବା ସହ ପରବର୍ତ୍ତୀ ସମୟରେ ଗୃହ ଆବଣ୍ଟନ ସେବା ସାମିଲ କରାଯିବ । ଏହିପରି ଅନ୍ୟ ଏକ ନାଗରିକ ସେବା କେନ୍ଦ୍ର କଳିଙ୍ଗ ବିହାର ସେକ୍ଟର-୭ ସ୍ଥିତ ମାର୍କେଟ କମ୍ପ୍ଲେକ୍ସ ମଧ୍ୟରେ ଡିସେମ୍ବର ୨୨, ୨୦୧୪ରେ କାର୍ଯ୍ୟାରମ୍ଭ ପାଇଁ ସ୍ଥିର ହୋଇଛି । ବି.ଡି.ଏ କାର୍ଯ୍ୟାଳୟରେ କୌଣସି ଗୃହ ନକ୍ସା ଅନୁମୋଦନ ଓ ଭୋଗ ଦଖଲ ଆବେଦନ ପତ୍ର ଗ୍ରହଣ କରାଯିବ ନାହିଁ । ଉକ୍ତ ସେବା ଏହି କେନ୍ଦ୍ରରେ ସମସ୍ତ କାର୍ଯ୍ୟଦିବସ ପୂର୍ବାହ୍ଣ ୧୦ଟା ଠାରୁ ଅପରାହ୍ଣ ୫ଟା ମଧ୍ୟରେ ଉପଲବ୍ଧ ହେବ ବୋଲି ଜଣାପଡିଛି ।

# ସ୍ୱଚ୍ଛ ଭାରତର ସ୍ୱଚ୍ଛ ମାନସିକତା

ଶଶଧର ମହନ୍ତୀ

ଭାରତ ଏକ ସ୍ୱଚ୍ଛ ପବିତ୍ର ସ୍ୱାଧୀନ ଦେଶ । ହିନ୍ଦୁ, ମୁସଲମାନ, ଜୈନ, ଖ୍ରୀଷ୍ଟିୟାନ ଏବଂ ଅନ୍ୟାନ୍ୟ ଧର୍ମାବଲମ୍ବୀ ଭାରତବାସୀ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭାଇଚାରାର ଦୃଢ଼ ସମ୍ପର୍କ ପାଇଁ ପୃଥିବୀରେ ମହାନତା ଓ ସ୍ୱତନ୍ତ୍ରତା ବଜାୟ ରଖିଛନ୍ତି । ମାନ୍ୟବର ପ୍ରଧାନମନ୍ତ୍ରୀ ଚଳିତ ବର୍ଷ ଅକ୍ଟୋବର ୨ ତାରିଖ ପବିତ୍ର ଗାନ୍ଧୀ ଜୟନ୍ତୀ ପାଳନ ଅବସରରେ ଭାରତବର୍ଷର ଏକ ବଳିଷ୍ଠ ନୂତନ ଉଦ୍ଭାବନ ସ୍ୱରୂପ ଭାରତରେ ଥିବା ସବୁ ଛୋଟ ବଡ଼ ରେଳ ଷ୍ଟେସନ ପରିସରରେ ସଫେଇ କାର୍ଯ୍ୟକ୍ରମର ଶୁଭାରମ୍ଭ କରିଛନ୍ତି । ସୁତରାଂ ପ୍ରତ୍ୟହ ଲକ୍ଷାଧିକ ଲୋକ ରେଳଷ୍ଟେସନ ମଧ୍ୟଦେଇ ରେଳଯାତ୍ରା କରିଥାଆନ୍ତି । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ବାର୍ତ୍ତା ଥିଲା, ପରିଚ୍ଛନ୍ନତା ହିଁ ପବିତ୍ରତା । ସ୍ୱାସ୍ଥ୍ୟ ରକ୍ଷା କରିବାର ମୁଖ୍ୟ ଦାୟିତ୍ୱ ହେଉଛି ନିଜ ନିଜର ସ୍ୱାସ୍ଥ୍ୟ ପ୍ରତି ଅଧିକ ଯତ୍ନଶୀଳ ହେବା । ଗାନ୍ଧିଜୀ ଭାରତକୁ ଏକ ସ୍ୱଚ୍ଛ ଓ ସୁସ୍ଥ ରାଷ୍ଟ୍ର ରୂପେ ଗଢ଼ିବାର ସ୍ୱପ୍ନ ଦେଖିଥିଲେ । ସେ ମହତ୍ ବାଣୀ ପ୍ରସାର କରି ଆଦର୍ଶ ସମାଜ ଗଢ଼ିବାକୁ ପ୍ରୟାସ ଜାରି ରଖିଥିଲେ ମଧ୍ୟ ସ୍ୱାଧୀନତା ପରେ ଏଭଳି ନୂଆଚିନ୍ତା ଓ ଚେତନାର କଥା କେହି କରି ଦେଖାଇ ନାହାନ୍ତି । ପ୍ରଧାନମନ୍ତ୍ରୀଙ୍କର ଶୁଭଚିନ୍ତନ ଆଗାମୀ ସମୟରେ ଯେ ନୂତନ ବାର୍ତ୍ତା ଓ ସମ୍ଭାବନା ଆଣି ଦେବ, ଏହା ଅନସ୍ୱୀକାର୍ଯ୍ୟ । ଆମେ ପ୍ରତ୍ୟେକ ଭାରତୀୟ ମାନ୍ୟବର ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦିଙ୍କୁ ଧନ୍ୟବାଦ ଓ କୃତଜ୍ଞତା ଜଣାଇବା ଉଚିତ୍ ।

ଆମ୍ଭେମାନେ କେବଳ ରେଳଷ୍ଟେସନ କିମ୍ବା ସହର ବଜାର ରାସ୍ତାଗୁଡ଼ିକରେ ସ୍ୱଚ୍ଛ ଭାରତ ମିଶନ ପାଳନ କରି ବସିଯିବା ଯଥେଷ୍ଟ ନୁହେଁ । ସବୁ ରାସ୍ତାଘାଟ, ପାଦଚଲା ଗ୍ରାମୀଣ ରାସ୍ତାଗୁଡ଼ିକୁ ମଧ୍ୟ ପରିଷ୍କାର ରଖିବା ଦରକାର । କିନ୍ତୁ ଆମେ କଣ କରିବା ? କପାଳରେ କର ମାରିବା ସାର ହୋଇଛି । କେନାଲ ପାଖରେ ବସବାସ କରୁଥିବା ଗାଁର ଲୋକେ, ପୋଖରୀ ହୁଡ଼ା, ବିଲବାଡ଼ିର ହିଡ଼, ବଣବୁଦା ପାଖରେ ଦୈନିକ ଝାଡ଼ା ଯାଉଥିବା ଲୋକମାନେ କଣ ବୁଝନ୍ତି ସ୍ୱଚ୍ଛ ଭାରତ ମିଶନ ପାଳନର କଥା । କେନାଲବନ୍ଧ, ପୋଖରୀ ହୁଡ଼ା, ପାଦଚଲା ରାସ୍ତା, ହିଡ଼ ଉପରେ ମଳ ତ୍ୟାଗ କରିବା ଏମାନଙ୍କର କୁଅଭ୍ୟାସ । ଘରେ ନିରାପଦ ପାଇଖାନା କିଛି ଲୋକଙ୍କର ଥିଲେ ବି ଏଭଳି କଦର୍ଯ୍ୟ ଦରିଦ୍ର ମାନସିକତା ନିକଟରେ ସ୍ୱଚ୍ଛ ଭାରତବର୍ଷ, ସ୍ୱାସ୍ଥ୍ୟବାନ ମଣିଷର କଥା ହାର ମାନି ଯାଇଛି । ବାଟରେ ଖାଲି ପାଦରେ ଯାଉଥିବା ମଣିଷଟି ବାଟଘାଟରେ ମଳତ୍ୟାଗ କରୁଥିବା ଲୋକଙ୍କୁ ଗାଳି ଦେଇ ନିଜ ନାକରେ ଲୁଗାବିଣ୍ଡା ଜାକି ଛି–ଛି ବୋଲି କହି ଚାଲୁଥାନ୍ତି । ପୁଣି ସମୟ, ସୁବିଧା, ନିରୋଳା ଓ ଅନ୍ଧାରିଆ ହୋଇଗଲେ ଭଲ ଜାଗା ଦେଖି ବାଟକଡ଼ରେ ଝାଡ଼ା ଯିବାର ସୁଯୋଗକୁ ସେ ହାତଛଡ଼ା କରନ୍ତି ନାହିଁ । କିଛି ବର୍ଷ ପୂର୍ବେ ତତ୍କାଳୀନ ସରକାର ଘରେ ଘରେ ପାଇଖାନା ବସାଇବାକୁ ଜନସଚେତନତା ସୃଷ୍ଟି କରିବା ଏବଂ ସବୁ ଗାଁରେ ପାଇଖାନା ତିଆରି କରି ସୁଲଭ ମୂଲ୍ୟରେ ବାଣ୍ଟି ଦେଇଥିଲେ ମଧ୍ୟ କେତେକ ଲୋକମାନେ ଏସବୁକୁ ନାପସନ୍ଦ କରି କେନାଲ ବନ୍ଧ ରାସ୍ତାକଡ଼ରେ ମଳତ୍ୟାଗ କରିବାକୁ ଉପଯୁକ୍ତ ଜାଗା ଭାବେ ବାଛି ନେଇଛନ୍ତି ।

କେବଳ ସବୁ ରେଳଷ୍ଟେସନ ପରିସରକୁ ସଫା କରିଦେଲେ ପୂର୍ଣ୍ଣାଙ୍ଗ ହେବ ନାହିଁ । ଅନୀତି, ଦୁର୍ନୀତି, ଅତ୍ୟାଚାର, ବ୍ୟଭିଚାର, ମନ ଓ ହୃଦୟ ଭିତରେ ଜମାଟ ବାନ୍ଧି ରହିଥିବା କୁଡ଼କୁଡ଼ ଅଳିଆ ସଫା କରିବାର ସ୍ୱଚ୍ଛ ମାନସିକତା ପ୍ରତି ଆମ୍ଭେମାନେ ପ୍ରତ୍ୟେକେ ସଚେତନ ହେବା ଆବଶ୍ୟକ । ଗାନ୍ଧିଜୀଙ୍କର ଲକ୍ଷ୍ୟ ଥିଲା, ସ୍ୱଚ୍ଛ

ଭାରତ ଗଠନ କରି ଭାରତବର୍ଷକୁ ପୃଥିବୀର ସର୍ବଶ୍ରେଷ୍ଠ ଗଣତାନ୍ତ୍ରିକ, ସାର୍ବଭୌମିକ, ନିରାମୟପୂର୍ଣ୍ଣ ରାଷ୍ଟ୍ରରେ ପରିଣତ କରିବା । ବାସ୍ତବରେ ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଗାନ୍ଧିଜୀଙ୍କର ଅଭିଳାଷ, ସ୍ୱଚ୍ଛତା ମାଧ୍ୟମରେ ମିଶନ ପାଳନ କରିବାର ଉଚ୍ଚମାନର ଦୃଢ଼ ପଦକ୍ଷେପ ନେଇଛନ୍ତି । ଏହା ଭାରତବାସୀଙ୍କ ପକ୍ଷରେ ଅଭିନନ୍ଦନୀୟ ଓ ପ୍ରଣିଧାନଯୋଗ୍ୟ ।

ଯେତେବେଳେ ସାଧାରଣ ଅଜ୍ଞାନ ମଣିଷ ବୁଝିବ, ଆମ୍ଭେମାନେ ଯେଉଁ କାମ କରୁଛୁ, ତାହା ଅନ୍ୟମାନଙ୍କ ପାଇଁ କ୍ଷତି କରିବ । ପରିବେଶ ଦୂଷିତ ହୋଇ ମାରାତ୍ମକ ରୋଗ ସୃଷ୍ଟି ହେବ । ତେବେ କିଛି ପରିବର୍ତ୍ତନ ଘଟିବ । ସୁତରାଂ ସେମାନେ ଏସବୁ ସମସ୍ୟା ପ୍ରତି ଅତ୍ୟନ୍ତ ସଚେତନଶୀଳ ହେବା ଦରକାର । ଯିଏ ଯେତେ କହିଲେ, ଲେଖିଲେ କିମ୍ବା ଗଣମାଧ୍ୟମରେ ପ୍ରସାର ହେଲେ ମଧ୍ୟ ଏଗୁଡ଼ିକ ସେମାନଙ୍କ ପାଇଁ ଗପ ଶୁଣିବା ପରି ଲାଗିବ । ସେତେବେଳେ ସେମାନଙ୍କର ଅନୁଭବ କଥା ହୃଦୟରୁ ବାହାରି ପଡ଼ିବ, ଭଲମନ୍ଦ, ସ୍ୱଚ୍ଛ ଓ ଅସ୍ୱଚ୍ଛ, ରୋଗ ଓ ନିରୋଗ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଏହି ରୋଗରେ ସେ ପ୍ରଥମେ ଶିକାର ହେବ । ତେବେ ବୋଧହୁଏ ଏ ହୀନ କାମ ପ୍ରତି ତା'ର ଘୃଣା ଭାବ ଆସିଯିବ ।

ଆସନ୍ତୁ, ଆମର ଭାରତର ପ୍ରିୟ ଜନସାଧାରଣ, ଆମ ସ୍ୱଚ୍ଛ ଭାରତରେ ଯେଉଁ ମୁଷ୍ଟିମେୟ ଲୋକେ ଏପରି କଦର୍ଯ୍ୟ, ଅମାନବୀୟ, ଅସ୍ୱଚ୍ଛ ମାନସିକତାର କାର୍ଯ୍ୟ କରୁଛନ୍ତି, ସେମାନଙ୍କୁ ତୀବ୍ର ବିରୋଧ ଓ ସମାଲୋଚନା କରିବା । ସେମାନଙ୍କର ମନ, ହୃଦୟ, ମାନସିକତାର ପରିବର୍ତ୍ତନ ପାଇଁ ବାରମ୍ବାର ଅନୁରୋଧ ଜଣାଇବା । ପ୍ରଧାନମନ୍ତ୍ରୀଙ୍କର ସାଧୁ ଉଦ୍ୟମକୁ ସଫଳ କରିବା ପାଇଁ ଆମ୍ଭେମାନେ ସମ୍ମିଳିତ ଭାବେ ମନପ୍ରାଣ ଦେଇ ସାରା ଭାରତକୁ ସୁସ୍ଥ, ନିରୋଗ ରାଷ୍ଟ୍ରରେ ପରିଣତ କରିବାକୁ ପ୍ରତିଜ୍ଞା ନେବା । ସ୍ୱଚ୍ଛ ଭାରତରେ ଅସ୍ୱଚ୍ଛ ମାନସିକତା ପୋଷଣ ନକରି ସ୍ୱଚ୍ଛ ଓ ପବିତ୍ର ମାନସିକତା ମାଧ୍ୟମରେ ପୁଷ୍ଟିମୟ, ନିରାମୟ, ପ୍ରଗତିଶୀଳ, ରାଷ୍ଟ୍ର ଗଠନ କରିବା, ବାଡ଼ିବଗିଚାକୁ ସଫା ରଖିବା, ପାଦଚଲା ରାସ୍ତା, ଗାଆଁ ଗହଳି ରାସ୍ତା, କେନାଲ ପୋଖରୀ ହୁଡ଼ା, ବିଲବାଡ଼ିର ହିଡ଼ ଉପରେ ମଳତ୍ୟାଗ ନକରି ନିଜ ନିଜ ଘରେ ପାଇଖାନା ତିଆରି କରି ପରିମଳ ବ୍ୟବସ୍ଥାକୁ ନିର୍ମଳ ଓ ପରିଷ୍କାର ରଖିବା ସହିତ ନିଜର ମନ, ହୃଦୟ, ସ୍ୱାସ୍ଥ୍ୟ ପ୍ରତି ଶ୍ରଦ୍ଧାଶୀଳ ହୋଇ ସ୍ୱଚ୍ଛ ଭାରତ, ସ୍ୱଚ୍ଛ ମାନସିକତା, ସୁନ୍ଦର ସ୍ୱାସ୍ଥ୍ୟ ପ୍ରତି ଅତ୍ୟଧିକ ଯତ୍ନବାନ ହେବା । ଏହାଦ୍ୱାରା ପ୍ରଧାନମନ୍ତ୍ରୀଙ୍କର ବଳିଷ୍ଠ ସମ୍ଭାବନାକୁ ନିଶ୍ଚିତ ସହଯୋଗ ମିଳିବ ଓ ସତ୍ୟ, ଶିବ, ସୁନ୍ଦର ଭାରତବର୍ଷ ଗଠନ କରିବାକୁ ଆମେ ସମର୍ଥ ହୋଇ ପାରିବା ।

ସା/ପୋ.– ବରାଳପୋଖରୀ
ଭାୟା– ଚରମ୍ପା, ଜି– ଭଦ୍ରକ, ପିନ୍–୭୫୬୧୦୧



# ବୀର ପୁଙ୍ଗବ ବିପ୍ଳବୀ ବକ୍ସି ଜଗବନ୍ଧୁ

**ମଧୁସୂଦନ ପଟ୍ଟନାୟକ**

୧୮୦୩ ମସିହା । ଯେତେବେଳେ ଇଂରେଜମାନେ ଓଡ଼ିଶା ଦଖଲ କଲେ, ସେତେବେଳକୁ ଓଡ଼ିଶାର ନାବାଳକ ଗଜପତି ମୁକୁନ୍ଦଦେବ ଖୋର୍ଦ୍ଧାରେ ରହି ଶାସନ କରୁଥିଲେ । ଖୋର୍ଦ୍ଧା ଥିଲା ତାଙ୍କର ରାଜଧାନୀ । ତାଙ୍କର ବୟସ ଖୁବ୍ କମ୍ ଥିବାରୁ ରାଜକାର୍ଯ୍ୟ ପରିଚାଳନା କରିବାକୁ ତାଙ୍କୁ ତାଙ୍କର କୁଳପୁରୋହିତ ଜୟୀ ରାଜଗୁରୁ ସବୁ କଥାରେ ପରାମର୍ଶ ଦେଉଥିଲେ । ସେ ଥିଲେ ତାଙ୍କର ମନ୍ତ୍ରୀ ସଦୃଶ । ଗଜପତି ମୁକୁନ୍ଦଦେବଙ୍କ ପ୍ରଧାନ ସେନାପତି ଥିଲେ ବକ୍ସି ଜଗବନ୍ଧୁ । ତାଙ୍କର ପୂରାନାମ ଥିଲା ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ । ଚିଲିକା ନିକଟବର୍ତ୍ତୀ ରୋଡ଼ଙ୍ଗଗଡ଼ର ସେ ଥିଲେ ପ୍ରକୃତ ଅଧିକାରୀ । ସେନାଧକ୍ଷ ହୋଇଥିବାରୁ ତାଙ୍କୁ କେତେଗୁଡ଼ିଏ ପ୍ରଗଣା ଜାଗିରୀ ସ୍ୱରୂପ ମିଳିଥିଲା । କିନ୍ତୁ ଅନ୍ୟାୟ ଭାବେ ଇଂରେଜ ସରକାର ସେହି ପ୍ରଗଣାଗୁଡ଼ିକ ଛଡ଼ାଇ ନେଇଥିଲେ । ଚାଉଳ ଓ ଲୁଣ ଦର ବହୁତ ବଢ଼ି ଯିବାରୁ ଅତ୍ୟାଚାରୀ ସର୍ବରାକାରମାନେ (ଖଜଣା ଆଦାୟକାରୀ) ନିରୀହ ଲୋକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରନ୍ତେ ସେହି ଅଶାନ୍ତି ଓ ଅସନ୍ତୋଷର ଦାବାଗ୍ନି ମଧ୍ୟରୁ ଆରମ୍ଭ ହେଲା ଗଣବିପ୍ଳବ – ପାଇକ ବିଦ୍ରୋହ, ଯାହାର କର୍ଣ୍ଣଧାର ଥିଲେ ବୀର ପୁଙ୍ଗବ ବକ୍ସି ଜଗବନ୍ଧୁ ।

ବକ୍ସି ଥିଲେ ରାଜକୁଳ ସମ୍ଭୂତ । ପିଲାଦିନୁ ଅଶ୍ୱ ଚାଳନା ଓ ବିଭିନ୍ନ ରଣକୌଶଳ ଶିକ୍ଷାଲାଭ କରିଥିଲେ ସେ । ବଳିଷ୍ଠ ବପୁ, ଉନ୍ନତ କପାଳ ଗୌରବର୍ଣ୍ଣ ଶରୀର ଓ ଅବୟବର ମାଂସପେଶୀଗୁଡ଼ିକ ପ୍ରତି ପ୍ରାଣରେ ଭୟ ସଂଚାର କରୁଥିଲା । ଯେଉଁ ଦିନ ଇଂରେଜ କର୍ତ୍ତୃପକ୍ଷ ହୀନ ଚକ୍ରାନ୍ତ କରି ବକ୍ସିଙ୍କର ଗଡ଼ରୋଡ଼ଙ୍ଗକୁ ଦେଶଦ୍ରୋହୀ ଚରଣ ପଟ୍ଟନାୟକଙ୍କ କୁମନ୍ତ୍ରଣାରେ ଜନୈକ ଧନୀ ବଂଗାଳୀ କୃଷ୍ଣଚନ୍ଦ୍ର ସିଂହଙ୍କୁ ବିକ୍ରୟ କରିଦେଲେ, ସେହିଦିନ ଶାନ୍ତ ଜଗବନ୍ଧୁ ଅଶାନ୍ତ ଜଗବନ୍ଧୁ ରୂପେ ଭୟଙ୍କର ରୂପ ଧାରଣ କଲେ। ସେ ଆହୁରି ଅଶାନ୍ତ ହୋଇ ପଡ଼ିଥିଲେ ଯେତେବେଳେ ଗଜପତି ରାଜା ମୁକୁନ୍ଦଦେବ ଶତ୍ରୁ ହାତରେ କାରାବରଣ କଲେ । ବିଦେଶୀ ଶାସକଙ୍କୁ ଉପଯୁକ୍ତ ଶିକ୍ଷା ଦେବା ଲାଗି ସୁଯୋଗକୁ ଅପେକ୍ଷା କରି ରହିଲେ ।

କଥିତ ଅଛି ଏହି ଶକ୍ତିଶାଳୀ ବୀର ପୁଙ୍ଗବ ବକ୍ସିଙ୍କର ଶକ୍ତି ଏତେ ଅଧିକ ଥିଲା ଯେ ଘୁମୁସର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରିଥିବା ସମୟରେ ନିଜ ପୃଷ୍ଠ ଦେଶକୁ ଗୋଟିଏ ଦଶଫୁଟ ଲମ୍ବ ଓ ପାଞ୍ଚଫୁଟ ଓସାରର ଏକ ପ୍ରସ୍ତର ଖଣ୍ଡରେ ସ୍ପର୍ଶ କରନ୍ତେ, ତାହା ସ୍ଥାନଚ୍ୟୁତ ହୋଇଯାଇଥିଲା । ଇଂରେଜ କର୍ତ୍ତୃପକ୍ଷ ତାଙ୍କ ନାମ ଶୁଣିବା ମାତ୍ରେ ଭୟଭୀତ ହୋଇ ଯାଉଥିଲେ । ଇଂରେଜମାନେ ୧୮୦୩ରେ ଓଡ଼ିଶାକୁ ଶାସନ କରି ଦୁଇ ଭାଗ କରିଦେଲେ । ଗୋଟିକୁ କୁହାଗଲା ମୋଗଲବନ୍ଦୀ । ଏହା କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳକୁ ନେଇ ଗଠିତ ହୋଇଥିଲା । ଏହାକୁ ଇଂରେଜ ସାହେବମାନେ ନିଜେ ବୁଝୁଥିଲେ । ଅନ୍ୟଟି ଥିଲା ଗଡ଼ଜାତ । ଏହାର ହାନିଲାଭ ଗଡ଼ଜାତ ରାଜାମାନେ ବୁଝୁଥିଲେ । ସେମାନେ ଥିଲେ ଅତ୍ୟନ୍ତ ଅତ୍ୟାଚାରୀ ନିଷ୍ଠୁର ପ୍ରକୃତିର। ସେମାନଙ୍କ ଉପରେ ଥିଲେ ଗୋରା ପଲିଟିକାଲ୍ ଏଜେଣ୍ଟ ।

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଘୁମୁସର ଥିଲା ଗୋଟିଏ ରାଜ୍ୟ । ସେଠାରେ କରଦ ରାଜାମାନେ ଶାସନ କରୁଥିଲେ । ସେଠାରେ ଇଂରେଜମାନଙ୍କ ବିରୁଦ୍ଧରେ ଆରମ୍ଭ ହେଲା ବିଦ୍ରୋହ । ତତ୍ପୂର୍ବରୁ ଘୁମୁସରର ରାଜା କୃଷ୍ଣଭଞ୍ଜ ଫରାସୀ ଶାସକଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଥିବାରୁ କୃଷ୍ଣଭଞ୍ଜଙ୍କୁ କୁହାଯାଏ ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ପ୍ରଥମ ଯୋଦ୍ଧା । ୧୮୧୭ ମସିହାରେ ଘୁମୁସରରୁ ପ୍ରାୟ ୪୦୦ ବିଦ୍ରୋହୀ କନ୍ଧ ଆଦିବାସୀ ଖୋର୍ଦ୍ଧା ରାଜ୍ୟ ସଂଲଗ୍ନ ବାଣପୁର ଭିତରେ ପଶି ସରକାରୀ ଖଜଣାଖାନା ଲୁଟି କଲେ । ଥାନା, ସରକାରୀ ଅଫିସ, କଚେରୀ ଲୁଣ୍ଠନ କଲେ ଓ ଶତ ଶତ ଇଂରେଜ ସୈନ୍ୟଙ୍କୁ ନିହତ କଲେ । ମାଜିଷ୍ଟ୍ରେଟ୍ ଏଡ଼ୱାର୍ଡ଼ ଇମ୍ପେ ବିଦେଶୀ ସୈନିକଙ୍କୁ ନେଇ

ଲେଫ୍‌ଟନାଣ୍ଟ ଟ୍ରାଭିସ୍‌ଙ୍କ ସହ ଖୋର୍ଦ୍ଧାଠାରେ ପହଞ୍ଚିଲେ । ପାଇକମାନଙ୍କ ସହ ମୁହାଁମୁହିଁ ଯୁଦ୍ଧ ହେଲା କେବଳ ଗଙ୍ଗପଡ଼ା ପାଇଁ ନୁହେଁ ଖୋର୍ଦ୍ଧା ପାଇଁ ମଧ୍ୟ । ୧୮୧୭ ମସିହାର ଶେଷ ଭାଗରେ ବକ୍‌ସିଙ୍କ ନିର୍ଦ୍ଦେଶନାରେ ଖୋର୍ଦ୍ଧା, ପୁରୀ, ପିପିଲି ଓ ଲେମ୍ବାଇ ଅଞ୍ଚଳରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେଲା । ଓଡ଼ିଆ ପାଇକ ବାହିନୀ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଲେ । ବକ୍‌ସିଙ୍କ ବିଦ୍ରୋହାତ୍ମକ କର୍ମପନ୍ଥା ଓଡ଼ିଶାରେ ଇଂରେଜ ଶାସକଙ୍କୁ ଅଚଳ କରିଦେଲା । ତେଣୁ ଇଂରେଜ ସରକାର କଠୋର ଦମନ ନୀତି ପ୍ରୟୋଗ କଲେ । ଏହା ପରେ ବକ୍‌ସିଙ୍କ ନେତୃତ୍ୱରେ ଆରମ୍ଭ ହେଲା ଗଣଆନ୍ଦୋଳନ । କିୟତକ୍ଷଣ ମଧ୍ୟରେ ବିଦ୍ରୋହ କୁଜଙ୍ଗ, ଖୋର୍ଦ୍ଧା, ଗୋପ, ତିରଣ, ହରିଶପୁର, ମରିଚପୁର ସର୍ବତ୍ର ବ୍ୟାପିଗଲା । ଇଂରେଜମାନେ ବିଦ୍ରୋହୀ ସେନାପତିଙ୍କୁ ଧରି ପାରି ନଥିଲେ ସିନା ବକ୍ସିଙ୍କ କେତେକ ସହଯୋଗୀଙ୍କୁ ଫାଶୀଖୁଣ୍ଟରେ ଝୁଲାଇବାକୁ ସକ୍ଷମ ହେଲେ । ଅନେକଙ୍କୁ ଦ୍ୱୀପାନ୍ତର ଦିଆଗଲା । ଗଜପତି ମୁକୁନ୍ଦଦେବଙ୍କୁ ବାରବାଟୀ ଦୁର୍ଗରେ ଅଟକବନ୍ଦୀ କରି ରଖାଗଲା । ବକ୍ସିଙ୍କ ପରିବାରର ପ୍ରତ୍ୟେକ ବ୍ୟକ୍ତିଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖାଗଲା ସିନା କିନ୍ତୁ ବକ୍‌ସି ଘୁମୁସର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରି ହୃତ ଗୌରବକୁ ଫେରି ପାଇବାକୁ ଯୋଜନା ପ୍ରସ୍ତୁତ କରୁଥିଲେ । ସେତେବେଳକୁ ସେ ରାଜ୍ୟବାସୀଙ୍କ ମଧ୍ୟରେ ଏତେ ପ୍ରିୟ ହୋଇ ପାରିଥିଲେ ଯେ ଖୋର୍ଦ୍ଧାର ପ୍ରତ୍ୟେକ ପରିବାର ନିଜ ନିଜ ଘରେ ପଖାଳଭାତ ଶାଗଭଜା ସାଇତି ରଖୁଥିଲେ । ଯଦି ଅସମୟରେ ବକ୍‌ସି କାହାଘରେ ପହଞ୍ଚି ଯାଆନ୍ତି, ତେବେ ସେହି ସାଇତା ଖାଦ୍ୟ ବିପ୍ଳବୀଙ୍କ ସେବାରେ ଲାଗିବ ।

ଗଜପତି ମୁକୁନ୍ଦଦେବ ବାରବାଟୀ ଦୁର୍ଗ ଓ ମେଦିନୀପୁର ଦୁର୍ଗର ଅଟକବନ୍ଦୀରୁ ମୁକୁଳିବା ପରେ ପୁରୀର ବାଲିସାହିସ୍ଥିତ ରାଜନଅରରେ ଅଟକବନ୍ଦୀ ରୂପେ ରହିଲେ । ସେନାଧକ୍ଷ ବକ୍‌ସି ସେଠାରେ ଖୋର୍ଦ୍ଧା, ବାଣପୁର ଓ ଲେମ୍ବାଇ ସ୍ଥାନରେ ପାଇକ ବାହିନୀ ନେଇ ରକ୍ତର ତାଣ୍ଡବଲୀଳା ସୃଷ୍ଟି କଲେ । ଖୋର୍ଦ୍ଧାର ସମସ୍ତ ପ୍ରଜା ଗଜପତିଙ୍କର ମୁକ୍ତି ଦାବି କରି ପ୍ରାଣବଳି ଦେବାକୁ ଭୀଷ୍ମ ପ୍ରତିଜ୍ଞା କଲେ । ଅସନ୍ତୁଷ୍ଟ ବକ୍‌ସି ବାଲିସାହି ନଅରରେ ଗୋପନରେ ମୁକୁନ୍ଦଦେବଙ୍କୁ ସାକ୍ଷାତ କରି ବିପ୍ଳବର ଗତି ଓ ପ୍ରଜାଙ୍କ ଅନୁରକ୍ତି ଜଣାଇଲେ । ବକ୍‌ସି ମୁକୁନ୍ଦଦେବଙ୍କୁ କହିଲେ – ଓଡ଼ିଶାର ଲୋକେ କେବଳ ଆପଣଙ୍କୁ ରାଜା ବୋଲି ସ୍ୱୀକାର କରିବା ଚାହାନ୍ତି । ସେନାଧକ୍ଷ ଜଗବନ୍ଧୁଙ୍କ ମୁହଁରୁ ନିଜର ପ୍ରିୟ ପ୍ରଜାଙ୍କ ଏକାନ୍ତ ଇଚ୍ଛା ସଂପର୍କରେ ଅବଗତ ହୋଇ ମୁକୁନ୍ଦଦେବ ପୁନର୍ବାର ଶାଣିତ ତରବାରୀ ସହିତ ଇଂରେଜ ପଶୁ ଶକ୍ତିର ମୁକାବିଲା କରିବାକୁ ଆଗେଇ ଆସିଲେ । ଇତ୍ୟବସରରେ କ୍ୟାପ୍‌ଟେନ୍ ଲିଫାଡ୍ରେ ଏକ ଘୃଣ୍ୟ ଗୁଜବର ଆଶ୍ରୟ ନେଇ ଗଜପତିଙ୍କୁ ଶୁଣାଇ ଦେଲେ – ବକ୍‌ସି ଜଗବନ୍ଧୁ ନିଜେ ଖୋର୍ଦ୍ଧା ରାଜ୍ୟରେ ରାଜା ହେବାକୁ ଇଚ୍ଛା ପ୍ରକଟ କରନ୍ତି ଓ ନିଜର ସ୍ୱାର୍ଥ ହାସଲ ପାଇଁ ପାଇକମାନଙ୍କୁ ମେଳି କରାଇ ବିଦ୍ରୋହ କରୁଛନ୍ତି । ଏହି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଗଜପତି କିୟତକ୍ଷଣ ପାଇଁ ଭୁଲ ବୁଝିଲେ, କିନ୍ତୁ ପରେ ନିଜର ଭୁଲ ବୁଝି ଅନୁତପ୍ତ ପୂର୍ବକ ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କଲେ । କ୍ୟାପ୍‌ଟେନ୍ ଲିଫାଡ୍ରେ ପୁରୀ ଆକ୍ରମଣ କରିବା ପାଇଁ ଆଗଭର ହେଲେ । ପୁରୀଠାରେ ବକ୍‌ସି, ଗଜପତିଙ୍କ ସୈନ୍ୟ ବାହିନୀ ଓ ଶ୍ରୀ ଜଗନ୍ନାଥଙ୍କ ସେବକଗଣ ଇଂରେଜ ସୈନ୍ୟ ବାହିନୀର ପ୍ରତିରୋଧ କରି ବିଫଳ ହେଲେ । ମୁକୁନ୍ଦଦେବଙ୍କୁ ଶତ୍ରୁ ସୈନ୍ୟ ହାତରେ ବନ୍ଦୀ ହେବାକୁ ପଡ଼ିଲା । ବକ୍‌ସି ଖସି ଯାଇ ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କଲେ । ବାରବାଟୀ ଦୁର୍ଗର ଗୋଟିଏ କ୍ଷୁଦ୍ର କୁଟୀର ମଧ୍ୟରେ ନିଜର ପୁତ୍ର ସହ ଓଡ଼ିଶାର ପରାଜିତ ଗଜପତି, ପାଇକ ବିଦ୍ରୋହର ଅନ୍ୟତମ ସାରଥୀ ଓ ଭୋଇ ବଂଶର ଶେଷ ସମ୍ରାଟ ଦ୍ୱିତୀୟ ମୁକୁନ୍ଦଦେବ ମହାଦୁଃଖରେ କାଳାତିପାତ କରିବା ସଂଗେ ସଂଗେ ଜଗନ୍ନାଥଙ୍କ ଜୟଗାନ ପୂର୍ବକ ଖ୍ରୀ. ୧୮୧୭ରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ବକ୍‌ସି କିନ୍ତୁ ଇଂରେଜ ସରକାର ଆଗରେ ମଥା ନୁଆଁଇ ନଥିଲେ । ବାଧ୍ୟ ହୋଇ ଇଂରେଜ କର୍ତ୍ତୃପକ୍ଷ ୧୮୨୦ ମସିହାରେ ତାଙ୍କ ପରିବାରର ସମସ୍ତଙ୍କୁ ମୁକ୍ତ କରିଦେଲେ ।

୧୮୨୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହିପରି ଛକାପଞ୍ଝା ଚାଲିଲା । ବିପ୍ଳବୀ ଜଗବନ୍ଧୁ ଓ ଇଂରେଜ ପ୍ରଶାସକ ମଧ୍ୟରେ ଏକ ଆପୋଷ ସମାଧାନ ହେଲା । ସେତେବେଳେ ଜଗବନ୍ଧୁ ନୟାଗଡ଼ ରାଜ୍ୟର ଜଙ୍ଗଲ ମଧ୍ୟରେ ଥିଲେ । ଇଂରେଜ ଶାସକ ନୟାଗଡ଼ ରାଜାଙ୍କୁ ଧମକ ଦେଇ ଖ୍ରୀ. ୧୮୨୫ରେ ଓ୍ୱାଜ ମହମ୍ମଦ ନାମକ ଜଣେ ସୁଦକ୍ଷ କର୍ମଚାରୀଙ୍କ ସହାୟତାରେ ଏକ ଆପୋଷ ରାଜିନାମାରେ ସ୍ୱାକ୍ଷର କରାଇବାକୁ ସକ୍ଷମ ହେଲେ । ତଦନୁସାରେ ଇଂରେଜ ସରକାର ନିକଟରେ ଆତ୍ମସମର୍ପଣ ପୂର୍ବକ ମାସିକ ଦେଢ଼ଶହ ଟଙ୍କା ଭତ୍ତା ପାଉଥିଲେ । ୧୮୨୯ ମସିହା ଜାନୁୟାରୀ ୨୪ ତାରିଖ ଶନିବାର ସେହି ମହାନ୍ ବିପ୍ଳବୀଙ୍କ ମହାପ୍ରୟାଣ ହୋଇଥିଲା । ଭାରତ ଜନନୀ ତାର ଜଣେ ଅଦ୍ୱିତୀୟ ଯୋଦ୍ଧାଙ୍କୁ ହରାଇ ବସିଲା । ବକ୍‌ସିଙ୍କର ବାଣୀ ଥିଲା ଅମର । ସେ ଶେଷ ପର୍ଯ୍ୟନ୍ତ ବୀରଦର୍ପରେ କହୁଥିଲେ – ଓଡ଼ିଶା ଆମର,ଚିରଦିନ ଆମର ହୋଇ ରହିବ । ଧନ୍ୟ ଧନ୍ୟ ସେହି ବୀର । ବୀରପ୍ରସବିନୀ ଉତ୍କଳ ମାତାର ସୁଯୋଗ୍ୟ ସନ୍ତାନ ।

କୈବଲ୍ୟ, ଦଣ୍ଡତୋଟା, ପୁରୀ

# ଶ୍ରୀଜଗନ୍ନାଥ: ନବକଳେବର

ବେଣୁଧର ଦାସ

ଜଗନ୍ନାଥଂ ମହାବିଷ୍ଣୁ ବଳଭଦ୍ର ସଦାଶିବମ୍ ।
ସୁଭଦ୍ରାଂ ବ୍ରହ୍ମ ଶକ୍ତିଃ ଚ ପ୍ରଣମାମି ପୁନଃପୁନଃ ॥

ଧରାପୃଷ୍ଠରେ ଯେତେବେଳେ ଅଧର୍ମ, ଅନ୍ୟାୟ, ଅସତ୍ୟ, ଅତ୍ୟାଚାର ମାତ୍ରା ବୃଦ୍ଧି ହୋଇଥାଏ ମଣିଷ ତା'ର ହିତାହିତ ଜ୍ଞାନକୁ ହରାଇବସେ । ଠିକ୍ ସେତିକି ବେଳେ ସ୍ୱୟଂ ଭଗବାନ ଭିନ୍ନ ଭିନ୍ନ ରୂପରେ ଆବିର୍ଭାବ ହୋଇ ପୃଥିବୀକୁ ପାପ ଭାରରୁ ମୁକ୍ତ କରି ଦୁଷ୍ଟମାନଙ୍କୁ ସଂହାର କରିଥିବା ବିଭିନ୍ନ ପୁରାଣରେ ଉଲ୍ଲେଖ ରହିଛି । ଯୁଗ ପରେ ଯୁଗ ସତ୍ୟ, ତ୍ରେତା, ଦ୍ୱାପର ପରେ କଳିଯୁଗରେ ବୁଦ୍ଧ ଅବତାର ନେଇ ନୀଳାଚଳ କ୍ଷେତ୍ରରେ ଶ୍ରୀଜଗନ୍ନାଥ ରୂପେ ଭାଇ ଭଉଣୀଙ୍କ ସହିତ ବଡ଼ଦେଉଳରେ ବିରାଜମାନ କରୁଛନ୍ତି । ତାଙ୍କର କିଂବଦନ୍ତୀ କୁହେ ଅନେକ ରାଜା, ମହାରାଜା, ଋଷିମୁନିଠାରୁ ପଣ୍ଡା ପଡ଼ିଆରୀ ଭକ୍ତମାନଙ୍କୁ ବିପଦରୁ ମୁକ୍ତ କରିଛନ୍ତି । କଳାଘୋଡ଼ା, ଧଳାଘୋଡ଼ାରେ ଯାଇ ଯୁଦ୍ଧ କରିଛନ୍ତି, ଅଦୃଶ୍ୟ ହୋଇ ଭକ୍ତମାନଙ୍କୁ ବିପଦରୁ ଉଦ୍ଧାର କରିଛନ୍ତି । ଗବେଷକ ଓ ଲେଖକମାନଙ୍କ ମାଧ୍ୟମରେ ଶ୍ରୀଜଗନ୍ନାଥ ସଂସ୍କୃତି ଓ ଚେତନାକୁ ଦେଶ ବିଦେଶରେ ପରିଚିତ କରାଇ ପାରିଛନ୍ତି ।

ଐତିହାସିକ ତଥ୍ୟ ସମ୍ବଳିତ ମାଦଳା ପାଞ୍ଜିର ଉଲ୍ଲିଖିତ ବିବରଣୀଗୁଡ଼ିକୁ ସମୀକ୍ଷା କଲେ ଶ୍ରୀଜଗନ୍ନାଥଙ୍କ ଚେତନା ମନ ମଧ୍ୟରେ ଆନ୍ଦୋଳନ ସୃଷ୍ଟି କରେ । ସଠିକ୍ ସମୟ, ସଠିକ୍ କାର୍ଯ୍ୟାବଳୀ ଓ ସଠିକ୍ କିଂବଦନ୍ତୀଗୁଡ଼ିକୁ ତର୍ଜମା କଲେ ମନ ମଧ୍ୟରେ କେତେଗୁଡ଼ିଏ ବିଷୟ ଦ୍ୱନ୍ଦ୍ୱ ସୃଷ୍ଟି କରେ । ତଥାପି ସମୟର ଗତିପଥକୁ ନିର୍ଣ୍ଣୟ କରି ଗବେଷଣାର ସୂତ୍ର ଆବିଷ୍କାର କରିବା ଲେଖକର ଧର୍ମ । ବିବିଧ ଘଟଣାବଳୀର ଜନମାନସକୁ ଆସି ନଥିବା କିଛି ଘଟଣାବଳୀ କିମ୍ବା ଅପ୍ରକାଶିତ ବିଷୟ ଏବଂ ବିଭିନ୍ନ ସ୍ଥାନରେ ଥିବା ମହିମାଗୁଡ଼ିକୁ ଉଲ୍ଲେଖ କରାଗଲେ, ତାହା ସୁସମାଚାର ଦ୍ୱାରା ସର୍ବଜନବିଦିତ ହୋଇପାରିବ । କିଂବଦନ୍ତୀ କହେ – ଯୋଡ଼ା ଆଷାଢ଼ ଯେଉଁ ବର୍ଷ ପଡ଼ିଥାଏ, ସେହିବର୍ଷ ଶ୍ରୀଜଗନ୍ନାଥଙ୍କ ନବକଳେବର ଅନୁଷ୍ଠିତ ହୋଇଥାଏ । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ଯେ, ଚୋଡ଼ଗଙ୍ଗଦେବଙ୍କ ରାଜୁତି ପୂର୍ବରୁ ଶ୍ରୀକ୍ଷେତ୍ରରେ ଗୋଟିଏ ମନ୍ଦିର ଥିଲା । ସେଇ ମନ୍ଦିରରେ ଶ୍ରୀଜଗନ୍ନାଥ, ବଡ଼ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରା ପୂଜା ପାଉଥିଲେ । ରକ୍ତବାହୁ ନାମକ ବୈଦେଶିକ ସେନାପତି ପୁରୀରେ ଶ୍ରୀଜଗନ୍ନାଥଙ୍କ ଖ୍ୟାତି ଶୁଣି ଶ୍ରୀମନ୍ଦିର ଆକ୍ରମଣ କରିବା ନିମନ୍ତେ ସୈନ୍ୟସାମନ୍ତ ନେଇ ନୀଳାଚଳ ଆସୁଥିବା ଜାଣି ସେବାୟତମାନେ ବିଗ୍ରହଗୁଡ଼ିକୁ ଦୂର ସ୍ଥାନରେ ଲୁଚାଇ ରଖିଦେଲେ ।

ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣା ପୁସ୍ତକରେ ରକ୍ତବାହୁଙ୍କ ଶ୍ରୀମନ୍ଦିର ଆକ୍ରମଣ ଖ୍ରୀଷ୍ଟାୟ୬୭୦ରୁ ୬୭୫ ମଧ୍ୟରେ ହୋଇଥିଲା ବୋଲି ଦର୍ଶାଇଛନ୍ତି । ଉକ୍ତ ଦାରୁ ଦିଅଁମାନଙ୍କୁ ସୁଦୂର ସୋନପୁର (ସୁବର୍ଣ୍ଣପୁର) ଜିଲ୍ଲାର ଖୁଟ ସମଲାଇ ଗ୍ରାମ ସନ୍ନିକଟ ତ୍ରିକୁଟ ପାହାଡ଼ର ପାଦ ଦେଶରେ ଅଣ୍ଟେ ଗଭୀରରେ ଗାତ ଖୋଳି ସେଇ ଗାତରେ ଦିଅଁମାନଙ୍କୁ ରଖି ମାଟି ଦ୍ୱାରା ଘୋଡ଼ାଇ ୪୫ ବର୍ଷ ସ୍ୱାଧାଲିପ୍ତ ଓ ୯୯ ବର୍ଷ ପାତାଳି କରି ମୋଟ ୧୪୪ ବର୍ଷ ଗୋପନରେ ରଖାଯାଇଥିଲା ବୋଲି ଉଲ୍ଲେଖ ଅଛି ।

ରକ୍ତବାହୁ ବିଗ୍ରହଗୁଡ଼ିକ ମନ୍ଦିର ମଧ୍ୟରେ ନଥିବା ଦେଖି କ୍ରୋଧାନ୍ୱିତ ହୋଇ ମନ୍ଦିରକୁ ଧ୍ୱଂସ କରିଦେଲେ । ବିଗ୍ରହଗୁଡ଼ିକ କେଉଁଆଡ଼େ ଗଲା, କିଏ ନେଲା, କେବେ ନେଇଗଲା ଇତ୍ୟାଦି ପ୍ରଶ୍ନର ଉତ୍ତର ନପାଇବାରୁ ସେବାୟତମାନଙ୍କୁ କଠିନ ଦଣ୍ଡରେ ଦଣ୍ଡିତ କରିଥିଲେ । ସୋମବଂଶୀ ରାଜା ଯଯାତିକେଶରୀ ପ୍ରଥମ

ପୁରୀରେ ନୂତନ ମନ୍ଦିର ତୋଳାଇ ଶ୍ରୀଜୀଉମାନଙ୍କୁ ସୋନପୁରରୁ ଉଦ୍ଧାର କରି ନବକଳେବର ପ୍ରସ୍ତୁତ କରି ନୂତନ ମନ୍ଦିର ପ୍ରତିଷ୍ଠା କରିବା ପରେ ବିଗ୍ରହମାନଙ୍କୁ ଉକ୍ତ ମନ୍ଦିରରେ ସ୍ଥାପନ କରିଥିଲେ । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣା ପୁସ୍ତକରେ ନବକଳେବର ପ୍ରଥମରୁ କେବେ ଆରମ୍ଭ ହୋଇଥିଲା, ତା'ର ଭିନ୍ନ ଭିନ୍ନ ମତ ପ୍ରତିପାଦିତ ହୋଇଛି ।

ପୌରାଣିକ କିଂବଦନ୍ତୀରୁ ପ୍ରତୀୟମାନ ହୁଏ ଯେ ପ୍ରଥମେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରଚେଷ୍ଟାରେ ପ୍ରଥମ ଥର ନବକଳେବର ଅନୁଷ୍ଠିତ ହୋଇଥିଲା ବେଳେ ରାଜା ଯଯାତିଙ୍କ ରାଜତ୍ୱ ସମୟରେ ଦ୍ୱିତୀୟ ଥର ପାଇଁ ପୁରୀରେ ନବକଳେବର ଅନୁଷ୍ଠିତ ହୋଇଥିଲା । ତେଣୁ ଯଯାତିଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କୁହନ୍ତି । ଖ୍ରୀଷ୍ଟୀୟ ୧୫୬୮ରେ ବଙ୍ଗ ନବାବଙ୍କ ସେନାପତି କଳାପାହାଡ଼ ପୁରୀର ଶ୍ରୀମନ୍ଦିର ଲୁଣ୍ଠନ କରି ଶ୍ରୀମନ୍ଦିରୁ ଶ୍ରୀଜୀଉମାନଙ୍କୁ ଗଜ ପୃଷ୍ଠରେ ବସାଇ କଲିକତା ଉପକଣ୍ଠରେ ଥିବା ହୁଗୁଳି ନଦୀ କୂଳରେ ଶ୍ରୀଜୀଉମାନଙ୍କ ଶ୍ରୀଅଙ୍ଗରେ ଅଗ୍ନି ସଂଯୋଗ କରି ଦହନ କରି ଦେବାକୁ ଚେଷ୍ଟା କଲେ କିନ୍ତୁ ବିଗ୍ରହଗୁଡ଼ିକ ସମ୍ପୂର୍ଣ୍ଣ ଅଗ୍ନିରେ ଦହନ ନହେବାରୁ ଅଧାପୋଡ଼ା ଦିଅଁଙ୍କୁ ଛାଡ଼ି ଚାଲିଯିବା ପରେ ବିଶର ମହାନ୍ତି (ବଟକୃଷ୍ଣ ମହାନ୍ତି) ନାମକ ବ୍ୟକ୍ତି ସେଇ ଅଧାପୋଡ଼ା ଅଙ୍ଗରୁ ବ୍ରହ୍ମଗୁଡ଼ିକୁ ସଂଗ୍ରହ କରି ଫଟା ମୃଦଙ୍ଗ ମଧ୍ୟରେ ଭରି ନିଜ ଘର କେନ୍ଦ୍ରାପଡ଼ା ନିକଟସ୍ଥ ଗଡ଼କୁଜଙ୍ଗର ଏକ ଧାନ ଅମାରରେ ଲୁଚାଇ ରଖିଦେଲେ । ଅମାର ମଧ୍ୟରେ ଦିଅଁଗୁଡ଼ିକ ଅପୂଜା ରହିବାରୁ ସେଠାରୁ ଜୀଉମାନଙ୍କୁ ନେଇ କୁଜଙ୍ଗଗଡ଼ଠାରୁ ଦୁଇ କିଲୋମିଟର ଦୂର ପୂର୍ବ ଦିଗରେ ଥିବା ନୂଆଗାଁ ଗ୍ରାମର ଦକ୍ଷିଣ-ପୂର୍ବକୁ ବଙ୍ଗୋପ ସାଗର କୂଳରେ ଥିବା ମହାବୀର ଆଶ୍ରମରେ ହନୁମାନ ବିଗ୍ରହ ପୂଜା ପାଉଥିବା ସ୍ଥାନରେ ରଖିଦେଲେ । ସେଠାରେ ପୂଜା କରୁଥିବା ଜଣେ ଖଣ୍ଡାୟତ ବଂଶୀୟ ଆଧ୍ୟାତ୍ମିକ ବ୍ୟକ୍ତି ତାଙ୍କର ଅକୁଣ୍ଠ ସାହାଯ୍ୟ ଲାଭ କରିବା ପରେ ବ୍ରହ୍ମଗୁଡ଼ିକୁ ନେଇ ଗୁପ୍ତରେ ରଖି ପୂଜାର୍ଚ୍ଚନା କଲେ ।

ପରବର୍ତ୍ତୀ ସମୟରେ ପୁରୀର ଗଜପତି ରାମଚନ୍ଦ୍ରଦେବ କୁଜଙ୍ଗଗଡ଼ରେ ବ୍ରହ୍ମଗୁଡ଼ିକ ଗୁପ୍ତରେ ରହି ପୂଜା ପାଉଥିବା ସୂଚନା ପାଇ ଖ୍ରୀ୧୫୬୮-୧୬୦୦ ମଧ୍ୟରେ ବ୍ରହ୍ମଗୁଡ଼ିକୁ ପୁରୀକୁ ନେଇ ଆସିଲେ । ନବକଳେବର ଗଠନ କରି ତହିଁରେ ବ୍ରହ୍ମଗୁଡ଼ିକୁ ଥୋଇ ନୀତି ନିୟମ ଅନୁସାରେ ପୂଜା ଆରାଧନା କରାଗଲା ଓ ରଥଯାତ୍ରାର ଅୟମାରମ୍ଭ କରା ଯାଇଥିଲା । ତତ୍ ସମ୍ପର୍କିତ ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ଯେ, ଭୋଇ ବଂଶୀୟ ରାଜା ଶ୍ରୀରାମଚନ୍ଦ୍ର ଦେବ କୁଜଙ୍ଗଗଡ଼ରୁ ୧୫୭୭ ଶ୍ରାବଣମାସ ଶୁକ୍ଳପକ୍ଷ ନବମୀ ତିଥିରେ ଶ୍ରୀଜୀଉମାନଙ୍କୁ ବଡ଼ଦେଉଳର ରତ୍ନସିଂହାସନରେ ଉପବିଷ୍ଟ କରାଇ ଥିଲେ । ଦୀର୍ଘ ୯ ବର୍ଷ ଧାରାବାହିକ ଭାବେ ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥି ଦିନ ରଥଯାତ୍ରା ହେଉ ଥିବାର ପ୍ରମାଣ ମିଳେ । (ଦ୍ରଷ୍ଟବ୍ୟ: ପ୍ରଜାତନ୍ତ୍ର ତା ୭.୭.୧୯୮୮)

ଶ୍ରୀମନ୍ଦିରରେ ନବକଳେବର ରୀତିନୀତି ବିଧିବ୍ୟବସ୍ଥା ନୂଆ ନୁହେଁ । ଏହାର କିଂବଦନ୍ତୀ ଅତି ପ୍ରାଚୀନ, ଯେଉଁ ବର୍ଷ ଯୋଡ଼ା ଆଷାଢ଼ ପଡ଼ିଥାଏ, ସେହିବର୍ଷ ନୂତନ ବିଗ୍ରହ ପ୍ରସ୍ତୁତ କରି ପୁରାତନ ବିଗ୍ରହଗୁଡ଼ିକୁ କୋଇଲି ବୈକୁଣ୍ଠରେ ପୋତି ଦିଆଯାଏ । ତେଣୁ ନୂତନ ବିଗ୍ରହ ପ୍ରସ୍ତୁତ କରିବା ପାଇଁ ନିମ୍ବ ଗଛର କାଠ ଆବଶ୍ୟକ ହୋଇଥାଏ । ଦୈତାପତିମାନେ ନୂତନ ବୃକ୍ଷର କାଠଦ୍ୱାରା ଦିଅଁଗୁଡ଼ିକର ମୂର୍ତ୍ତି ନିର୍ମାଣ କରିଥାନ୍ତି । ଏହି ଦିଅଁମାନଙ୍କ ରୂପକୁ 'ନବକଳେବର' ରୂପେ ଆଖ୍ୟାୟିତ କରାଯାଇଅଛି ।

ଶ୍ରୀମଦ୍ ଭାଗବତ ଗୀତାରେ ଉଲ୍ଲେଖ ଅଛି ଯେ, 'ଜାତସହିଁଧ୍ରୁବ ମୃତ୍ୟୁ' ନବାକ୍ଷରୀରେ ଅର୍ଥ ହେଲା ମଣିଷର ସୁଖ,ଦୁଃଖ, ରୋଗ, ବିରାଗ ଆଦି ସବୁ କିଛିରେ ସାମିଲ ହୋଇଥାନ୍ତି । ଏପରିକି ମୃତ୍ୟୁ ମଧ୍ୟ ବାଦ ଯାଏନି ଏବଂ ନବଜନ୍ମ ବିଷୟରେ କଥିତ ଅଛି 'ଧ୍ରୁବଂ ଜନ୍ମ ମୃତସ୍ୟଚ ।'

ଶ୍ରୀଜଗନ୍ନାଥଙ୍କ ପରମ୍ପରାରେ ଜନ୍ମ ହୋଇ ମୃତ୍ୟୁବରଣ କରିବା ଏଇ ବାକ୍ୟ ଅନିବାର୍ଯ୍ୟ । ତେଣୁ ଯେଉଁ ଦାରୁରେ ମହାପ୍ରଭୁଙ୍କ ଶରୀର ଗଢ଼ାଯାଏ, ତାହା ମିଳିବା ସହଜ ନୁହେଁ । ମୂର୍ତ୍ତି ଗଠନ ମଧ୍ୟ ତଦ୍ରୂପ, ଦଇତାପତିମାନଙ୍କର ବନଗମନ, ଦାରୁ ସଂଗ୍ରହ ଆଦି କାର୍ଯ୍ୟକ୍ରମଗୁଡ଼ିକ ଦେବତାମାନଙ୍କ ବିନା ନିର୍ଦ୍ଦେଶରେ ସହଜ ଲବ୍ଧ ହୁଏ ନାହିଁ। ତେଣୁ ଅଦୃଶ୍ୟ ଶକ୍ତିମାନଙ୍କର ଆଶୀର୍ବାଦ ଆବଶ୍ୟକ ଓ ନବକଳେବର ନିମନ୍ତେ ଆବଶ୍ୟକ ରୀତିନୀତିଗୁଡ଼ିକୁ ନିମ୍ନରେ ପ୍ରଦତ୍ତ କରାଗଲା ।

ମାଦଳା ପାଞ୍ଜିରେ ଉଲ୍ଲିଖିତ ଥିବା ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ବିଗ୍ରହ ନିର୍ମାଣ ପାଇଁ ଆବଶ୍ୟକ ହେଉଥିବା 'ବ୍ରହ୍ମଦାରୁ' କାକଟପୁରର ମା' ମଙ୍ଗଳାଙ୍କ କୃପାବିନା ଦାରୁ ସଂଗ୍ରହ ଅସମ୍ଭବ । ତେଣୁ ଦଇତାପତିମାନେ ମଙ୍ଗଳାଙ୍କ ନିକଟରେ ଅଧିଆପଡ଼ି ମା'ଙ୍କ ଆଦେଶ ପାଇ ଦାରୁବୃକ୍ଷ ସନ୍ଧାନରେ ଖୋଜିବାକୁ ବିଭିନ୍ନ ଦିଗକୁ ଗମନ କରନ୍ତି ।

ବନଯୋଗ ଯାତ୍ରା ପୂର୍ବରୁ ଦେଉଳିକରଣ ତାଳପତ୍ର ଚିଟାଉ ନେଇ କାକଟପୁରସ୍ଥିତ ମା' ମଙ୍ଗଳାଙ୍କ ମନ୍ଦିରର ପରିଚାଳକଙ୍କୁ

ପ୍ରଦାନ କରନ୍ତି । ପରଦିନ ସକାଳେ ମଙ୍ଗଳାଙ୍କ ପୀଠର ସେବାୟତମାନେ ପୁରୀରୁ ଆସିଥିବା ଅତିଥିମାନଙ୍କୁ ସାଦରେ ନିମନ୍ତ୍ରଣ କରି ଏବଂ ସାଙ୍ଗରେ ଆଣିଥିବା ମା'ଙ୍କର ଆଜ୍ଞାମାଳକୁ ଦଳପତି ଓ ବିଦ୍ୟାପତିଙ୍କୁ ପ୍ରଦାନ କରନ୍ତି। ଶ୍ରୀମନ୍ଦିରର ସେବାୟତମାନେ ଶ୍ରୀମନ୍ଦିରରୁ ଆଣିଥିବା ତିନିଖଣ୍ଡ ଲାଲ ବର୍ଣ୍ଣର ଶାଢ଼ୀ ମା' ମଙ୍ଗଳାଙ୍କ ମାର୍ଜନା ପରେ ପିନ୍ଧାଇ ଦିଅନ୍ତି ଏବଂ ସାଙ୍ଗରେ ଆଣିଥିବା ମହାପ୍ରସାଦ ଦେବୀଙ୍କୁ ସମର୍ପଣ ପରେ ଉଭୟ ସେବାୟତ ଏକତ୍ର ବସି ସେବନ କରନ୍ତି। ମହାପ୍ରସାଦ ସେବନ ପରେ ପୁରୀରୁ ଆସିଥିବା ସେବାୟତ ଓ ଦଇତାପତିମାନେ ଦେଉଳିମଠକୁ ଫେରିଯାନ୍ତି। ସେହିଠାରେ ମା' ମଙ୍ଗଳାଙ୍କର ନିର୍ଦ୍ଦେଶ ନ ପାଇବା ପର୍ଯ୍ୟନ୍ତ ରହି ହବିଷ୍ୟାନ୍ନ ଭକ୍ଷଣ କରି ଅଧିଆ ପଡ଼ି ଥାଆନ୍ତି। ମା'ଙ୍କର ସ୍ୱପ୍ନାଦେଶ ପାଇବା ପରେ ଦାରୁର ସନ୍ଧାନ ପାଇଁ ଦଇତାପତିମାନେ ଭଜନ, କୀର୍ତ୍ତନ କରି ଦାରୁବୃକ୍ଷ ଚିହ୍ନଟ କରିବା ପରେ ଉକ୍ତ ବୃକ୍ଷର ଚତୁଃପାର୍ଶ୍ୱରେ ପରିକ୍ରମା କରନ୍ତି।

ଦାରୁବୃକ୍ଷ ନିରୂପଣ କରିବା ପୂର୍ବରୁ ଉକ୍ତ ବୃକ୍ଷରେ ନିମ୍ନ ପ୍ରଦତ୍ତ ଅନୁସାରେ ସଗୁଣ ଥିବା ଆବଶ୍ୟକ। ବୃକ୍ଷର ଲକ୍ଷଣଗୁଡ଼ିକ ଦେଖିବା ପରେ ପୁରୀରୁ ଆଣିଥିବା ଆଜ୍ଞାମାଳ ଯେଉଁ ଜୀଉଙ୍କୁ ଯେଉଁମାଳ ପରିଧାନ କରିବାର ପ୍ରଥା ଅଛି ସେଇ ଦିଅଁକୁ ସେହି ବୃକ୍ଷରେ ପିନ୍ଧାଇ ଦିଆଯାଏ। ପତି ମହାପତ୍ର ସାଙ୍ଗରେ ଆଣିଥିବା ପାଟ ବସ୍ତ୍ରକୁ ମଧ୍ୟ ପିନ୍ଧାଇ ଦିଆଯାଏ।

**ଦିଅଁମାନଙ୍କର ବୃକ୍ଷରେ ନିମ୍ନ ଲକ୍ଷଣ ଥିବା ଆବଶ୍ୟକ**

୧. ବୃକ୍ଷଟି ଅତି ପୁରାତନ ହୋଇଥିବା ଆବଶ୍ୟକ ଏବଂ ଗଣ୍ଡିଟି ସଳଖ ଥିବା ଆବଶ୍ୟକ।

୨. ବୃକ୍ଷର ଗଣ୍ଡି ୧୦ରୁ ୧୨ଫୁଟ ପର୍ଯ୍ୟନ୍ତ ନିଦା ଓ ସଳଖ ଥିବା ଆବଶ୍ୟକ।

୩. ବୃକ୍ଷଗୁଡ଼ିକ କୌଣସି ମନ୍ଦିର, ଶ୍ମଶାନ, ନଦୀ କୂଳରେ ଅବସ୍ଥିତ ହୋଇଥିବ।

୪. ବୃକ୍ଷ ମୂଳରେ ଉଇହୁଙ୍କା, ବରୁଣ ବୃକ୍ଷ କିମ୍ବା ସାହାଡ଼ା ବୃକ୍ଷ ରହିଥିବ।

୫. ବୃକ୍ଷର ଶାଖା ପ୍ରଶାଖାରେ କୌଣସି ପକ୍ଷୀ ବସା ବାନ୍ଧି ନଥିବେ।

୬. ବୃକ୍ଷରେ ଶଙ୍ଖ, ଚକ୍ର, ଗଦା, ପଦ୍ମର ଚିହ୍ନ ଦୃଶ୍ୟମାନ ହେଉଥିବ।

୭. ବୃକ୍ଷର କୌଣସି ଅଂଶର ସ୍ୱାଦ ତିକ୍ତ ନହୋଇ ନୀତି ମଧୁର ହୋଇଥିବା ଆବଶ୍ୟକ।

ଏହିପରି ବୃକ୍ଷ ଚିହ୍ନଟ ହେବାପରେ ପ୍ରତ୍ୟେକ ବୃକ୍ଷ ମୂଳକୁ ପରିଷ୍କାର କରାଯାଇ ଦଇତାପତିମାନେ ଶୁଦ୍ଧପୂତ ହୋଇ ଯଜ୍ଞର ଆୟୋଜନ କରନ୍ତି । ପ୍ରସ୍ତୁତି ପର୍ବ ସମାପ୍ତ ହେବାପରେ ବୃକ୍ଷକୁ ଜଳସ୍ନାନ ଦ୍ୱାରା ମାର୍ଜନା କରାଯାଇ ଶୁକ୍ଳବସ୍ତ୍ର ପରିଧାନ କରାଯାଏ। ଦଇତାପତିମାନେ ନିର୍ଜଳା ଉପବାସ ରହି ଯଜ୍ଞକାର୍ଯ୍ୟ ଶେଷ କରନ୍ତି ଓ ଯେଉଁ ଅସ୍ତ୍ର ଦ୍ୱାରା ବୃକ୍ଷଗୁଡ଼ିକ ଛେଦନ କରାଯିବ ସେଗୁଡ଼ିକୁ ମଧ୍ୟ ପୂଜା କରାଯାଏ । ଏହି ଅସ୍ତ୍ରଗୁଡ଼ିକ ହେଲା ସୁନା କୁରାଢ଼ୀ, ରୂପା କୁରାଢ଼ୀ ଏବଂ ଲୁହା କୁରାଢ଼ୀକୁ ମନ୍ତ୍ରଦ୍ୱାରା ପବିତ୍ର କରାଯାଇ ପ୍ରଥମେ ସୁନା କୁରାଢ଼ୀରେ ଦଇତାପତି ଚୋଟ ମାରନ୍ତି, ତିନି ଇଞ୍ଚ ଚଉଡ଼ା ରୂପା କୁରାଢ଼ୀକୁ ବିଶ୍ୱାବସୁ ନେଇ ବୃକ୍ଷକୁ ଦ୍ୱିତୀୟ ଚୋଟ ମାରନ୍ତି । ଏହାପରେ ବିଶ୍ୱକର୍ମା ଓ ତାଙ୍କର ସହକର୍ମୀମାନେ ଲୁହା କୁରାଢ଼ୀ ଦ୍ୱାରା ବୃକ୍ଷକୁ ଛେଦନ କରନ୍ତି । ଏହି କାର୍ଯ୍ୟଗୁଡ଼ିକରେ ଯେଉଁ ସେବାୟତ ନିଯୁକ୍ତ ରହିଥାନ୍ତି, ସେମାନେ ସମସ୍ତେ ନିଷ୍ଠାର ସହିତ ନିୟମ ପାଳନ କରନ୍ତି ଏବଂ ହବିଷ୍ୟାନ୍ନ ସେବନ କରିଥାନ୍ତି । ବୃକ୍ଷ ଧରାଶାୟୀ ହେବା ପରେ ନିର୍ଦ୍ଦିଷ୍ଟ ମାପ ଅନୁଯାୟୀ ଖଣ୍ଡ ଖଣ୍ଡ କରି କାଟି ଦିଅନ୍ତି । ଅବ୍ୟବହୃତ ଡାଳପତ୍ରଗୁଡ଼ିକୁ ସେହି ସ୍ଥାନରେ ଗାତ କରି ପୋତି ଦିଆଯାଏ । ଏହାପରେ ଦାରୁଗୁଡ଼ିକୁ ପାଟବସ୍ତ୍ର ଦ୍ୱାରା ଆବୃତ୍ତ କରି ଓ ପାଟ ଡୋରିରେ ଗଣ୍ଡିଗୁଡ଼ିକୁ ବାନ୍ଧି ଶଗଡ଼ ଦ୍ୱାରା ପୁରୀକୁ ଅଣାଯାଏ ।

ଦାରୁବାହୀ ଶଗଡ଼ଗୁଡ଼ିକର କଳେବର ନିମ୍ନମତେ ତିଆରି ହୋଇଥାଏ । ତେନ୍ତୁଳି କାଠରେ ଚକଗୁଡ଼ିକ, ବରକାଠରେ ଚକଗୁଡ଼ିକ ସଂଯୋଗ କରୁଥିବା ଅଖଟି କେନ୍ଦୁ କାଠରେ ନିର୍ମିତ ହୋଇଥାଏ । ଶଗଡ଼ରେ ଦାରୁ ଲଦାହେବା ପୂର୍ବରୁ ପୁରୋହିତମାନେ ଶଗଡ଼କୁ ପ୍ରତିଷ୍ଠା କରିଥାନ୍ତି । ଶଗଡ଼କୁ ଟାଣି ଟାଣି ଆଣିବା ପାଇଁ ଭକ୍ତମାନଙ୍କ ମଧ୍ୟରେ ଆଗ୍ରହ ଦେଖାଯାଏ, ଯାହାଦ୍ୱାରା ଭକ୍ତମାନଙ୍କ ମନକୁ ସ୍ୱତଃସ୍ପୃହ ଜାଗ୍ରତ ହୋଇଥାଏ ଏବଂ ଶଗଡ଼କୁ ଟାଣି ଟାଣି ପୁରୀ ନିଆଯାଏ । ବାଟରେ ଯେଉଁ ଯେଉଁ ଗ୍ରାମ ଦେଇ ଗତିକରେ ସେହି ଗ୍ରାମରେ ସ୍ତ୍ରୀ-ପୁରୁଷମାନେ ରୁଣ୍ଡ ହୋଇ ପୂଜାର୍ଚ୍ଚନା କରିବା ସଂଗେ ସଂଗେ ଶଙ୍ଖ, ହୁଳହୁଳି, ଘଣ୍ଟା, ବାଦ୍ୟ ବଜାଇ ଅନ୍ୟ ଗ୍ରାମକୁ ସୂଚାଇ ଦିଅନ୍ତି ଯେ, ଶଗଡ଼ରେ ଦିଅଁ ଯାତ୍ରା କରୁଛନ୍ତି ।

ଏଠାରେ ଉଲ୍ଲେଖ କରାଯାଏ ଯେ ଦାରୁଗୁଡ଼ିକ (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଦାରୁ) ନିର୍ଦ୍ଦିଷ୍ଟ ଗୋଟିଏ ସ୍ଥାନରେ ମିଳି ନଥାଏ । ଦାରୁଗୁଡ଼ିକୁ ବିଭିନ୍ନ ସ୍ଥାନରୁ ସ୍ୱପ୍ନାଦେଶ ବଳରେ ସଂଗ୍ରହ କରାଯାଇ ଅଣାଯାଏ । ଦଇତାପତିମାନେ ଭାଗ ଭାଗ ହୋଇ ଭିନ୍ନ ଭିନ୍ନ ସ୍ଥାନରୁ ଦାରୁ ସଂଗ୍ରହ କରନ୍ତି । ଏହାର ଏକ

ନମୁନା ହେଲା ଯେ, ସନ ୧୯୯୬ ମସିହାରେ ପୁରୀଠାରୁ ୩୦ କିଲୋମିଟର ଦୂର ଦଧିମାଛ ଗଡ଼ିଆଠାରୁ ଶ୍ରୀଜଗନ୍ନାଥଙ୍କ ଦାରୁ, କଟକ ଜିଲ୍ଲା ସାଲେପୁର ନିକଟସ୍ଥ ରାମକୃଷ୍ଣପୁର ଗ୍ରାମ ପୁରୀଠାରୁ ୧୨୦ କିମି ଦୂର ବଳଭଦ୍ରଙ୍କ ଦାରୁ, ଅସ୍ତରଙ୍ଗ ନିକଟସ୍ଥ ମାଳଦାର ପୁରୀଠାରୁ ଦୂରତା ୬୫ କିମି ସୁଭଦ୍ରାଙ୍କ ଦାରୁ ଏବଂ ସୁଦର୍ଶନଙ୍କଦାରୁ ନିଆଳି ଅଞ୍ଚଳର ପଦ୍ମମାଳରୁ ଯାହାର ପୁରୀଠାରୁ ଦୂରତା ୬୦ କିମି ହେବ । ଦାରୁଗୁଡ଼ିକ ବିଭିନ୍ନ ସ୍ଥାନରୁ ପଟୁଆରରେ ଅଣାଯାଇ ଶ୍ରୀମନ୍ଦିରର ଉତ୍ତରଦ୍ୱାର ଦେଇ କୋଇଲି ବୈକୁଣ୍ଠଠାରେ ଛଣ ଓ ତାଳପତ୍ର ଦ୍ୱାରା ଆଚ୍ଛାଦିତ କରି ଆବଦ୍ଧ ଗୃହରେ ରଖାଯାଇ ଦୈନିକ ପଣାଭୋଗ ଦିଆଯାଏ ।

ପରମ୍ପରା ଅନୁସାରେ ବାଢ଼ଗ୍ରାହୀ (ମହାରଣା)ମାନେ ମୂର୍ତ୍ତି ଗଢ଼ିବାର ଦାୟିତ୍ୱ ନିଅନ୍ତି ଏବଂ ଅନ୍ୟ ସାତଜଣ ଶାଢ଼ୀବନ୍ଧା ମହାରଣା ସେମାନଙ୍କ ସହଯୋଗୀ ମହାରଣାଙ୍କ ସହିତ ଆସି ଉକ୍ତ କାର୍ଯ୍ୟରେ ସାହାଯ୍ୟ କରନ୍ତି । ଆଷାଢ଼ମାସ କୃଷ୍ଣପକ୍ଷ ପ୍ରଥମୀଠାରୁ ଅମାବାସ୍ୟା ଯାଏ ଦୁଇ ସପ୍ତାହ ପର୍ଯ୍ୟନ୍ତ ମହାରଣାମାନେ ଏହି କାର୍ଯ୍ୟରେ ନିଯୁକ୍ତ ରହନ୍ତି । ଶ୍ରୀମନ୍ଦିରରୁ ଭୋଗ ଲାଗିଥିବା ଅଭଡ଼ା ଦୁଇଓଳି ଆହାର ନିମନ୍ତେ ଯୋଗାଇ ଦିଆଯାଏ । ଶୁଭ ବେଳାରେ ମୂର୍ତ୍ତିଗୁଡ଼ିକୁ କେବଳ ଦିନବେଳା ନିର୍ମାଣ କରାଯାଏ, ସେହି ସମୟରେ ଘଣ୍ଟି ଘଣ୍ଟା ତେଲିଙ୍ଗି ବାଜା ଆଦି ବାଜୁଥାଏ । ଦଇତାପତିମାନେ ୧୦ ଇଞ୍ଚ ଲମ୍ବର ଯବକାଠିକୁ ସୁନା, ରୂପା କିମ୍ବା ତମ୍ବା ଧାତୁରେ ନିର୍ମାଣ କରିଥାନ୍ତି । ତିନି ଠାକୁର ଓ ସୁଦର୍ଶନଙ୍କ ବିଗ୍ରହ ଗଠନ ନିମନ୍ତେ ବିଶ୍ୱାବସୁଙ୍କ ବଂଶଜ ରୂପେ ପରିଚିତ ବିଶ୍ୱକର୍ମାମାନଙ୍କୁ ଦଇତାପତିମାନେ ଦିଅଁ ଗଠନ ନିମନ୍ତେ ମାପଚୁପ କରି ନିର୍ମାଣ କରିବାକୁ ନିର୍ଦ୍ଦେଶ ଦିଅନ୍ତି । ଦିଅଁମାନଙ୍କୁ ନିମ୍ନ ପ୍ରକାରେ ତିଆରି କରାଯାଏ ।

ବଳଭଦ୍ରଙ୍କ (ବିଗ୍ରହର) ଉଚ୍ଚତା ୮୫ ଇଞ୍ଚ
ସୁଭଦ୍ରା ବିଗ୍ରହଙ୍କ ଉଚ୍ଚତା ୫୨ ଇଞ୍ଚ
ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଉଚ୍ଚତା ୮୪ ଇଞ୍ଚ
ସୁଦର୍ଶନ ବିଗ୍ରହଙ୍କ ଉଚ୍ଚତା ୮୪ ଇଞ୍ଚ

ମୂର୍ତ୍ତିଗୁଡ଼ିକ ତିଆରି ହେବା ସମୟରେ ବୃକ୍ଷର ମଧ୍ୟଭାଗରେ ଚତୁଷ୍କୋଣୀ ପାଞ୍ଚ ଇଞ୍ଚ ଲମ୍ବ ଓ ପ୍ରସ୍ଥ ଏବଂ ଗଭୀରର ପ୍ରତ୍ୟେକ ଦିଅଁର ଗୋଟିଏ ଲେଖାଏଁ କୋଠରୀ ବିଶ୍ୱକର୍ମାମାନେ ତିଆରି କରିଥାନ୍ତି । ଠିକ୍ ମାପଚୁପ ଅନୁସାରେ କାଠଖଣ୍ଡ (ନ୍ୟାସଦାରୁ) ଦ୍ୱାରା ଆବଦ୍ଧ କରାଯିବା ପାଇଁ ବ୍ୟବସ୍ଥା କରାଯାଇଥାଏ । ବ୍ରହ୍ମ ସଂସ୍ଥାପିତ ହେବା ପରେ ଖୋପଗୁଡ଼ିକୁ ବନ୍ଦ କରିବାର ବ୍ୟବସ୍ଥା ମଧ୍ୟ କରାଯାଇଥାଏ । ଯୋଡ଼ା ଆଷାଢ଼ ପ୍ରଥମ ଅମାବାସ୍ୟାର ପୂର୍ବଦିନ (ଚତୁର୍ଦ୍ଦଶୀ) ରାତିରେ ଶ୍ରୀମନ୍ଦିରରେ ଥିବା ସମସ୍ତ ଆଲୋକ ବତୀକୁ ଲିଭାଇ ଦିଆଯାଏ, କେବଳ ପୋଲାଙ୍ଗ ତେଲର ଦୀପ ଜାଳି ଅଣସର ଘରୁ କୋଇଲି ବୈକୁଣ୍ଠ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ସ୍ଥାନରେ ରଖାଯାଏ । ନବ ନିର୍ମିତ ବିଗ୍ରହମାନଙ୍କୁ କୋଇଲି ବୈକୁଣ୍ଠ ନିର୍ମାଣ ମଣ୍ଡପରୁ ପହଣ୍ଡି ବିଜେ କରି ଶ୍ରୀମନ୍ଦିରର ଅଣସର ପିଣ୍ଡିରେ ନେଇ ରଖନ୍ତି । ପତିମହାପାତ୍ର ରାତ୍ରିର ଶୁଭ ସମୟ ସ୍ଥିର କରି ସେଇ ମୂର୍ତ୍ତିର ପୁରୁଣା ବିଗ୍ରହମାନଙ୍କ ଦେହରୁ ଯୋଡ଼ହସ୍ତ ହୋଇ ନମସ୍କାର ମୁଦ୍ରାରେ 'ବ୍ରହ୍ମ' (ଜୀବନ ଶାଳଗ୍ରାମ) ବାହାର କରି ଆଣି ଉକ୍ତ ବ୍ରହ୍ମ ଦେହରେ କସ୍ତୁରୀ ଚନ୍ଦନ ଜୁଇଫୁଲ ନଖି ତୁଳସୀ ଆଦି ଲଗାଇ ନୂତନ ବିଗ୍ରହଗୁଡ଼ିକରେ ନିଜ ନିଜ ବ୍ରହ୍ମଗୁଡ଼ିକୁ ଥୋଇ ଦିଅନ୍ତି । ପରେ ନୂତନ ପାଟବସ୍ତ୍ର ଦ୍ୱାରା ଭିନ୍ନ ଭିନ୍ନ ବ୍ରହ୍ମଗୁଡ଼ିକୁ ଆବୃତ୍ତ କରାଯାଏ । ନୂତନ ବିଗ୍ରହର ଉଦରରେ ବ୍ରହ୍ମ ରଖିବା ପରେ ନ୍ୟାସଦାରୁ ପ୍ରସ୍ତୁତ ଥିବା ଢାଙ୍କୁଣୀ ବା କବାଟକୁ ବନ୍ଦ କରାଯାଏ । ଏହା ନିର୍ଦ୍ଦିଷ୍ଟ ସେବାୟତଙ୍କ ଦ୍ୱାରା ପରମ୍ପରା ଅନୁଯାୟୀ ବ୍ରହ୍ମ ପରିବର୍ତ୍ତନ କରନ୍ତି ।

ପୁରୁଣା ବିଗ୍ରହଗୁଡ଼ିକୁ କୋଇଲି ବୈକୁଣ୍ଠରେ ଥିବା ଶିଆଳି ଲତା ତଳେ କୋଠସୁଆରିମାନଙ୍କ ଦ୍ୱାରା ୯ ହାତ ଗଭୀର, ୬ ହାତ ଲମ୍ବ ଓ ଓସାର ବିଶିଷ୍ଟ ଚାରିକୋଣିଆ ଗାତ ଖୋଳି ତା' ମଧ୍ୟରେ ଶୁଆଇ ପୁରାତନ ବିଗ୍ରହଗୁଡ଼ିକ ଉପରେ କର୍ପୂର ଚନ୍ଦନ ଏବଂ ପାଟବସ୍ତ୍ର ଦ୍ୱାରା ଘୋଡ଼ାଇ ପୋତି ଦିଆହୁଏ ବା ମାଟି ଘୋଡ଼ାଇ ଦିଆହୁଏ । ଏହା ସହିତ ରଥରେ ବ୍ୟବହୃତ ହେଉଥିବା ସାରଥି, ଘୋଡ଼ା, ପାର୍ଶ୍ୱଦେବତା, ଶୁଆ, ଦ୍ୱାରପାଳ, ଧ୍ୱଜଦଣ୍ଡ, ପ୍ରଭୁଙ୍କ ଖଟ, ପଲଙ୍କ ଶେଜ ଇତ୍ୟାଦିକୁ ମଧ୍ୟ ଉକ୍ତ ଗାତ ଭିତରେ ଥୋଇ ମାଟିଦ୍ୱାରା ସମାନ କରି ଦିଆଯାଏ ।

ପୋତା କାର୍ଯ୍ୟ ସମାପ୍ତ ହେବା ପରେ ଦଇତାପତିମାନେ ମୁକ୍ତିମଣ୍ଡପ ନିକଟରେ ଏକତ୍ରିତ ହୁଅନ୍ତି । ମନ୍ଦିର ପ୍ରଶାସନ ତରଫରୁ ସେମାନଙ୍କୁ ତେଲ ଯୋଗାଇ ଦିଆଯାଏ । ଉକ୍ତ ତେଲକୁ ଦଇତାପତିମାନେ ମୁଣ୍ଡ, ଦେହ ଇତ୍ୟାଦିରେ ମର୍ଦ୍ଦନ କରି ମାର୍କଣ୍ଡ ପୁଷ୍କରିଣୀ ନିକଟରେ ପହଞ୍ଚି ଖିଅର ହୋଇ ସ୍ନାନ କରନ୍ତି । ସ୍ନାନ ସମାପ୍ତ ପରେ ଯୋଗାଇ ଦିଆଯାଇଥିବା ନୂତନ ବସ୍ତ୍ର ପିନ୍ଧି ବାଇଶ ପାବଚ୍ଛକୁ ଆସି ସେଠାରେ ଥିବା ହରିଦ୍ରା ଜଳରେ ନିଜ ନିଜ ପାଦ ଧୋଇ ଶାନ୍ତିଉଦକ ପାନ କରି ମହାପ୍ରସାଦ ସେବନ ପରେ ପବିତ୍ର ହୋଇ ଘରକୁ ଫେରନ୍ତି ।

ତ୍ରୟୋଦଶୀ ଦିନ ମହାପ୍ରଭୁଙ୍କ ଦ୍ୱାଦଶାହ ନୀତି ଅନୁଷ୍ଠିତ ହୁଏ । ଏହିଦିନ ବ୍ରାହ୍ମଣ, ସାଧୁ,ସନ୍ଥ, ଦଇତା, ଛତିଶା ନିଯୋଗ, ମୁକ୍ତିମଣ୍ଡପର ପଣ୍ଡିତବର୍ଗ, ଶ୍ରୀମନ୍ଦିର ସେବାୟତ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଡାକି ମିଳିତ ଭାବେ ପଙ୍‌କ୍ତି ଭୋଜନରେ ମହାପ୍ରସାଦକୁ ସେବନ କରନ୍ତି ।

କୃଷ୍ଣ ଚତୁର୍ଦ୍ଦଶୀଠାରୁ ଶ୍ରୀଜୀଉମାନଙ୍କର ସପ୍ତାଭରଣ କାର୍ଯ୍ୟ ଆରମ୍ଭ ହୁଏ । ନବକଳେବର ନିମନ୍ତେ ପ୍ରସ୍ତୁତ ହୋଇଥିବା ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ମୂର୍ତ୍ତିଗୁଡ଼ିକରେ ପ୍ରକୃତିରୁ ପ୍ରସ୍ତୁତ ହୋଇଥିବା ରଂଗରେ ରଂଗାୟିତ କରାଯାଏ । ସେଇ ସାତୋଟି ପଦାର୍ଥ ହେଲା ଯଥା: ତୈଳ, ଝୁଣା, କର୍ପୂର, କେଶର, ଚନ୍ଦନ, ବସ୍ତ୍ର ଓ ଖଳି । ବିଗ୍ରହଗୁଡ଼ିକ ଗଠନର ପରିପୂର୍ଣ୍ଣତା ଆଣିବା ପାଇଁ ଏଇ ସାତଗୋଟି ଦ୍ରବ୍ୟର ବ୍ୟବହାର ହେଉ ଥିବାରୁ ତାକୁ 'ସପ୍ତାଭରଣ' କହନ୍ତି ।

ସେବକମାନେ ଅମାବାସ୍ୟା ଦିନ ନେତ୍ରୋତ୍ସବ ଓ ତା'ପରଦିନ ଉଭାଶୋଭାଯାତ୍ରା କରି ଦ୍ୱିତୀୟ ଦିନ ରଥଯାତ୍ରା ପାଇଁ ପ୍ରସ୍ତୁତ ହୋଇଥାନ୍ତି । ନବକଳେବର ପ୍ରଥମେ କେବେଠାରୁ ଆରମ୍ଭ ହୋଇଥିଲା ତାହାର ସଠିକ୍ ସମୟ ନିରୂପଣରେ ଗବେଷକ ତଥା ଐତିହାସିକମାନେ ଭିନ୍ନ ଭିନ୍ନ ମତ ପ୍ରଦାନ କରିଛନ୍ତି କିନ୍ତୁ ତଥ୍ୟାନୁସାରେ ପ୍ରତୀୟମାନ ହୁଏ ଯେ, ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରୁ ଇଂରେଜ ଶାସନ ସମୟରେ ଓ ପରେ ଧାରାବାହିକ ଏହି ପ୍ରଥା ପ୍ରଚଳନ ହେଉଥିବାର ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ ଯଥା: ୧୯୧୨, ୧୯୩୧, ୧୯୫୦, ୧୯୬୯, ୧୯୭୭ ଏବଂ ୧୯୯୬ ମସିହାରେ ଶେଷ ନବକଳେବର ଅନୁଷ୍ଠିତ ହୋଇ ଥିବାର ପ୍ରମାଣ ମିଳେ । ଚଳିତବର୍ଷ ସନ ୨୦୧୫ ମସିହା ଜୁଲାଇ ମାସରେ ଯୋଡ଼ା ଆଷାଢ଼ ପଡୁଥିବାରୁ ନବକଳେବର ପର୍ବ ଅନୁଷ୍ଠିତ ହେବା ପାଇଁ ଶ୍ରୀମନ୍ଦିର ସେବାୟତ, ପ୍ରଶାସନ ଆଦି ଯୋଜନା ପ୍ରସ୍ତୁତ କରିଅଛନ୍ତି । ଏହି ଉତ୍ସବକୁ ମହାସମାରୋହରେ ପାଳନ କରିବା ପାଇଁ ରାଜ୍ୟ ସରକାର ଏବଂ କେନ୍ଦ୍ର ସରକାର ଜୋରଦାର ପ୍ରସ୍ତୁତି ଆରମ୍ଭ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ମହିମା ଓ ଆଶୀର୍ବାଦ ହେଲେ ଲକ୍ଷ ଲକ୍ଷ ଭକ୍ତମାନଙ୍କ ସମାଗମ ହୋଇ ପାରିବ ।

ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁମେ

**ସହାୟକ ଗ୍ରନ୍ଥ ସୂଚୀ**

୧) ସ୍କନ୍ଦପୁରାଣ

୨) ଶ୍ରୀଜଗନ୍ନାଥଙ୍କ ନବକଳେବର

୩) ଜିଜ୍ଞାସାରେ ଜଗନ୍ନାଥ

୪) ସମାଜ ମ୍ୟାଗାଜିନ (ସାପ୍ତାହିକ)

୫) ପ୍ରଜାତନ୍ତ୍ର ଦୈନିକ

ସଭାପତି, ବୈଶାଖୀ ସାହିତ୍ୟ ସଂସଦ
ରାଉରକେଲା–୧୨



# ବିଶ୍ୱ ମାନବିକ ଅଧିକାର ଓ ଭାରତ

ଡକ୍ଟର ପୁରୁଷୋତ୍ତମ ବିଶ୍ୱାଳ

ଦୁଇଗୋଟି ବିଶ୍ୱ ଯୁଦ୍ଧର ବିଭୀଷିକାରେ ଆତଙ୍କିତ ଓ ତ୍ରସ୍ତ ମାନବ ସମାଜ ଯେତେବେଳେ ଧରାପୃଷ୍ଠରେ ନିଜର ଅବସ୍ଥିତି ପାଇଁ ଶାନ୍ତି ଓ ସୁରକ୍ଷାର ଅନ୍ୱେଷଣ କରୁଥିଲା, ସେତିକିବେଳେ ଜନ୍ମ ନେଇଥିଲା ମିଳିତ ଜାତିସଂଘ ଭଳି ଏକ ଆନ୍ତର୍ଜାତିକ ସଂଗଠନ । ୧୯୪୮ ମସିହା ଡ଼ିସେମ୍ବର ମାସ ୧୦ ତାରିଖ ଦିନ ମିଳିତ ଜାତିସଂଘର ମହାସଭାଦ୍ୱାରା ମାନବାଧିକାର ସମ୍ବଳିତ ସାର୍ବଜନୀନ ଘୋଷଣାନାମା ଫ୍ରାନସର ରାଜଧାନୀ ପ୍ୟାରିସଠାରେ ଜାରି କରାଯାଇଥିଲା । ସେଥିପାଇଁ ସମଗ୍ର ବିଶ୍ୱରେ ପ୍ରତିବର୍ଷ ଡ଼ିସେମ୍ବରମାସ ୧୦ ତାରିଖକୁ ମାନବାଧିକାର ଦିବସ ଭାବେ ପାଳନ କରାଯାଉଛି ।

ମାନବିକ ଅଧିକାର ପ୍ରତ୍ୟେକ ମଣିଷର ଏକ ଜନ୍ମଗତ ଅଧିକାର । ସଂସାରରେ ଆବିର୍ଭାବ ହେବାବେଳେ ପ୍ରତ୍ୟେକ ମଣିଷ କିଛି ଅଧିକାରକୁ ନେଇ ଜନ୍ମ ଗ୍ରହଣ କରିଥାଏ । ମାନବିକ ଅଧିକାରର ଇତିହାସ ବହୁ ପ୍ରାଚୀନ । ଭାରତର ପ୍ରାଚୀନ ଗ୍ରନ୍ଥ ଋକବେଦ ଓ ଯର୍ଜୁବେଦ ଇତ୍ୟାଦିରେ ପ୍ରଜାମାନଙ୍କର ଅଧିକାର ଓ କର୍ତ୍ତବ୍ୟ ସମ୍ବନ୍ଧରେ ସ୍ପଷ୍ଟ ଉଲ୍ଲେଖ କରାଯାଇଛି । ସାଧାରଣ ମଣିଷର ସ୍ୱାଧୀନତା, ବ୍ୟକ୍ତିଗତ ମର୍ଯ୍ୟାଦା ଓ ଅଧିକାର ଉପରେ ପ୍ରାଚୀନ ଗ୍ରୀସ ଓ ରୋମରେ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ଇଂଲଣ୍ଡର ସମ୍ରାଟ ସାର ଜନ୍‌ଙ୍କ ଦ୍ୱାରା ୧୨୧୫ ମସିହାରେ ପ୍ରଦତ୍ତ ମାଗନା କାଟା ଅନୁସାରେ ଇଂଲଣ୍ଡର ସାମନ୍ତମାନଙ୍କର ବିଶେଷ ଅଧିକାରର ସୁରକ୍ଷା ଦିଗରେ ବ୍ୟବସ୍ଥା କରାଯାଇଥିଲା । ସେହିଭଳି ଇଂଲଣ୍ଡର ଗୌରବମୟ ବିପ୍ଳବ ୧୬୮୮ ଆମେରିକା ମୁକ୍ତି ସଂଗ୍ରାମ ୧୭୭୬ ଏବଂ ଐତିହାସିକ ଫରାସୀ ବିପ୍ଳବ ୧୭୮୯ ପ୍ରଭୃତି ମାନବିକ ଅଧିକାର ସଂପର୍କରେ ସଚେତନ ହେବା ପାଇଁ ବିଶ୍ୱବାସୀଙ୍କ ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲା ।

ଜାତିସଂଘ ପକ୍ଷରୁ ମାନବୀୟ ଅଧିକାର ସମ୍ବନ୍ଧରେ ଜାରି କରାଯାଇଥିବା ଘୋଷଣାନାମାକୁ ଭାରତ ପକ୍ଷରୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯାଉଛି । ମାନବିକ ଅଧିକାରର ସମସ୍ତ ଅନ୍ତର୍ନିହିତ ଆଦର୍ଶ ବିଚାର ଓ ମୂଲ୍ୟବୋଧକୁ ଭାରତୀୟ ସମ୍ବିଧାନରେ ସ୍ଥାନିତ କରାଯାଇଛି । ସମ୍ବିଧାନର ପ୍ରାକ୍ କଥନ ମୌଳିକ ଅଧିକାର ରାଷ୍ଟ୍ର ପରିଚାଳନାରେ ନୀତି ନିର୍ଦ୍ଦେଶ ଓ ମୌଳିକ କର୍ତ୍ତବ୍ୟ ଇତ୍ୟାଦିରେ ସ୍ପଷ୍ଟ ପ୍ରତୀୟମାନ ହେଉଛି ମାନବିକ ଅଧିକାରର ସୂକ୍ଷ୍ମ ପ୍ରତିଫଳନ । ଭାରତବର୍ଷର ଅଗଣିତ ଜନସାଧାରଣଙ୍କ ମାନବିକ ଅଧିକାରକୁ ସୁରକ୍ଷା ଯୋଗାଇବା ଉଦ୍ଦେଶ୍ୟରେ ୧୯୯୩ ମସିହା ସେପ୍ଟେମ୍ବର ମାସ ୨୭ ତାରିଖ ଦିନ ଜାତୀୟ ମାନବାଧିକାର ଆୟୋଗ ପ୍ରତିଷ୍ଠାର ଘୋଷଣା କରାଯାଇଥିଲା । ଏହି ଆୟୋଗ ଆମ ଦେଶରେ ମାନବିକ ଅଧିକାର ଉଲଘଂନ ମାମଲାର ବିଚାର କରିଥାଏ । ଏହା ବ୍ୟତୀତ ରାଜ୍ୟ ସ୍ତରରେ ମାନବାଧିକାର ଆୟୋଗ ଓ ଜିଲ୍ଲା ସ୍ତରରେ ମାନବାଧିକାର ନ୍ୟାୟାଳୟ ପ୍ରତିଷ୍ଠାର ବ୍ୟବସ୍ଥା କରାଯାଇଛି । ଆମ ରାଜ୍ୟ ଓଡ଼ିଶାରେ ୨୦୦୦ ମସିହା ଜାନୁଆରୀ ମାସ ୨୭ ତାରିଖ ଦିନ ଓଡ଼ିଶା ମାନବିକ ଅଧିକାର ଆୟୋଗ ଗଠନ କରାଯାଇଥିଲା । ଏହା ୨୦୦୩ ମସିହା ଜୁଲାଇ ମାସ ୧୧ ତାରିଖରୁ କାର୍ଯ୍ୟ କରୁଅଛି ।

ମାନବିକ ଅଧିକାର ଘୋଷଣାନାମାର ଛଅଷଠି ବର୍ଷ ଅତିକ୍ରାନ୍ତ ହୋଇ ସାରିଲାଣି । ତଥାପି ବିଶ୍ୱର ପ୍ରାୟ ପ୍ରତ୍ୟେକ ରାଷ୍ଟ୍ରରେ ପ୍ରତି ମୁହୂର୍ତ୍ତରେ ମାନବିକ ଅଧିକାର ଉଲଘଂନର ଦୃଷ୍ଟାନ୍ତମାନ ଲୋକଲୋଚନକୁ ଆସୁଛି । ଏବେ ମଧ୍ୟ ବିଶ୍ୱର ବହୁତ ଦେଶରେ ପ୍ରେସ୍ ବା ଗଣମାଧ୍ୟମକୁ ସ୍ୱାଧୀନତା ମିଳିନାହିଁ । ଶାସନ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କଲେ ବଳ ପ୍ରୟୋଗ

ପୂର୍ବକ ସେମାନଙ୍କୁ ନିରବ କରି ଦିଆଯାଉଛି । ଶାସକର ସ୍ୱେଚ୍ଛାଚାରିତା ବିରୋଧରେ ବିପ୍ଳବ କଲେ, ବିଦ୍ରୋହୀମାନଙ୍କୁ ପୁଲିସ ଗୁଳିରେ ହତ୍ୟା କରାଯାଇଛି । ତାହା ବ୍ୟତୀତ ବେଆଇନ ଗିରଫ, ହାଜତ ମଧ୍ୟରେ ବଳାତ୍କାର, ଅଶାଳୀନ ବ୍ୟବହାର, ମିଥ୍ୟା ଅଭିଯୋଗ ଭଳି ପୋଲିସ ବାହିନୀର କ୍ଷମତାର ଅପବ୍ୟବହାରର ବହୁ ଉଦାହରଣ ରହିଛି । ଅପରାଧର ତଦନ୍ତ ସମୟରେ ଅନେକ ବ୍ୟକ୍ତି ପୋଲିସ ହାଜତରେ ମୃତ୍ୟୁବରଣ କରୁଛନ୍ତି । ଏନ୍‌କାଉଣ୍ଟର ନାମରେ ନିରୀହ ଲୋକମାନଙ୍କୁ ମାରି ଦିଆଯାଉଥିବାର ଦୃଷ୍ଟାନ୍ତ ଆଜିର ସଭ୍ୟ ସମାଜରେ ମାନବିକ ଅଧିକାରର ଚରମ ଉଲଘଂନ ।

ବିଶ୍ୱର ଅନେକ ରାଷ୍ଟ୍ରରେ ଏବେ ମଧ୍ୟ ଫାଶି ଦଣ୍ଡାଦେଶର ବ୍ୟବସ୍ଥା ରହିଛି । ଋଷ, ଆମେରିକା, ଚୀନ, ଇରାନ, ସାଉଦି ଆରବ, ପାକିସ୍ତାନ ଓ ଭାରତ ଭଳି କେତେକ ଦେଶମାନଙ୍କରେ ଏହି ଦଣ୍ଡ ବ୍ୟବସ୍ଥା ଆଜି ପର୍ଯ୍ୟନ୍ତ ବଳବତ୍ତର ରହିଛି । ବିଶ୍ୱର ଅନେକ ରାଷ୍ଟ୍ର ଏହି ଘୃଣ୍ୟ ବ୍ୟବସ୍ଥାର ପରିସମାପ୍ତି ଘଟାଇ ସାରିଛନ୍ତି । ଭାରତ ଭଳି ବିଶ୍ୱର ବୃହତ୍ତମ ଗଣତନ୍ତ୍ରିକ ରାଷ୍ଟ୍ର ଏହି ବ୍ୟବସ୍ଥାର ବିଲୋପ ସାଧନ ନିମନ୍ତେ ତୁରନ୍ତ ବିହିତ ପଦକ୍ଷେପ ଗ୍ରହଣ କରିବାର ଆବଶ୍ୟକତା ଦେଖାଦେଇଛି ।

ଆଜିର ବିଶ୍ୱରେ ମାନବିକ ଅଧିକାରର ପରମ ଶତ୍ରୁ ଭାବେ ଦେଖାଦେଇଛି ଆନ୍ତର୍ଜାତିକ ଆତଙ୍କବାଦୀ ଓସମାବିନ ଲାଡ଼େନର ମୃତ୍ୟୁ ହୋଇ ସାରିଥିଲେ ମଧ୍ୟ ଧରାପୃଷ୍ଠରେ ଏବେ ବି ଆତଙ୍କବାଦ ଜୀବିତ ଓ ସକ୍ରିୟ ରହିଛି । ଶାନ୍ତିକାମୀ ରାଷ୍ଟ୍ର ଭାରତବର୍ଷ ଆତଙ୍କବାଦୀମାନଙ୍କ ହିଂସାତ୍ମକ ଓ ଧ୍ୱସାଂତ୍ମକ କାର୍ଯ୍ୟକଳାପ ଯୋଗୁଁ ବିଶେଷ ଭାବେ କ୍ଷତିଗ୍ରସ୍ତ ହେଉଛି । ବାରମ୍ବାର ସଂଘଟିତ ହେଉଥିବା ହିଂସାକାଣ୍ଡ ବିସ୍ଫୋରଣ ଓ ରକ୍ତପାତ ଫଳରେ ସାଧାରଣ ନାଗରିକମାନଙ୍କ ଧନଜୀବନ ଅସୁରକ୍ଷିତ ହୋଇ ପଡ଼ିଛି ।

ସମଗ୍ର ବିଶ୍ୱରେ ମୋଟ ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ହେଉଛନ୍ତି ମହିଳା । ପୁରୁଷ ପ୍ରାଧାନ୍ୟ ସମାଜରେ ମହିଳାମାନେ ସେମାନଙ୍କ ବ୍ୟକ୍ତି ଅଧିକାର ଓ ସ୍ୱାଧୀନତା ସାବ୍ୟସ୍ତ କରିପାରୁ ନାହାନ୍ତି । ଦୀର୍ଘ ଚାରି ଦଶନ୍ଧିର ଅବିରତ ସଂଗ୍ରାମ ପରେ କୁଏତର ମହିଳାମାନେ ନିର୍ବାଚନରେ ଭୋଟ ଦେବା ଓ ପ୍ରାର୍ଥୀ ହେବାର ଅଧିକାର ପାଇଲେ ମାତ୍ର ନଅବର୍ଷ ତଳେ ୨୦୦୫ ମସିହାରେ । ୨୦୦୩ ମସିହାରେ ଓମାନ ଦେଶର ମହିଳାମାନଙ୍କୁ ମତଦାନ ଅଧିକାର ମିଳିଥିଲା । ସାଉଦି ଆରବର ମହିଳାମାନେ ୨୦୧୫ ମସିହାରେ ଭୋଟ ଦେବାର ଅଧିକାର ପାଇବାର ସମ୍ଭାବନା ରହିଛି । ଭାରତରେ ମହିଳାମାନଙ୍କ ଉପରେ ହେଉଥିବା ଅତ୍ୟାଚାର ଓ ନିର୍ଯ୍ୟାତନାର ବିବରଣୀ କିଛି କମ ନୁହେଁ । ମହିଳାମାନେ ସର୍ବଦା ଭ୍ରୁଣହତ୍ୟା, ଘରୋଇହିଂସା, ଯୌନ ଶୋଷଣ, ଶାରୀରିକ ଉତ୍ପୀଡ଼ନ, ମାନସିକ ନିର୍ଯାତନା, ବଳାତ୍କାର ଓ ଦୁଷ୍କର୍ମ ଇତ୍ୟାଦିର ଶିକାର ହେଉଥିବାର ଚାଞ୍ଚଲ୍ୟକର ସମ୍ବାଦମାନ ଗଣମାଧ୍ୟମରୁ ଜଣାପଡୁଛି । ଆମ ଦେଶର ବହୁ ଅଞ୍ଚଳରେ ବାଲ୍ୟ ବିବାହ, ଯୌତୁକ ଜନିତ ହିଂସା ଓ ମହିଳା ଚାଲାଣ ଇତ୍ୟାଦି ଅବୈଧ କାର୍ଯ୍ୟ ଏବେ ମଧ୍ୟ ଚାଲିଛି । ମହିଳାମାନଙ୍କ ପ୍ରାକ ବୈବାହିକ ସତୀତ୍ୱ ସୁନିଶ୍ଚିତ କରିବା ପାଇଁ ଯୌନାଙ୍ଗ ଉଚ୍ଛେଦ ଭଳି ଘୃଣ୍ୟ ବ୍ୟବସ୍ଥା ଏବେ ମଧ୍ୟ ପ୍ରଚଳିତ ହୋଇଛି । କର୍ମକ୍ଷେତ୍ରରେ କର୍ମଜୀବୀ ମହିଳାମାନେ ନିଜକୁ ସୁରକ୍ଷିତ ରଖିପାରୁ ନାହାଁନ୍ତି ।

ୟୁନିସେଫ୍ ଦ୍ୱାରା ପ୍ରକାଶିତ ଏକ ପ୍ରତିବେଦନ ଅନୁଯାୟୀ ତୃତୀୟ ବିଶ୍ୱର ପ୍ରାୟ ୨୦କୋଟି ଶିଶୁ ନିଜର ଜୀବିକା ନିଜେ ନିର୍ବାହ କରିବା ପାଇଁ ବାଧ୍ୟ ହେଉଛନ୍ତି । ବିଶ୍ୱର ସବୁଠାରୁ ବେଶୀ ସଂଖ୍ୟାରେ ଶିଶୁ ଶ୍ରମିକ ଆମ ଦେଶରେ ରହିଛନ୍ତି । ଏମାନଙ୍କ ସଂଖ୍ୟା ପ୍ରାୟ ୧୩ ନିୟୁତରୁ ଅଧିକ ହେବ । ରାଷ୍ଟ୍ରର ଭବିଷ୍ୟତ ଅଗଣିତ ଶିଶୁମାନେ ଉପଯୁକ୍ତ ଶିକ୍ଷା ପାଇବାର ଅଧିକାରରୁ ବଞ୍ଚିତ ହୋଇ ଶିଶୁ ଶ୍ରମିକ ଭାବେ କାଳାତିପାତ କରିବାକୁ ବାଧ୍ୟ ହେଉଛନ୍ତି । ସମ୍ଭାବନାମୟ ଶୈଶବ ବରିବର୍ତ୍ତେ ସେମାନଙ୍କର ଜୀବନ ବିପର୍ଯ୍ୟସ୍ତ ଓ ଅଭିଶପ୍ତ ହୋଇଯାଇଛି ।

ମାନବିକ ଅଧିକାରର ପରମ ଶତ୍ରୁ ହେଉଛି ଆମ ସମାଜରେ ରହିଥିବା ଆର୍ଥିକ ବୈଷମ୍ୟ ଓ ଦାରିଦ୍ର୍ୟ । ସମାଜରେ ନିଯୁକ୍ତି ସୁଯୋଗର ଅସମାନତା, ଜାତିଆଣ ଭେଦଭାବ, ଭିନ୍ନକ୍ଷମଙ୍କ ପ୍ରତି ଅବହେଳା ଓ ନିର୍ଯ୍ୟାତନା ଭଳି ବହୁ ଘଟଣା ପ୍ରତିଦିନ ଘଟୁଛି, ଯାହା ସାଧାରଣ ଲୋକର ମାନବୀୟ ଅଧିକାରକୁ ଉଲଘଂନ କରୁଛି । ଦଳିତ ଓ ଜନଜାତିର ଲୋକମାନେ ସବୁ କ୍ଷେତ୍ରରେ ଶୋଷିତ ଓ ନିର୍ଯ୍ୟାତିତ ହେଉଛନ୍ତି । ସଂଖ୍ୟାଲଘୁ ସଂପ୍ରଦାୟଙ୍କ ଉପରେ ଅନ୍ୟାୟ ଓ ଅତ୍ୟାଚାର ଏବେ ମଧ୍ୟ ହ୍ରାସ ପାଇପାରି ନାହିଁ ।

ଆଜିର ସମାଜରେ ଅନୈତିକତା ଓ ବ୍ୟଭିଚାର ବୃଦ୍ଧି ପାଉଥିବା ଯୋଗୁଁ ଏଚଆଇଭି ଓ ଏଡ଼ସ୍ ଭଳି ବିରାଟ ସମସ୍ୟା ଦେଖାଦେଇଛି । ସମଗ୍ର ବିଶ୍ୱରେ ଦକ୍ଷିଣ ଆଫ୍ରିକା ଓ ନାଇଜେରିଆ ପରେ ଏଚଆଇଭି ସଂକ୍ରମିତ ରୋଗୀଙ୍କ ମଧ୍ୟରେ ଭାରତର ସ୍ଥାନ ତୃତୀୟରେ ରହିଥିଲା । ଆମ ଦେଶର ଉତ୍ତର ପ୍ରଦେଶ,

କର୍ଣ୍ଣାଟକ, ଅବିଭକ୍ତ ଆନ୍ଧ୍ରପ୍ରଦେଶ, ବିହାର ରାଜସ୍ଥାନ ଓ ମିଜୋରାମ ଭଳି ରାଜ୍ୟ ଅତ୍ୟଧିକ ସଂକମିତ କ୍ଷେତ୍ରଭାବେ ଚିହ୍ନିତ ହୋଇଛି । ଏହି ରୋଗୀମାନଙ୍କ ସଂଖ୍ୟା ଆଗାମୀ ଦିନମାନଙ୍କରେ ବୃଦ୍ଧି ପାଇବାର ଆଶଙ୍କା ରହିଛି । ଏଡ୍‌ସ୍‌ଗ୍ରସ୍ତ ରୋଗୀମାନେ ମୌଳିକ, ଆର୍ଥିକ ଓ ସାମାଜିକ ଅଧିକାର ପ୍ରାପ୍ତିରୁ ବଞ୍ଚିତ ହେଉଛନ୍ତି ।

ଜେରେମି ବେନ୍ଥାମ, ଏଡ୍‌ମଣ୍ଡବର୍କ, ଫ୍ରେଡ଼ରିକ୍ ନିତସେ ଓ କାର୍ଲ ମାର୍କସ୍‌ଙ୍କ ଭଳି ଦାର୍ଶନିକମାନେ ମାନବିକ ଅଧିକାରର ଚିନ୍ତାଧାରା ସମ୍ପର୍କରେ ବିରୋଧାତ୍ମକ ମନୋଭାବ ପୋଷଣ କରି ଏହାର ସମାଲୋଚନା କରିଛନ୍ତି । ତଥାପି ମାନବ ସଭ୍ୟତାର ଇତିହାସରେ ମାନବିକ ଅଧିକାର ପ୍ରତିଷ୍ଠା ପାଇଁ ସଂଗ୍ରାମ କରି ମହାମାନବ ମହାତ୍ମାଗାନ୍ଧୀ, ମାର୍ଟିନ ଲୁଥର କିଙ୍ଗ୍ ଓ ନେଲସନ୍ ମାଣ୍ଡେଲାଙ୍କ ଭଳି ବହୁ ଜନପ୍ରିୟ ଜନନେତା ବିଶ୍ୱବିଖ୍ୟାତ ହୋଇ ପାରିଛନ୍ତି । ମାନବାଧିକାର ପ୍ରତିଷ୍ଠା ପାଇଁ ସଂଘର୍ଷ ଜାରି ରଖିଥିବା ଚୀନ ଦେଶର ଲେଖକ ଓ ସାହିତ୍ୟ ଅଧ୍ୟାପକ ଲିଉ ଜିଆବୋଙ୍କୁ ୨୦୧୦ ମସିହାରେ ନୋବେଲ ଶାନ୍ତି ପୁରସ୍କାର ପ୍ରଦାନ କରାଯାଇଥିଲା । ସେତେବେଳେ ନୋବେଲେ କମିଟି ଦୃଢ଼ ମତପୋଷଣ କରିଥିଲେ ଯେ ମାନବିକ ଅଧିକାର ସହିତ ବିଶ୍ୱଶାନ୍ତିର ନିବିଡ଼ ସମ୍ପର୍କ ରହିଛି । ସେହିଭଳି ୧୯୯୧ ମସିହାରେ ବିଶ୍ୱଶାନ୍ତି କ୍ଷେତ୍ରରେ ନୋବେଲ ପୁରସ୍କାର ବିଜେତା ମିଆମାରର ଗଣତନ୍ତ୍ରବାଦୀ ଜନନେତ୍ରୀ ଅଙ୍ଗ ସାନ ସୁଚିଙ୍କୁ ମାନବିକ ଅଧିକାର ପାଇଁ ସଂଗ୍ରାମ କରି ଦୀର୍ଘଦିନ ଧରି ଗୃହବନ୍ଦୀଭାବେ ଜୀବନ ଅତିବାହିତ କରିବାକୁ ପଡ଼ିଥିଲା । ମାନବିକ ଅଧିକାରକୁ ଏକ ସାର୍ବଜନୀନ ଓ ସମତାବାଦୀ ଅଧିକାରଭାବେ ବିଶ୍ୱ ସମୁଦାୟରେ ମର୍ଯ୍ୟାଦା ପ୍ରଦାନ କରାଯାଇଛି । ଜାତିସଂଘର ଐତିହାସିକ ଉଦ୍‌ଘୋଷଣାର ପ୍ରଥମ ଅନୁଚ୍ଛେଦରେ ଉଲ୍ଲେଖ କରାଯାଇଛି । ଯେ ସମସ୍ତ ମନୁଷ୍ୟ ଦୁନିଆରେ ମୁକ୍ତ ଭାବରେ ଜନ୍ମ ହୁଅନ୍ତି ଏବଂ ମର୍ଯ୍ୟାଦା ତଥା ଅଧିକାର ଦୃଷ୍ଟିରୁ ସମସ୍ତେ ସମାନ । ସଂପ୍ରତି ମାନବିକ ଅଧିକାର ସୁରକ୍ଷିତ ହୋଇ ପାରିଲେ ସାମାଜିକ ନ୍ୟାୟ ପ୍ରତିଷ୍ଠାର ମାର୍ଗ ସୁଗମ ହୋଇ ପାରିବ । ଭାରତୀୟ ସଭ୍ୟତା ଓ ସଂସ୍କୃତି ଯୁଗେ ଯୁଗେ ମାନବ କଲ୍ୟାଣ ଓ ବିଶ୍ୱ ମଙ୍ଗଳର ସନ୍ଦେଶ ପ୍ରଦାନ କରି ଆସିଛି । ବସୁଧୈବ କୁଟୁମ୍ବକମ୍ ଓ ସର୍ବେ ଭବନ୍ତୁ ସୁଖୀନଃ ଭଳି ବିଶ୍ୱମାନବବାଦୀ ଚେତନା ଭାରତର ପବିତ୍ର ମାଟିରେ ଉଦ୍ରେକ ହୋଇ ସମଗ୍ର ବିଶ୍ୱକୁ ଉଦ୍‌ଭାସିତ କରି ପାରିଛି । ଶିଶୁ ଅଧିକାର ସୁରକ୍ଷା ଦିଗରେ ଆନ୍ଦୋଳନ ଜାରି ରଖିଥିବା ଆମ ଦେଶର ମାନବାଧିକାର ଓ ସାମାଜିକ କର୍ମୀ ଶ୍ରୀ କୈଳାସ ସତ୍ୟାର୍ଥୀଙ୍କୁ ୨୦୧୪ ବର୍ଷ ନିମନ୍ତେ ନୋବେଲ ଶାନ୍ତି ପୁରସ୍କାର ପ୍ରଦାନ କରାଯାଇଛି । ମାନବାଧିକାରର ସୁରକ୍ଷା ହିଁ ମାନବୀୟ ସମାଜ, ସଭ୍ୟତା ଓ ସଂସ୍କୃତିକୁ ସୁରକ୍ଷିତ ରଖି ପାରିବ ।

ଶାନ୍ତିବଜାର
ପୋ. ଧର୍ମଶାଳା
ଜିଲା–ଯାଜପୁର–୭୫୫୦୦୮



# ପ୍ରଥମ ମହାବିଦ୍ୟା ମା' କାଳୀ

**ସରୋଜ ରଂଜନ ପଟ୍ଟନାୟକ**

ଦଶ ମହାବିଦ୍ୟା ମଧ୍ୟରୁ ପ୍ରଥମ ମହାବିଦ୍ୟା 'କାଳୀ' କାଳୀ ଶବ୍ଦର ଅର୍ଥ ବ୍ୟାପକ ହେଲେ ମଧ୍ୟ କାଳକୁ ଯେ ଜୟ କରେ ସେ ହେଉଛି କାଳୀ । କାଳ ସହିତ ସମ୍ବନ୍ଧିତ ଓ କୃଷ୍ଣବର୍ଣ୍ଣ । ସେ ଶବ ପରେ ଆରୂଢା ହୋଇ ଅଛନ୍ତି କାରଣ ଶକ୍ତି ବିହୀନ ବିଶ୍ୱ ମୃତ ସ୍ୱରୂପ । ଶତ୍ରୁ ସଂହାର ଶକ୍ତି ସର୍ବଦା ଭୟାବହ । ଏଣୁ କାଳୀ ଦେଖିବାକୁ ଭୟଙ୍କର ଓ ତେଜିୟାନ । ଶତ୍ରୁ ସଂହାର ପରେ ବିଜୟୀ ଯୋଦ୍ଧା ଖୋଲା ହସ ହସିଥାଏ । ମହାକାଳୀ ବିଜୟିନୀ ହୋଇ ଅଟ୍ଟହାସ୍ୟ କରୁଛନ୍ତି । ଦେବୀ ନିଜର ଚାରିଭୁଜା ଦ୍ୱାରା ପରିପୂର୍ଣ୍ଣତ୍ୱ ଓ ନିଜର ପୂର୍ଣ୍ଣତାକୁ ପ୍ରକାଶ କରୁଛନ୍ତି । ପୂର୍ଣ୍ଣବସ୍ତୁ ଚତୁରସ୍ତ କୁହାଯାଏ । ସେ ସ୍ୱୟଂ ଅଭୟା ଏବଂ ନିଜର ଭକ୍ତମାନଙ୍କୁ ଆଶ୍ରୟ ତଥା ଅଭୟ ପ୍ରଦାନ କରିଥାନ୍ତି । ତେଣୁ ଏପରି ମୁଦ୍ରାକୁ ଅଭୟ ମୁଦ୍ରା କୁହାଯାଏ । ସାଂସାରିକ ସୁଖ ସର୍ବଦା କ୍ଷଣ ଭଙ୍ଗୁର । ସ୍ୱୟଂ ଭଗବତୀ ହିଁ ପରମ ଗତି ଅଟନ୍ତି । ଜୀବିତ ଓ ମୃତ ବିଶ୍ୱର ସେହି ମୂଳାଧାର । ମୃତ ପ୍ରାଣୀମାନଙ୍କର ଏକମାତ୍ର ଆଶ୍ରୟସ୍ଥଳୀ ହେଉଛନ୍ତି ଦେବୀ । ତା'ର ପ୍ରତୀକ ସ୍ୱରୂପ ଦେବୀ ମୁଣ୍ଡମାଳ ଧାରଣ କରିଥାନ୍ତି, ଯେହେତୁ ବିଶ୍ୱ ବ୍ରହ୍ମସ୍ୱରୂପିଣୀ ଆବରଣ ଅଟେ । ପ୍ରଳୟରେ ସମସ୍ତେ ଲୀନ ହେବା ପରେ ଭଗବତୀ ଲଗ୍ନ ହୁଅନ୍ତି । ଏଣୁ ତାଙ୍କର ବିଗ୍ରହ ଲଗ୍ନ । ତାନ୍ତ୍ରିକ ବିଦ୍ୟା ସାଧନ କ୍ଷେତ୍ରରେ ମା' କାଳୀଙ୍କୁ ବିଶେଷ ପ୍ରାଧାନ୍ୟ ପ୍ରଦାନ କରାଯାଇଥାଏ । ଭବ ବନ୍ଧନରୁ ନିସ୍ତାର ପାଇବା ପାଇଁ କାଳୀ ଉପାସନା ସର୍ବୋତ୍କୃଷ୍ଟ ଉପାୟ ଅଟେ । ଯାହା ମନରେ ଅହଂକାର, ହିଂସା, ମାୟା, ଭେଦ ବୃଦ୍ଧି ଥାଏ, ସେ ଦେବୀଙ୍କ କୃପା ଲାଭରୁ ବଞ୍ଚିତ ହୁଏ ।

ସାଧକ ହୃଦୟରେ ଯେତେବେଳେ ପୂର୍ଣ୍ଣ ଶିଶୁତ୍ୱ ଉଦୟ ହୋଇଥାଏ, ସେତେବେଳେ ଦେବୀଙ୍କ ବିଗ୍ରହ ସାଧକ ସମ୍ମୁଖରେ ବିରାଜମାନ ହୋଇଥାଏ । ସେହି ରୂପ ଦେବୀଙ୍କର ମୁକ୍ତାକେଶୀ, ଶବରୂଢା, ମୁଣ୍ଡମାଳ ଧାରିଣୀ ଭଗବତୀଙ୍କ ପ୍ରତ୍ୟକ୍ଷ ଦର୍ଶନ। କେତେକ ଶାସ୍ତ୍ରରେ ମା' କାଳୀଙ୍କ ରୂପକୁ ଆଠ ଭାଗରେ ବିଭକ୍ତ କରିଥିବା ସ୍ଥଳେ ତନ୍ତ୍ର ଜ୍ଞାନୀଙ୍କ ମତରେ ଏହାକୁ ନଅ ଭାଗରେ ବିଭକ୍ତ କରାଯାଇଥିବାର ପ୍ରମାଣ ମିଳେ । ଯଥା– ୧. ଆଦ୍ୟାକାଳୀ,

୨. ଦକ୍ଷିଣ କାଳୀ, ୩. ଭଦ୍ର କାଳୀ, ୪. ଗୁରୁ କାଳୀ, ୫. କାମକାଳୀ, ୬.ଧନ କାଳୀ, ୭. ସିଦ୍ଧ କାଳୀ, ୮. ଚଣ୍ଡିକା କାଳୀ, ୯. କାଳ ଭୈରବୀ – ତନ୍ତ୍ର ବିଜ୍ଞାନୀଙ୍କ ମତରେ ଅନ୍ୟ ଶାସ୍ତ୍ରାକାରମାନଙ୍କ ମତରେ – ୧. ଚିନ୍ତାମଣି କାଳୀ, ୨. ସ୍ୱର୍ଣ୍ଣମଣି କାଳୀ,

୩. ସନ୍ତତିପ୍ରଦା କାଳୀ, ୪. ସିଦ୍ଧବା କାଳୀ, ୫. ଦକ୍ଷିଣ କାଳୀ,

୬. କାମକଳା କାଳୀ, ୭. ହଂସ କାଳୀ, ୮. ଗୁହ୍ୟ କାଳୀ ।

ଏଥିମଧ୍ୟରୁ ଦକ୍ଷିଣ କାଳୀ ଶ୍ରେଷ୍ଠ, ନବଗ୍ରହମାନଙ୍କ ମଧ୍ୟରୁ ଶନି ଗ୍ରହ, କ୍ରୂର ଗ୍ରହ ଏବଂ ସମସ୍ତେ ଶନି ଗ୍ରହକୁ ଭୟ କରିଥାନ୍ତି । ଶନିଙ୍କର ଆରାଧ୍ୟ ଦେବୀ ନିଜେ ଦକ୍ଷିଣ କାଳୀ । ନିର୍ବାଣ ତନ୍ତ୍ର ଅନୁଯାୟୀ ଦକ୍ଷିଣ ଦିଗର ଅଧିପତି ହୋଇଛି ସୂର୍ଯ୍ୟଙ୍କ ପୁତ୍ର ଯମ । ଯମ ଦେବୀଙ୍କ ନାମ ଶ୍ରବଣ ମାତ୍ରେ ଭୟଭୀତ ହୋଇ ପଳାଇ ଯାଇଥାନ୍ତି । ଦକ୍ଷିଣ କାଳୀଙ୍କୁ ମଧ୍ୟ ଭଗବତୀ କାଳୀ ବୋଲି ଚିତ୍ରଣ କରାଯାଏ ।

ଦକ୍ଷିଣସ୍ୟାଂଦିଶି ସ୍ଥାନେ ସଂସ୍ଥିତଶ୍ଚ ରବେ ସୁତଃ
କାଳେ ନାମ୍ନା ପଲାୟତେ ଭୀତି ଯୁକ୍ତଃ ସମନ୍ତତଃ
ଅତଃ ସା ଦକ୍ଷିଣା କାଳୀ ତ୍ରିଷୁ ଲୋକେଷୁ ଗୀୟତେ ।।

(ସୌଜନ୍ୟ– ମହାନିର୍ବାଣ ତନ୍ତ୍ର)

◆◆◆

କାଳୀଙ୍କ ଉପାସନା ରହସ୍ୟ ଯେତିକି ବିଚିତ୍ର ତାଙ୍କର ସାଧନା ମଧ୍ୟ ଦୁର୍ଲ୍ଲଭ । ଆସନ୍ତୁ ଜାଣିବା ସାଧନା ମନ୍ତ୍ରର ରହସ୍ୟ–

ମନ୍ତ୍ର : ଓଁ କ୍ରୀଂ କ୍ରୀଂ କ୍ରୀଂ ହ୍ରୀଂ ହ୍ରୀଂ ହୂଂ ହୂଂ ସ୍ୱାହା ଦକ୍ଷିଣ କାଳୀ କେ ।

ଦକ୍ଷିଣ କାଳୀଙ୍କ ମନ୍ତ୍ର ଜାଣିଥିବା ସାଧକ ମୁକ୍ତି ପାଇଥାଏ । ଏହି ମନ୍ତ୍ରର ଅର୍ଥ ହେଉଛି– ଓଁର ଅର୍ଥ ପ୍ରଣବ, କ୍ରୀଂ ଏହା ଏକାକ୍ଷରୀ ସିଦ୍ଧି ବିଦ୍ୟା ମନ୍ତ୍ରମାନଙ୍କ ମଧ୍ୟରେ ରାଣୀ ଅଟେ । ତ୍ରିଗୁଣା (କ୍ରୀଂ, କ୍ରୀଂ କ୍ରୀଂ) ଦୁଇଗୋଟି ଲଜ୍ଜା (ହ୍ରୀଂ ହ୍ରୀଂ) ସହିତ ଦକ୍ଷିଣେ କାଳିକେ ଏହି ପଦ ଏବଂ ପୁନଃ ପୂର୍ବୋକ୍ତ ସାତ ଗୋଟି ବୀଜ ସଂଯୋଗ କରି ଶେଷରେ ବହ୍ନି ବଧୂ (ସ୍ୱାହା) ଯୋଗ କଲେ ବିଦ୍ୟାରଜ୍ଞ ମନ୍ତ୍ର ହୋଇଥାଏ । ଯାହାକି ସର୍ବମନ୍ତ୍ରମୟ ଏବଂ ଜନ୍ମ ପାଳନ ସଂହାର ଶକ୍ତି ରକ୍ଷା କାରିଣୀ ଅଟେ, ବ୍ରହ୍ମା, ରୁଦ୍ର ଏବଂ ବିଷ୍ଣୁ ସମସ୍ତ ଦେବଗଣ ସେହି ଦକ୍ଷିଣ କାଳୀଙ୍କ ଉପାସକ ଅଟନ୍ତି । ବେଦ ଆଗମ ଏବଂ ପୁରାଣରେ କଲ୍ୟାଣକାରିଣୀ କାଳୀଙ୍କର ବନ୍ଦନା କରାଯାଇଛି । କାମପୀଠରେ କାଳିକା ସମସ୍ତ କାମନା, ବାସନା ପୂର୍ଣ୍ଣ କରିଥାନ୍ତି । ସ୍ୱର୍ଗ ମର୍ତ୍ତ୍ୟ ଏବଂ ପାତାଳରେ ଯିଏ ଭୈରବ, ସେ ସମସ୍ତେ କାଳିକାଙ୍କ ପୁତ୍ର ଅଟନ୍ତି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଗୁରୁ କ୍ରମ ଅନୁସାରେ ସଙ୍କେତ ମାର୍ଗଦ୍ୱାରା ଯାହାର ଅଭିଷେକ ହୁଏ ନାହିଁ ।

ବ୍ୟାସଦେବଙ୍କ ମତରେ ମନ୍ତ୍ର ଅର୍ଥ କ'ଣ ? ଏହା କାହିଁକି ପାଠ କରାଯାଏ । ତେଣୁ ବ୍ୟାସଦେବ ଅଗ୍ନି ପୁରାଣରେ ସ୍ପଷ୍ଟ ଭାବେ ଉଲ୍ଲେଖ କରିଛନ୍ତି ।

ମନନାଂ ତ୍ରାୟତେ ଯସ୍ତ
ସମନ୍ତ ପରି କିର୍ତ୍ତିତଃ ।

(ଅଗ୍ନି ପୁରାଣ ୪ର୍ଥ ପୃଷ୍ଠାରୁ ଆନୀତ)

ଏହାର ଅର୍ଥ ହେଉଛି ମନରୁ ନିସ୍ତାର ପାଇବା ପାଇଁ ବା ମୁକ୍ତି ଦେଇ ସଦ୍ ପଥରେ ଗତି କରିବା ପାଇଁ ମନ୍ତ୍ର ଏକମାତ୍ର ପ୍ରୟୋଜନ । ମନ୍ତ୍ର ପଢିବାଦ୍ୱାରା ଆମର କ'ଣ ଉପକାର ହୁଏ ?

ମନ୍ତ୍ରାଧୀନ ଜଗତ ସର୍ବ ମନ୍ତ୍ରାଧୀନଶ୍ଚ ଦେବତା
ତନ୍ ମନ୍ତ୍ର ବ୍ରହ୍ମଣାଧୀନ ତଂ ବ୍ରାହ୍ମଣଂ ନମସ୍ତୁଭ୍ୟଂ ।

(ଅଗ୍ନି ପୁରାଣରୁ ଅନୀତ)

ଅଖିଳ ଅନ୍ତରୀକ୍ଷ ପୃଥିବୀ ବା ସଚରାଚର ବିଶ୍ୱ ମନ୍ତ୍ର ଶକ୍ତିର ଅଧୀନ । ସେହି ମନ୍ତ୍ର ବ୍ରହ୍ମାଙ୍କ ମୁଖ ନିସୃତ ବାଣୀ ଯେହେତୁ ବ୍ରାହ୍ମଣମାନେ ପ୍ରତିଦିନ ମନ୍ତ୍ର ପାଠ କରନ୍ତି । ତେଣୁ ସେମାନେ ନମସ୍ୟ । ବଜ୍ରଯାନର ଆଦିପୀଠ ଭାବେ ଓଡ଼ିଶାର ନାମ କାଳିକା ପୁରାଣରେ ଉଲ୍ଲେଖ ଅଛି । କାଳିକା ପୁରାଣ ୧୧ଶ ଶତାବ୍ଦୀରେ ରଚନା କରାଯାଇଥିଲା । ବଜ୍ରଯାନ ବୌଦ୍ଧ ମହାଯାନଙ୍କଠାରୁ ସୃଷ୍ଟି । ସେତେବେଳେ ଓଡ଼ିଶାରେ ଦୁଇଟି ତନ୍ତ୍ରପୀଠ ଥିଲା । ଏବେ ଗୋଟିଏ ଓଡ଼ିଶାରେ ଥିଲାବେଳେ ଅନ୍ୟଟି ପାରଳା ଖେମୁଣ୍ଡି ନିକଟବର୍ତ୍ତୀ ମୁଖ ଲିଙ୍ଗମ୍ । ଭାରତର ଅନ୍ୟ ଦୁଇଟି ମଧ୍ୟରୁ ଗୋଟିଏ ପଞ୍ଜାବର ଜଳନ୍ଧର ଓ ଅନ୍ୟଟି ଆସାମର କାମରୂପା ।

ପୁରାଣ ଏବଂ ଶାସ୍ତ୍ରକୁ ତର୍ଜମା କଲେ ଜଣାଯାଏ, ଓଡ଼ିଶାର ଏମିତି ଅଞ୍ଚଳ ନାହିଁ ଯେଉଁ ଅଞ୍ଚଳରେ ତନ୍ତ୍ର ଦେବତା ପୂଜା ପାଉ ନାହାଁନ୍ତି । ଏହି କେତେବର୍ଷ ଧରି ଉପକୂଳ ଅଞ୍ଚଳ ବାଲେଶ୍ୱର, କଟକ, ପୁରୀ ବହୁସ୍ଥାନ ଖନନ ହୋଇ ବୌଦ୍ଧ ବିହାର ସ୍ତୁପାଦିର ସଂଧାନ ମିଳିଛି । ଯେଉଁ ପ୍ରାଚୀନତମ ମୂର୍ତ୍ତି ମିଳିଛି ସେଥିରୁ ପ୍ରମାଣିତ ହୁଏ ଯେ ବହୁ ପୂର୍ବରୁ ଓଡ଼ିଶାରେ ତନ୍ତ୍ର ପୂଜା ପାଉଥିଲା । ଭୁବନେଶ୍ୱର ଉପକଣ୍ଠରେ ଭାର୍ଗବୀ ନଦୀ ନିକଟସ୍ଥ ହୀରାପୁରଠାରେ ଗୋଲାକାର ଭାବେ ଯେଉଁ ଯୋଗିନୀ ସେଠାରେ ୬୪ ରୁ ୬୩ ଟି ଯୋଗିନୀ ଓ ଚାରୋଟି ଯୋଗୀ ପୀଠ ମଧ୍ୟରେ ଥିଲା ବେଳେ ବାହାରେ ନବ କାତ୍ୟାୟନୀ ଦେହରେ ନବଦ୍ୱାର ଆବୋରିଲା ପରି ରହିଛି । ଯୋଗିନୀ ମନ୍ଦିରଦ୍ୱାର ଦେଶରେ ଯେଉଁ ଦ୍ୱାରପାଳ ରହିଛନ୍ତି ତାହା ଅତ୍ୟନ୍ତ ଭୟଙ୍କର ମୁଦ୍ରାରେ ଆଚ୍ଛାଦିତ । ସେହି ଦ୍ୱାର ଦେଶରେ ଯେଉଁ ଦୁଇ ପୁରୁଷ ଦେବତା ଅଛନ୍ତି ତାଙ୍କ ଗଳାରେ ମଣିଷ ମୁଣ୍ଡର ମାଳ ଶୋଭା ପାଉଛି । ଓଡ଼ିଶାର ଯାଜପୁର, ପୁରୀ, ଭୁବନେଶ୍ୱର, ଭଦ୍ରକ, କୁଣ୍ଡେଶ୍ୱର, ବେଲଖଣ୍ଡି ଆଦିରେ ସପ୍ତମାତୃକାଙ୍କ ମନ୍ଦିର ରହିଛି । ଏହି ମାତୃକାମାନେ ହେଉଛନ୍ତି – ବ୍ରାହ୍ମୀ, ବୈଷ୍ଣବୀ, ଐନ୍ଦ୍ରୀ, ମାହେଶ୍ୱରୀ, ବାରାହୀ, କୁବେରୀ ଓ କୌମାର ।

ଆସନ୍ତୁ, ସଂସାର ଜଞ୍ଜାଳରୁ ମୁକ୍ତି ପାଇଁ ମା'ଙ୍କ ଶରଣ ଭିକ୍ଷା କରିବା । ମାତୃ ଶକ୍ତି କେବଳଂ ।

କ୍ୱାଟର ନଂ.– ୨ ଆର୍.ଏଫ୍–୪/୧
କୋ–ଅପରେଟିଭ ହାଉସିଂ କଲୋନୀ
ୟୁନିଟ୍–୩, ଭୁବନେଶ୍ୱର–୧

# ପ୍ରେମ, ଆଶା ଓ ଭରସାର ପର୍ବ ବଡଦିନ

**ପ୍ରଶାନ୍ତ ପଟ୍ଟନାୟକ**

ମହାତ୍ମା ଗାନ୍ଧୀ କହିଥିଲେ, ମୋ ସ୍ୱପ୍ନର ଭାରତ କେବଳ ଗୋଟିଏ ଧର୍ମର ସାଧନ ବିକାଶ କରୁ ମୁଁ ଏହା ଆଶା କରୁନାହିଁ। ରାଷ୍ଟ୍ର ସମାଜ ବ୍ୟକ୍ତି ଓ ଧର୍ମ ପରସ୍ପର ସହିତ ସହଯୋଗ ରକ୍ଷା କରି ଅଧିକ ସହନଶୀଳ ହୁଅନ୍ତୁ, ଏହା ହିଁ ମୋର ଅନ୍ତରର ଇଚ୍ଛା।

ଭାରତବର୍ଷ ହେଉଛି ଏକ ଧର୍ମନିରପେକ୍ଷ ରାଷ୍ଟ୍ର। ତେଣୁ ଭାରତବର୍ଷର ପ୍ରତ୍ୟେକ ନାଗରିକଙ୍କର ଏହି ସାମ୍ବିଧାନିକ ବିଶ୍ୱାସ ଓ ଚିନ୍ତାଧାରା ଆଜି ବିଶ୍ୱରେ ଭାରତବର୍ଷକୁ ଏକ ସ୍ୱତନ୍ତ୍ର ପରିଚୟ ମିଳିଛି। ସମସ୍ତ ବିବିଧତା ମଧ୍ୟରେ ଏକତା ଗଣତନ୍ତ୍ରର ଭିତ୍ତିକୁ ସୁଦୃଢ କରିବା ସହିତ ସାମ୍ବିଧାନିକ ବିଧିବିଧାନରେ ସେହି ସ୍ୱଚ୍ଛତା ପରିଲକ୍ଷିତ ହୁଏ। ତେଣୁ ଆଜି ଭାରତବର୍ଷର ସମସ୍ତ ଧର୍ମର ପର୍ବ ବହୁ ଆଡମ୍ବର ଓ ଉତ୍ସାହର ସହ ଯୁଗ ଯୁଗ ଧରି ପାଳିତ ହୋଇ ଆସୁଛି। ତେବେ ମୁଖ୍ୟ ପର୍ବ ମଧ୍ୟରେ ଏହି ଖ୍ରୀଷ୍ଟମାସ ବା ବଡଦିନ ପର୍ବ ପାଳନ ବିଷୟରେ ଆସନ୍ତୁ ଆଲୋଚନା କରିବା। ସାଧାରଣତଃ ଡିସେମ୍ବର ୨୫ରେ ସାରା ବିଶ୍ୱରେ ଖ୍ରୀଷ୍ଟମାସ ବା ବଡଦିନ ପର୍ବ ପାଳନ କରାଯାଇଥାଏ। ଯଦିବା ଏହା ଖ୍ରୀଷ୍ଟିୟାନମାନଙ୍କର ପ୍ରଧାନ ପର୍ବ ମାତ୍ର ଜାତି, ଧର୍ମ, ବର୍ଣ୍ଣ, ଭାଷା, ନିର୍ବିଶେଷରେ ଏହା ପୃଥିବୀର ସମସ୍ତଙ୍କର ପ୍ରିୟ ପର୍ବ । କାରଣ ସେହିଦିନ ପ୍ରଭୁ ଯୀଶୁଖ୍ରୀଷ୍ଟ କୁମାରୀ ମରିୟମଙ୍କ ଗର୍ଭରୁ ପବିତ୍ର ଆତ୍ମାଙ୍କ କର୍ତ୍ତୃକ ଜନ୍ମ ଗ୍ରହଣ କରିଥିଲେ। ପ୍ରଭୁ ଯୀଶୁଙ୍କ ଜନ୍ମ ଅତି ଆଶ୍ଚର୍ଯ୍ୟ ଓ ଅଲୌକିକ ଥିଲା। ସେ ଯଦିଓ ସଂପୂର୍ଣ୍ଣ ମନୁଷ୍ୟ ଥିଲେ, ତଥାପି ତାଙ୍କଠାରେ କୌଣସି ପାପର ଲେଶ ମାତ୍ର ନଥିଲା। ପ୍ରଭୁ ଯୀଶୁଖ୍ରୀଷ୍ଟ ଈଶ୍ୱର ଥିଲେ ହେଁ ମାନବ ରୂପ ଧାରଣ କରି ଜଗତକୁ ଆସିଲେ। ତାଙ୍କର ଜୀବନୀ ଅତି ପବିତ୍ର ଓ ଅସାଧାରଣ ଥିଲା। ସେ ସିଦ୍ଧ ଓ ପବିତ୍ର ବ୍ୟକ୍ତି ଥିଲେ।

ଯୀଶୁଙ୍କ ମୁଖର ବାକ୍ୟ ଅଧିକାରଯୁକ୍ତ ଓ ଶକ୍ତିଯୁକ୍ତ ଥିଲା। ସେ ଯାହା ମୁଖରେ ଉଚ୍ଚାରଣ କରୁଥିଲେ, ତାହା ଘଟୁଥିଲା। ମହାଜନତା ତାଙ୍କ ପଶ୍ଚାତଗମନ କରୁଥିଲେ। ସେ ସେମାନଙ୍କୁ ଦେଖି ଦୟାରେ ବିଚଳିତ ହୋଇ ସେମାନଙ୍କ ଦୁଃଖ ମୋଚନ କଲେ। ସେ ଲୋକମାନଙ୍କ ଚକ୍ଷୁରୁ ଲୋତକ ପୋଛି ଦେଲେ, କୁଷ୍ଠୀକୁ ଶୁଚି କଲେ, ଅନ୍ଧକୁ ଦୃଷ୍ଟିଶକ୍ତି ପ୍ରଦାନ କଲେ। ସେ ବଧିରକୁ ଶ୍ରବଣ ଶକ୍ତି, ମୂକକୁ କଥା କହିବାକୁ, ଖଞ୍ଜକୁ ଚାଲିବାକୁ ଶକ୍ତି ଦେଲେ। ସେ ପକ୍ଷାଘାତ ରୋଗୀକୁ ସୁସ୍ଥ କଲେ ଓ ଭୂତଗ୍ରସ୍ତ ଲୋକଙ୍କୁ ମୁକ୍ତ କଲେ। ସେ ପାଞ୍ଚୋଟି ରୋଟୀ ଓ ଦୁଇଟି ମାଛକୁ ଆଶୀର୍ବାଦ କରି ପାଞ୍ଚ ହଜାରରୁ ଊର୍ଦ୍ଧ୍ୱ ଲୋକଙ୍କୁ ପରିତୃପ୍ତ କଲେ। ସେ ପାପୀମାନଙ୍କୁ କ୍ଷମା କଲେ। ମୃତକୁ ଜୀବନ ଦେଲେ। ସେ ଗାଲିଲ ସମୁଦ୍ର ଉପରେ ଚାଲିଲେ। ସମୁଦ୍ର ଝଡକୁ ପଦେ ଆଜ୍ଞା ମାତ୍ରେ ସୁସ୍ଥିର କଲେ। ସେ ଅସଂଖ୍ୟ ଆଶ୍ଚର୍ଯ୍ୟ କର୍ମ କଲେ। ସେ ସମସ୍ତଙ୍କର ମଙ୍ଗଳ କଲେ। ଶେଷରେ ସେ ପାପୀ ମନୁଷ୍ୟମାନଙ୍କ ନିମନ୍ତେ ଆପଣା ଜୀବନ ବଳିଦାନ କରି କାଲବରୀ କ୍ରୁଶରେ ମହା ପ୍ରାୟଶ୍ଚିତ କାର୍ଯ୍ୟ ସାଧନ କଲେ। ରକ୍ତପାତ ବିନା ପାପ ମୋଚନ ହୁଏ ନାହିଁ। ତେଣୁ ସେ ଆପଣା ପବିତ୍ର ବହୁମୂଲ୍ୟ ରକ୍ତ ବୁହାଇ ସମଗ୍ର ମାନବ ଜାତିର 'ମୁକ୍ତି', ପରିତ୍ରାଣ ସାଧନ କଲେ। ଯୀଶୁଙ୍କ କ୍ରୁଶୀୟ ଦାରୁଣ ମୃତ୍ୟୁ ଅସାଧାରଣ ଓ ଅତି ଚମତ୍କାର ଥିଲା। ସେ ଜର୍ଜରିତ ଦାରୁଣ ଯନ୍ତ୍ରଣା ମଧ୍ୟରେ ମଧ୍ୟ ଶତ୍ରୁ ବିରୁଦ୍ଧରେ ପଦେ କଥା କହି ନଥିଲେ। ମାତ୍ର ଯେଉଁମାନେ ତାଙ୍କୁ କ୍ରୁଶରେ ଟଙ୍ଗାଇଲେ, ସେ ସେମାନଙ୍କ ନିମନ୍ତେ ପ୍ରାର୍ଥନା କରି କହିଲେ, ହେ ପିତଃ, ଏମାନେ କ'ଣ କରୁଅଛନ୍ତି, ଜାଣୁ ନାହାନ୍ତି, ଏମାନଙ୍କୁ କ୍ଷମା କର। କି ଆଶ୍ଚର୍ଯ୍ୟମୟ ପବିତ୍ର ଜୀବନ। ସେହିପରି କିଏ ଶତ୍ରୁକୁ ପ୍ରେମ କରିପାରେ ? ପ୍ରଭୁ ଯୀଶୁଙ୍କ କ୍ରୁଶାର୍ପିତ ମୃତ୍ୟୁ ଯେପରି ଅସାଧାରଣ ଥିଲା, ତାଙ୍କ ସମାଧିସ୍ଥ ଓ ପୁନରୁତ୍‌ଥାନ ମଧ୍ୟ ଅସାଧାରଣ ଓ

ଅଲୌକିକ ଥିଲା। ତାଙ୍କ ମୁଖନିଃସୃତ ବାକ୍ୟାନୁସାରେ ସେ ତୃତୀୟ ଦିବସରେ ମୃତ୍ୟୁକୁ ଜୟ କରି ମୃତ୍ୟୁଞ୍ଜୟୀ ହୋଇ ପୁନରୁତ୍‌ଥିତ ହେଲେ। ପ୍ରଭୁ ଯୀଶୁଙ୍କ ପୁନରୁତ୍‌ଥାନ ପ୍ରମାଣିତ କରେ ଯେ, ସେ ମୃତ ନୁହଁନ୍ତି ମାତ୍ର ସେ ଯୁଗେ ଯୁଗେ ଜୀବିତ। ପ୍ରଭୁ ଯୀଶୁଙ୍କ ପୁନରୁତ୍‌ଥାନ ପରେ ୪୦ ଦିନ ଧରି ଏହି ପୃଥିବୀରେ ରହି ପାଞ୍ଚଶହରୁ ଊର୍ଦ୍ଧ୍ୱ ଲୋକମାନଙ୍କୁ ଦର୍ଶନ ଦେଇ ପ୍ରମାଣିତ କଲେ ଯେ, ସେ ସ୍ୱୟଂ ଜୀବିତ। ତାଙ୍କ ସ୍ୱର୍ଗାରୋହଣ ମଧ୍ୟ ଅତି ଆଶ୍ଚର୍ଯ୍ୟଜନକ ଥିଲା। ଦିନେ ସେ ଶିଷ୍ୟମାନଙ୍କ ସହିତ କଥାବାର୍ତ୍ତା କରୁ କରୁ ସେ ଊର୍ଦ୍ଧ୍ୱକୁ ନତ ହେଲେ। ଆଉ ଖଣ୍ଡେ ମେଘ ତାଙ୍କୁ ସେମାନଙ୍କ ଦୃଷ୍ଟିଗୋଚରରୁ ଘେନି ଗଲା। ଏପରି ସମୟରେ ଶୁକ୍ଳବସ୍ତ୍ର ପରିହିତ ଦୁଇଜଣ ବ୍ୟକ୍ତି ଉପସ୍ଥିତ ହୋଇ କହିଲେ, କାହିଁକି ତୁମ୍ଭେମାନେ ଆକାଶକୁ ଚାହିଁ ଠିଆ ହୋଇଅଛ। ଯୀଶୁ ତୁମ୍ଭମାନଙ୍କ ନିକଟରୁ ଯେପରି ସ୍ୱର୍ଗରେ ଗୃହୀତ ହେଲେ, ସେ ସେହି ପ୍ରକାରେ ଆଗମନ କରିବେ। ପ୍ରଭୁଯୀଶୁ ଆଜିକୁ ୨୦୦୦ ବର୍ଷ ପୂର୍ବେ ଏହି ଜଗତର ଉଦ୍ଧାରକର୍ତ୍ତା ଭାବରେ ସାନ ଶିଶୁ ରୂପରେ ଜେରୁସେଲମ୍‌ର ବେଥେଲେହେମ୍‌ରେ ଗୁହାଳକୁଣ୍ଡରେ ମାତା ମରିୟମଙ୍କ ଗର୍ଭରୁ ଡିସେମ୍ବର ୨୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ। ଯାହାକୁ ସାରା ବିଶ୍ୱରେ ଖ୍ରୀଷ୍ଟମାସ ବା ବଡଦିନ ପର୍ବ ଭାବେ ପାଳନ କରାଯାଏ, ସେହିପରି ପ୍ରଭୁଯୀଶୁ ତାଙ୍କ ଲୋକମାନଙ୍କୁ ନେବା ପାଇଁ ମେଘମାଳାରେ ତୂରୀ ଧ୍ୱନୀରେ, ମହା ପରାକ୍ରମରେ ଅୟୁତ ଅୟୁତ ଦୂତ ଓ ସାଧୁମାନଙ୍କ ସହିତ ଆଗମନ କରିବେ। ଏହା ହିଁ ଆମ ସମସ୍ତଙ୍କ ପାଇଁ ଖ୍ରୀଷ୍ଟମାସ ବା ବଡଦିନର ଆଶା ଓ ଭରସା।

ଯୀଶୁ କହିଲେ ହେ ପରିଶ୍ରାନ୍ତ ଓ ଭାରଗ୍ରସ୍ତ ଲୋକ ସମସ୍ତେ, ମୋ ନିକଟକୁ ଆସ, ମୁଁ ତୁମ୍ଭମାନଙ୍କୁ ବିଶ୍ରାମ ଦେବି। ପୁଣି ମୋଠାରୁ ଶିଖ, କାରଣ ମୁଁ ମୃଦୁଶୀଳ ଓ ନମ୍ରଚିତ୍ତ। ଆଉ ତୁମ୍ଭେମାନେ ଆପଣା ଆପଣା ଆତ୍ମାରେ ବିଶ୍ରାମ ପାଇବ। (ପବିତ୍ର ବାଇବଲ ମାଥିଉ ୧୧ : ୨୮–୨୯)। ଯୀଶୁ କହିଲେ, ମୁଁ ଜୀବନ୍ତ ଜଳ। ମୁଁ ଯେଉଁ ଜଳଦେବି, ତାହା ଯେ କେହି ପାନ କରିବ, ସେ କେବେ ହେଁ ତୃଷାର୍ତ୍ତ ହେବ ନାହିଁ, ବରଂ ମୁଁ ତାକୁ ଯେଉଁ ଜଳ ଦେବି, ତାହା ଅନନ୍ତ ଜୀବନଦାୟକ ଜଳର ନିର୍ଝର ସ୍ୱରୂପେ ତାହାଠାରେ ଉଚ୍ଛୁଳି ଉଠୁଥିବ (ପବିତ୍ର ବାଇବାଲ ଯୋହନ ୪ : ୧୪) ଯୀଶୁ କହିଲେ, ମୁଁ ଜଗତର ଜ୍ୟୋତିଃ, ଯେ ମୋହର ଅନୁଗମନ କରେ, ସେ କେବେହେଁ ଅନ୍ଧକାରରେ ଭ୍ରମଣ କରିବ ନାହିଁ, ବରଂ ଜୀବନର ଜ୍ୟୋତିଃ ପାଇବ (ପବିତ୍ର ବାଇବଲ ଯୋହନ ୮ : ୧୨) ଯୀଶୁ କହିଲେ, ମୁଁ ପୁନରୁତ୍‌ଥାନ ଓ ଜୀବନ, (ମୃତ୍ୟୁଞ୍ଜୟୀ) ଯେ ମୋଠାରେ ବିଶ୍ୱାସ କରେ ସେ ଯଦ୍ୟପି ମରେ, ତଥାପି ସେ ବଞ୍ଚିବ (ପବିତ୍ର ବାଇବଲ ଯୋହନ ୧୧ : ୨୫) କାରଣ ଈଶ୍ୱର ଜଗତକୁ (ମାନବ ଜାତିକୁ) ଏତେ ପ୍ରେମ କଲେ ଯେ, ସେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ କ୍ରୁଶରେ ବଳିଦାନ କଲେ, ଯେପରି କେହି ତାଙ୍କଠାରେ ବିଶ୍ୱାସ କରେ, ସେ ବିନଷ୍ଟ ନ ହୋଇ ଅନନ୍ତ ଜୀବନ ପ୍ରାପ୍ତ ହୁଏ।(ପବିତ୍ର ବାଇବଲ ଯୋହନ ୩ : ୧୨) ପ୍ରଭୁ ଯୀଶୁ ଆପଣଙ୍କୁ ପ୍ରେମ କରନ୍ତି। ଆପଣଙ୍କୁ ଅନନ୍ତ ଜୀବନ ଦେବାକୁ ଚାହାନ୍ତି।

ସୂତାହାଟ, କଟକ–୭୫୩୦୦୧



# ସପ୍ରସଙ୍ଗ ଓଡ଼ିଶା



## କୃଷି ଉତ୍ପାଦନରେ ଓଡ଼ିଶା ଶ୍ରେଷ୍ଠ ରାଜ୍ୟ
## ଦ୍ୱିତୀୟ ଥର ପାଇଁ ଓଡ଼ିଶା କୃଷି କର୍ମଣ ପୁରସ୍କାର ପାଇଲା

ଦ୍ୱିତୀୟ ଥର ପାଇଁ ଓଡ଼ିଶା କୃଷି କର୍ମଣ ପୁରସ୍କାର ଭଳି ଜାତୀୟ ପୁରସ୍କାର ହାସଲ କରିଛି । କୃଷି ଉତ୍ପାଦନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ପାଇଁ ଜାତୀୟ ସ୍ତରରେ ଓଡ଼ିଶା ଶ୍ରେଷ୍ଠ ରାଜ୍ୟ ଭାବରେ ଏହି ସମ୍ମାନ ଲାଭ କରିଛି । କେନ୍ଦ୍ର କୃଷି ମନ୍ତ୍ରୀ ଶ୍ରୀ ରାଧାମୋହନ ସିଂହ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ପତ୍ର ଲେଖି ଏ ବିଷୟ ଜଣାଇଛନ୍ତି । ପୁରସ୍କାର ବାବଦରେ ଓଡ଼ିଶାକୁ ପାଞ୍ଚକୋଟି ଟଙ୍କା, ପ୍ରଶଂସା ପତ୍ର ଓ ଟ୍ରଫି ମିଳିବ । ୨୦୧୩–୧୪ ବର୍ଷ ପାଇଁ ଓଡ଼ିଶାକୁ ଏହି ପୁରସ୍କାର ମିଳିଛି ।

ଓଡ଼ିଶାର ଚାଷୀ ଭାଇ ଭଉଣୀମାନଙ୍କ ପରିଶ୍ରମ ଯୋଗୁଁ ଓଡ଼ିଶା ଆଜି ପୁଣି ଥରେ ଜାତୀୟ ପୁରସ୍କାର ଲାଭ କରିବାରେ ସମର୍ଥ ହୋଇଛି ବୋଲି ବର୍ଣ୍ଣନା କରି ଏଥିପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟର ଚାଷୀ ସମାଜ ଓ କୃଷି ବିଭାଗର କର୍ମଚାରୀମାନଙ୍କୁ ଅଭିନନ୍ଦନ ଜଣାଇଛନ୍ତି ।

ସୁକାନ୍ତ କୁମାର ପଣ୍ଡା, ମୁଖ୍ୟମନ୍ତ୍ରୀଙ୍କ ଲୋକସମ୍ପର୍କ ଅଧିକାରୀ

## ନବକଳେବର ନିମନ୍ତେ ସୂଚନା ଓ ଲୋକସଂପର୍କ ବିଭାଗ ପକ୍ଷରୁ
## ସ୍ୱତନ୍ତ୍ର ପ୍ରକାଶନ ପାଇଁ ପଦକ୍ଷେପ

ବିଶ୍ୱ ପ୍ରସିଦ୍ଧ ନବ କଳେବର ସଂପର୍କରେ ଜନସାଧାରଣଙ୍କୁ ସବିଶେଷ ତଥ୍ୟ ପ୍ରଦାନ ଲକ୍ଷ୍ୟରେ ସୂଚନା ଓ ଲୋକସଂପର୍କ ବିଭାଗ ତରଫରୁ ଏକ ପ୍ରସ୍ତୁତି ବୈଠକ ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ରଂଜିତ୍ କୁମାର ମହାନ୍ତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି । ଏଥିନିମନ୍ତେ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ବିରଳ ଫଟୋଚିତ୍ର ସମ୍ବଳିତ ଏକ ପୁସ୍ତିକା ଏବଂ ଉତ୍କଳ ପ୍ରସଙ୍ଗ ଓ ଓଡିଶା ରିଭ୍ୟୁର ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶନ ନିମନ୍ତେ ତଥା ଏ ଦିଗରେ ଗ୍ରହଣ କରାଯିବାକୁ ଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ଆଲୋଚନା କରାଯାଇଥିଲା । ପୂର୍ବ ବର୍ଷଗୁଡିକରେ ଅନୁଷ୍ଠିତ ହୋଇଥିବା ନବକଳେବର ସଂକ୍ରାନ୍ତୀୟ ଆଲେଖ୍ୟ ଏବଂ ବିରଳ ଫଟୋଚିତ୍ରଗୁଡିକୁ ବିଭିନ୍ନ ସ୍ଥାନରୁ ସଂଗ୍ରହ କରି ପ୍ରକାଶିତ ହେବାକୁ ଥିବା ସ୍ୱତନ୍ତ୍ର ସଂଖ୍ୟାରେ ସନ୍ନିବେଶିତ କରିବା ପାଇଁ ନିଷ୍ପତ୍ତି ହୋଇଥିଲା । ନବକଳେବର ପାଇଁ ବିଭାଗୀୟ ଦାୟିତ୍ୱଗୁଡିକର ସୁପରିଚାଳନା ନିମନ୍ତେ ଏକ କମିଟି ଗଠନ ସକାଶେ ପ୍ରସ୍ତାବ ଅନୁମୋଦିତ ହୋଇଥିଲା । ଫଟୋଚିତ୍ର ସମ୍ବଳିତ ପୁସ୍ତିକା ଓ ସ୍ୱତନ୍ତ୍ର ପ୍ରକାଶନ ନିମନ୍ତେ ଶ୍ରୀମନ୍ଦିର ପ୍ରଶାସକ, ନିର୍ଦ୍ଦେଶକ, ଦୂରଦର୍ଶନ, ଅଧିକ୍ଷକ, ରାଜ୍ୟ ଅଭିଲେଖାଗାର ଏବଂ ଅନ୍ୟାନ୍ୟ ମୁଦ୍ରଣ ଗଣମାଧ୍ୟମଗୁଡିକର ସହାୟତା ନେବା ପାଇଁ ଉକ୍ତ ବୈଠକରେ ମଧ୍ୟ ସ୍ଥିର ହୋଇଥିଲା । ବିଭାଗୀୟ ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକ ଓ ଶାସନ ସଚିବ ଶ୍ରୀ ମଧୁସୂଦନ ପାଢୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ସମସ୍ତ କାର୍ଯ୍ୟକ୍ରମ ପରିଚାଳନା କରାଯାଉଛି ।

ଉକ୍ତ ବୈଠକରେ ବିଭାଗୀୟ ଯୁଗ୍ମ ନିର୍ଦ୍ଦେଶକ ତଥା ଉପଶାସନ ସଚିବ ଶ୍ରୀ ନିରଂଜନ ସେଠୀ, ଉପଶାସନ ସଚିବ ଶ୍ରୀ ବୀରେନ୍ଦ୍ର କୋର୍‌କରା, ଓଡିଶା ରିଭ୍ୟୁର ସଂପାଦକ ଡ. ଲେନିନ୍ ମହାନ୍ତି, ଉପନିର୍ଦ୍ଦେଶକ ଶ୍ରୀ ରାମଶଙ୍କର ବେହେରା, ଗବେଷଣା ଓ ତଥ୍ୟ ସୂଚନା ଅଧିକାରୀ ଡ. ଜ୍ୟୋର୍ତିମତୀ ସାମନ୍ତରାୟ, ସହକାରୀ ନିର୍ଦ୍ଦେଶକ ଶ୍ରୀ ରକ୍ଷକ ନାୟକ ଏବଂ ଅନ୍ୟାନ୍ୟ ବିଭାଗୀୟ ପଦାଧିକାରୀ ଉପସ୍ଥିତ ରହି ନିଜନିଜର ସୁଚିନ୍ତିତ ମତାମତ ଉପସ୍ଥାପନ କରିଥିଲେ ।

ସମ୍ବିତ ମହାନ୍ତି, ସୂଚନା ଅଧିକାରୀ

## ଓଡ଼ିଶାରେ ଧାନ ସଂଗ୍ରହର ସ୍ଥିତିର ସମୀକ୍ଷା
## ୨୫ ଲକ୍ଷ କ୍ୱିଣ୍ଟାଲ ଧାନ ସଂଗୃହିତ ହୋଇଛି

ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ ସଞ୍ଜୟ କୁମାର ଦାସବର୍ମା ଚଳିତ ଖରିଫ ଋତୁରେ ଓଡ଼ିଶାରେ ଧାନ ସଂଗ୍ରହର ସ୍ଥିତିର ସମୀକ୍ଷା କରିଛନ୍ତି । ଆଜି ସୁଦ୍ଧା ପ୍ରାୟ ୨୫ ଲକ୍ଷ କ୍ୱିଣ୍ଟାଲ ଧାନ ସଂଗୃହିତ ହୋଇଛି । ୧୨ଟି ଜିଲ୍ଲାରେ ଚାଲିଥିବା ଧାନ ସଂଗ୍ରହ ସହିତ ଆଜିଠାରୁ ଆଉ ୪ଟି ଜିଲ୍ଲାରେ ଧାନ ସଂଗ୍ରହ ଆରମ୍ଭ କରାଯାଇଛି । ଜାନୁଆରୀ ମାସରେ ୩ଟି ଜିଲ୍ଲାରେ ଧାନ ସଂଗ୍ରହ ହେବ ଓ ଅବଶିଷ୍ଟ ଜିଲ୍ଲାଗୁଡିକରେ ଚଳିତ ମାସ ଶେଷ ସୁଦ୍ଧା ଧାନ ସଂଗ୍ରହ ହେବ ବୋଲି କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି ।

ପ୍ରକାଶ ଯୋଗ୍ୟ ଯେ ଖରିଫ୍ ଓ ରବି ଋତୁ ପାଇଁ ୪୪ ଲକ୍ଷ ମେଟ୍ରିକ୍ ଟନ୍ ଧାନ ସଂଗ୍ରହ ପାଇଁ କ୍ୟାବିନେଟ୍ ଅନୁମୋଦନ କରିଛନ୍ତି । ଆଜି ସୁଦ୍ଧା ପ୍ରମୁଖ ଜିଲ୍ଲାମାନଙ୍କ ମଧ୍ୟରୁ ବରଗଡ ଜିଲ୍ଲାରେ ୧୮ ଲକ୍ଷ ୫୪ ହଜାର କ୍ୱିଣ୍ଟାଲ, ସମ୍ବଲପୁର ଜିଲ୍ଲାରେ ୫ ଲକ୍ଷ ୩୭ ହଜାର କ୍ୱିଣ୍ଟାଲ ଧାନ ସଂଗ୍ରହ ହୋଇଥିବା ବୈଠକରୁ ସୂଚନା ମିଳିଛି । ଚାଷୀମାନଙ୍କୁ ପ୍ରାପ୍ୟ ପ୍ରଦାନ, ଅଭାବୀ ଧାନ ବିକ୍ରୀ ରୋକିବା ଓ ନିୟମିତ କ୍ଷେତ୍ର ପରିଦର୍ଶନ ସହ ଧାନ ସଂଗ୍ରହ ବ୍ୟବସ୍ଥାକୁ ଶୃଙ୍ଖଳିତ ଓ ସୁବ୍ୟବସ୍ଥିତ କରିବାକୁ ମନ୍ତ୍ରୀ ଶ୍ରୀ ଦାସବର୍ମା ପରାମର୍ଶ ଦେଇଛନ୍ତି । ଏହି ବୈଠକରେ ବିଭଗୀୟ ଶାସନ ସଚିବ ଶ୍ରୀ ମଧୁସୂଦନ ପାଢୀ, ଓଡ଼ିଶା ରାଜ୍ୟ ଯୋଗାଣ ନିଗମର ପରିଚାଳନା ନିର୍ଦ୍ଦେଶକଙ୍କ ସମେତ ବରିଷ୍ଠ ବିଭାଗୀୟ ଅଧିକାରୀମାନେ ଯୋଗ ଦେଇଥିଲେ ।

ରକ୍ଷକ ନାୟକ, ସୂଚନା ଅଧିକାରୀ

## ବିଜୁ କୃଷକ ବିକାଶ ଯୋଜନା ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସଚିବାଳୟଠାରେ ବିଜୁ କୃଷକ ବିକାଶ ଯୋଜନା ସମ୍ପର୍କରେ ସମୀକ୍ଷା କରିଥିଲେ । ରାଜ୍ୟର କଠିନ ପଥର ଥିବା ଅଞ୍ଚଳମାନଙ୍କରେ ଜଳସେଚନ ସୁବିଧାର ସମ୍ପ୍ରସାରଣ ପାଇଁ ୨୦୧୦–୧୧ ବର୍ଷରେ ବିଜୁ କୃଷ ବିକାଶ ଯୋଜନା ଆରମ୍ଭ କରାଯାଇଛି । ଏହି ଯୋଜନାରେ ହିତାଧିକାରୀଙ୍କ ଜମିରେ ଗଭୀର ନଳକୂପ ଖନନ କରାଯାଉଛି । ବର୍ତ୍ତମାନ ସୁଦ୍ଧା ଏହି ଯୋଜନାରେ ରାଜ୍ୟର ୨୬ଟି ଜିଲ୍ଲାରେ ୫୭,୬୩୨ଟି ଗଭୀର ନଳକୂପ ସ୍ଥାପନ କରାଯାଇଥିବା ବେଳେ ୨୦,୨୫୫ଟି ବିଦ୍ୟୁତ ସଂଯୋଗ କରାଯାଇ କାର୍ଯ୍ୟକ୍ଷମ କରାଯାଇଛି । ଏହା ଦ୍ୱାରା ୧,୭୦୬୮୦ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇପାରିଛି । ବାକି ଥିବା ୩୭,୦୦୦ଟି ଗଭୀର ନଳକୂପର ବିଦ୍ୟୁତ ସଂଯୋଗ କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ସୂଚନା ଯୋଗ୍ୟ ଯେ, ଆଗାମୀ ପାଞ୍ଚବର୍ଷ ମଧ୍ୟରେ ରାଜ୍ୟରେ ଅଧିକ ୧୦ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ଲକ୍ଷ୍ୟ ରଖିଛନ୍ତି । ଏଥିପାଇଁ ବୃହତ୍, ମଧ୍ୟମ, କ୍ଷୁଦ୍ର ଓ ଅଣୁ ଜଳସେଚନ ପ୍ରକଳ୍ପଗୁଡିକର କାର୍ଯ୍ୟ ତ୍ୱରାନ୍ୱିତ କରାଯିବା ସମ୍ପର୍କରେ ମଧ୍ୟ ବୈଠକରେ ଆଲୋଚନା କରାଯାଇଥିଲା । ସର୍ଭେରୁ ଜଣାଯାଏ ଯେ ରାଜ୍ୟରେ ବର୍ତ୍ତମାନ ୧.୬୭ ମିଲିୟନ୍ ହେକ୍ଟର ମିଟର ଭୂତଳ ଜଳ ମହଜୁଦ୍ ରହିଥିବା ଏ ପର୍ଯ୍ୟନ୍ତ ରାଜ୍ୟରେ ମାତ୍ର ୨ରୁ ୩% ଜଳ ବ୍ୟବହାର ହେଉଅଛି ।

ଏହି ବୈଠକରେ ମୁଖ୍ୟଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତି, ମୁଖ୍ୟମନ୍ତ୍ରୀଙ୍କ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ଆଦିତ୍ୟ ପାଢୀ, ଉନ୍ନୟନ କମିଶନର ଶ୍ରୀ ଉପେନ୍ଦ୍ର ନାଥ ବେହେରା ଏବଂ କୃଷି, ଶକ୍ତି ଓ ଜଳସମ୍ପଦ ବିଭାଗର ପ୍ରମୁଖ ସଚିବ ଗଣ ଏବଂ ଅନ୍ୟ ବରିଷ୍ଠ ଅଧିକାରୀମାନେ ଉପସ୍ଥିତ ଥିଲେ ।

ସୁକାନ୍ତ କୁମାର ପଣ୍ଡା, ମୁଖ୍ୟମନ୍ତ୍ରୀଙ୍କ ଲୋକସମ୍ପର୍କ ଅଧିକାରୀ